# ସୂଚୀ

# କଳିଙ୍ଗ ପୋତ ପୋତାଶ୍ରୟ ଓ ପୋତ ନିର୍ମାଣ କଳା

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

**ପ୍ରା**ଚୀନ ଗ୍ରନ୍ଥ, ପୁରାଣ, ଇତିହାସ ଆଦିରେ 'କଳିଙ୍ଗ' ବା 'ଉତ୍କଳ' ଏକ ସମୁଦ୍ରତଟ ସଂଲଗ୍ନ ଅଞ୍ଚଳ (ରାଜ୍ୟ) ଭାବରେ ବିବେଚିତ ହୋଇଥାଏ ।

ଏହାର ସାମୁଦ୍ରିକ ଉପକୂଳ, 'ଗଙ୍ଗରିଡ଼ାଇ କଳିଙ୍ଗ' (ଗଙ୍ଗା ସାଗର ସଂଗମଠାରୁ ସୁବର୍ଣ୍ଣରେଖା) ତଥା 'ପ୍ରାଚୀ କଳିଙ୍ଗ' (ସୁବର୍ଣ୍ଣରେଖାଠାରୁ ଗୋଦାବରୀ) ମଧ୍ୟ ଦେଇ ସୁଦୀର୍ଘ ୭୦୦ ମାଇଲ ଧରି ବିସ୍ତୃତ ଥିବାର ଐତିହାସିକ ଓ ଭୌଗଳିକ ସିଦ୍ଧାନ୍ତ ରହିଛି ।

ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ସାଳନ୍ଦୀ, ବ୍ରାହ୍ମଣୀ, ବୈତରଣୀ, ମହାନଦୀ, ଋଷିକୁଲ୍ୟା, ବଂଶଧାରା ଆଦି ଓଡ଼ିଶାର ପ୍ରମୁଖ ନଦୀଗୁଡ଼ିକ ଉତ୍ତର-ପଶ୍ଚିମରୁ ଦକ୍ଷିଣ-ପୂର୍ବକୁ ପ୍ରବାହିତ ହୋଇ ଶେଷରେ କଳିଙ୍ଗ ମହୋଦଧି (ବଙ୍ଗୋପସାଗର)ରେ ପଡ଼ିଛନ୍ତି । ଏହିସବୁ ନଦୀଗୁଡ଼ିକ ଏକଦା ବର୍ଷସାରା ସୁନାବ୍ୟା ଥିଲା । ନଦୀ ସାଗର ସଙ୍ଗମଗୁଡ଼ିକ ଗଭୀର ତଥା ବଡ଼ ବଡ଼ ସମୁଦ୍ରଗାମୀ ଜାହାଜଗୁଡ଼ିକର ଯାତାୟତ ଓ ଆଶ୍ରୟ ପାଇଁ ଉପଯୋଗୀ ଥିବାରୁ, ସେଠାରେ ଉପଯୁକ୍ତ 'ପୋତାଶ୍ରୟ' ତଥା ବାଣିଜ୍ୟ ବିପଣନ କେନ୍ଦ୍ର ଗଢ଼ି ଉଠିଥିଲା । ଏହା ଐତିହାସିକ ତଥା ପ୍ରତ୍ନତାତ୍ତ୍ୱିକ ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ, ଏଥିରେ ଦ୍ୱିମତ ନାହିଁ ।

ଏକ ଅନୁଶୀଳନରୁ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀ (ମଗଧର ନନ୍ଦ ରାଜତ୍ୱ ଖ୍ରୀ:ପୂ: ୪୬୦ ପୂର୍ବ)ରୁ ମଧ୍ୟଯୁଗର ଶେଷ ପର୍ଯ୍ୟନ୍ତ କଳିଙ୍ଗ ପୋତଗୁଡ଼ିକ କଳିଙ୍ଗ ମହୋଦଧିକୁ ଆଚ୍ଛନ୍ନ କରି 'ମେଗା କଳିଙ୍ଗ' (ଦକ୍ଷିଣ-ପୂର୍ବ ଏସିଆ ଦ୍ୱୀପପୁଞ୍ଜ : ଇଣ୍ଡୋନେସିଆ, ଇଣ୍ଡୋ-ଚୀନ) ପର୍ଯ୍ୟନ୍ତ ନିଜର ବାଣିଜ୍ୟିକ, ସାଂସ୍କୃତିକ, ଧାର୍ମିକ, ଅର୍ଥନୈତିକ ସଂପର୍କ ବଜାୟ ରଖିଥିଲେ ତଥା ଅଚିନ୍ତ୍ୟ ସମୃଦ୍ଧି ହାସଲ କରିଥିଲେ । ପ୍ରାଚୀନ କଳିଙ୍ଗର ଜଳପଥରେ ଉଭୟ ଆନ୍ତର୍ବାଣିଜ୍ୟ ତଥା ସାମୁଦ୍ରିକ ବହିର୍ବାଣିଜ୍ୟ ପ୍ରସଙ୍ଗ, ପ୍ଲିନିଙ୍କ (Natural History) ଟଲେମି (ପ୍ରଥମ ଶତାବ୍ଦୀ)ଙ୍କ ଭୂଗୋଳ, ପେରିପ୍ଲସ୍, ବୌଦ୍ଧଗ୍ରନ୍ଥ, ଦାଠା ଧାତୁବଂଶ, ଲଳିତ ବିସ୍ତର, ଜାତକ କଥା, ସେଉକୀ, ଚୀନ ପରିବ୍ରାଜକ ଫାହିୟାନ୍ (ଖ୍ରୀ:୩୯୯-୪୧୫), ହୁଏନ୍‌ସା (ସପ୍ତମ), ଇ.ସିଙ୍ଗ୍ (୬୭୩ ଖ୍ରୀ:-୬୯୬)ଙ୍କ ବିବରଣୀ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର,



କାଳିଦାସଙ୍କ ରଘୁବଂଶ, ବହୁ ଲୋକକଥା, ଲୋକଗୀତ, ଲୋକକଳା, ପଟ୍ଟଚିତ୍ର ତଥା ଉତ୍କଳୀୟ ଓ ସର୍ବଭାରତୀୟ ରଚନାଗୁଡ଼ିକରୁ ଜାଣିହୁଏ ।

ପ୍ରାଚୀନ କାଳରେ କଳିଙ୍ଗର ନଦୀ, ସମୁଦ୍ର ସଂଗମସ୍ଥଳୀ ଗଭୀର ଥିବାବେଳେ, ନଦୀଗୁଡ଼ିକ ଜଳ ପରିପୂର୍ଣ୍ଣ ଓ ସୁନାବ୍ୟା ଥିଲା । ଫଳତଃ ବଡ଼ ବଡ଼ ସମୁଦ୍ରଗାମୀ ଜାହାଜଗୁଡ଼ିକ ବହୁଦୂର ପର୍ଯ୍ୟନ୍ତ ନଦୀପଥରେ ରାଜ୍ୟ ଭିତରକୁ ପଶି ଆସୁଥିଲା । ହଣ୍ଟର ସାହେବ ତାଙ୍କ ରଚନାରେ ଊନବିଂଶ ଶତକରେ ମହାନଦୀ, ପିପିଲି ଓ ବାଲେଶ୍ୱର ବନ୍ଦରରେ ୩୦୦ରୁ ୪୦୦ ଟନ୍ ଓଜନର ବୋଝେଇ ଜାହାଜ ଗତାଗତ କରିବାର ବିବରଣୀ ଦେଇଛନ୍ତି ।

ତେବେ କଳିଙ୍ଗର ବଡ଼ବଡ଼ ପୋତମାନଙ୍କ ଗତାଗତ ଓ ଆଶ୍ରୟ ଦେଇପାରୁଥିବା ଯେଉଁସବୁ ପୋତାଶ୍ରୟର ଓ ବାଣିଜ୍ୟ କେନ୍ଦ୍ରର ବିବରଣୀ ପ୍ରାଚୀନ ଐତିହାସିକ, ପରିବ୍ରାଜକମାନେ ଦେଇଛନ୍ତି, ସେଗୁଡ଼ିକ ମଧ୍ୟରୁ ନିମ୍ନୋକ୍ତଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ । କୋଶମ୍ବ (ବାଲେଶ୍ୱର), ତିଳସ (ବ୍ରାହ୍ମଣୀ), ଦୋସରାନ୍ (ବୈତରଣୀ), ଆଦାମସ୍ (ସୁବର୍ଣ୍ଣରେଖା), ତାମ୍ରଲିତି (ତାମ୍ରଲିପ୍ତି-ତମଲୁକ), ପଲୁରା (ଗଞ୍ଜାମ ସଂଲଗ୍ନ), ନନିଗେନ୍ (ପୁରୀ), କଟିକର୍ଦ୍ଦମ (କଟକ-ପାରାଦୀପ ହରିଶପୁର), କୋନଗର (କୋଣାର୍କ), ଚେଲିତାଲେ (ହୁଏନ୍‌ସାଙ୍କ ମତରେ ଚିତ୍ରୋତ୍ପଳା), ପାଲୋରା (ପାଲୁର), ପିଥୁଣ୍ଡ, କଣ୍ଟକ ସିଲାଇ (ଘଣ୍ଟଶିଳା), ଉତ୍ତର ଓଡ଼ିଶାର ପିପିଲି, ଛାନୁଆ, ଚାନ୍ଦବାଲି, ଲଇଛନପୁର, ସାରଥ, ଧାମରା ତଥା ଦକ୍ଷିଣ ଓଡ଼ିଶାର ଗୋପାଳପୁର, ଚିଲିକା, ମାଣିକପାଟଣା । ତାମ୍ରଲିପ୍ତି, ପାଲୁର,

ମାଣିକପାଟଣା, ଚିଲିକା ଥିଲା ମଧ୍ୟଯୁଗରେ ଆନ୍ତର୍ଜାତିକ ନୌବାଣିଜ୍ୟ କେନ୍ଦ୍ର ଓ ପୋତାଶ୍ରୟ ।

**ନୌ ପରିକଳ୍ପନା -** ମଣିଷର ସୃଷ୍ଟି ଆରମ୍ଭରୁ ହିଁ ପୃଥିବୀର ତିନିଭାଗ ଥିଲା ଜଳମୟ । ସମୁଦ୍ର, ନଦନଦୀ, ହ୍ରଦ ବ୍ୟତୀତ ସ୍ଥଳଭାଗରେ ଥିଲା କେନାଲ, ଝରଣା, ପୁଷ୍କରିଣୀ ଇତ୍ୟାଦି । ସ୍ଥଳପଥରେ ଗମନାଗମନର ଅସୁବିଧା ତ ଥିଲା । ତଥାପି ଜଳପଥରେ ଯାତ୍ରୀ ପାର ଉତ୍ତାର ଏବଂ ପରବର୍ତ୍ତୀ କାଳରେ ଦ୍ରବ୍ୟ ପରିବହନ ପାଇଁ ଯେଉଁ ମାଧ୍ୟମର ଆଶ୍ରୟ ନେବାକୁ ପଡ଼ିଲା, ତାହା ହିଁ ହେଲା - କାତୁଆ, ପଟୁଙ୍ଗା, ଭେଳା, ତରୀ, ବୋଇତ, ପୋତ, ନୌକା ବା ଜାହାଜ ଏବଂ ଇଂରାଜୀରେ Craft, raft, vessels, boat, ship etc. ସବୁଠାରୁ ଅସଲ କଥାଟି ହେଲା ଯେ - ଇଂରାଜୀରେ 'Navigation' ଶବ୍ଦଟି ଭାରତୀୟ ସଂସ୍କୃତ ଶବ୍ଦ Nou (ନୌ) ବା Nava (ନାବ)ରୁ ଉଦ୍ଭବ ।

ପ୍ରାଚୀନ କାଳରେ ବିଶେଷକରି ଗ୍ରାମାଞ୍ଚଳରେ ସବୁଠାରୁ ସହଜ ଓ ସରଳ ଉପାୟରେ ନାଳ, ନଦୀ ପାର ହେବାର ମାଧ୍ୟମ ଥିଲା - ଭାସମାନ ଖଣ୍ଡିଏ ହାଲୁକା କାଠଗଣ୍ଡି, ଯା' ଉପରେ ଭରା ଦେଇ ଜଣେ ଏ କୂଳରୁ ସେ କୂଳକୁ ପାରି ହେଉଥିଲା । ପଞ୍ଜାବ ଓ ସିନ୍ଧୁ ଅଞ୍ଚଳରେ ଏକଦା ଖାଲି ଫମ୍ପା ମାଠିଆକୁ ପାଣିରେ ତଳ ମୁହାଁ କରି ଧରି କିମ୍ବା ପିମ୍ପା ସାହାଯ୍ୟରେ ନଦୀ ପାର ହେବାର ଜଣାଯାଏ । ସେହିପରି ଲୋକେ କଦଳୀଗଛର ଗଣ୍ଡିକୁ ଏକତ୍ର ପାଖାପାଖି ଯୋଖି ଏକ ପ୍ରକାର ଭେଳା କରି ନଦୀନାଳ ପାରି ହେଉଥିଲେ । ପରେ ପରେ ସୋଲ, ବାଉଁଶ, ହାଲୁକା କାଠର ଭେଳା, ନଡ଼ିଆ ତାଳ ଗଣ୍ଡିରେ ପ୍ରସ୍ତୁତ କାତୁଆ ତଥା ପରବର୍ତ୍ତୀ କାଳରେ ଦୂର ଜଳଯାତ୍ରା ଓ ଅଧିକ ଯାତ୍ରୀ ତଥା ପଣ୍ୟଦ୍ରବ୍ୟ ବହନ କରିପାରୁଥିବା ବଡ଼ ବଡ଼ ପୋତ (ବୋଇତ ବା ଜାହାଜ) ନିର୍ମାଣ କରାଗଲା ।

**ଭାରତୀୟ ନୌକା ନିର୍ମାଣ କଳା -**

ଭାରତୀୟ ପ୍ରାଚୀନ ସାହିତ୍ୟରେ ବଡ଼ ବଡ଼ ଜାହାଜ ସଂପର୍କିତ ବର୍ଣ୍ଣନା ରହିଛି । 'ସଂସ୍କୃତ ରାମାୟଣ'ରେ କୁହାଯାଇଛି ଯେ, 'ନାବାଂ ଶତାନାଂ ପଞ୍ଚାନାଂ କୈବର୍ତ୍ତାନାଂ ଶତଂ ଶତମ୍' ମହାଭାରତରେ ଯନ୍ତ୍ରଚାଳିତ ପୋତ କଥା କୁହାଯାଇଛି ଯଥା- 'ସର୍ବବାତସଂହା ନାବଂ ଯନ୍ତ୍ରଯୁକ୍ତାଂ ପତାକିନୀମ୍'

'ବରାହ ପୁରାଣ'ରେ ରତ୍ନ ବ୍ୟାପାର କରୁଥିବା ଗୋକର୍ଣ୍ଣ ବୈଶ୍ୟ, ଆଚାର୍ଯ୍ୟ ଦଣ୍ଡୀଙ୍କ 'ଦଶକୁମାର ଚରିତ'ରେ ରତ୍ନୋଦ୍ଭବ ବଣିକ କଥା, କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ 'ନାବାଧ୍ୟକ୍ଷ' ପ୍ରକରଣରେ ନୌସେନା ପ୍ରସଙ୍ଗ, ସୋମଦେବଙ୍କ 'କଥା ସରିତ ସାଗର' ବରାହମିହିରଙ୍କ 'ବୃହତ୍ ସଂହିତା', ଧନପାଳଙ୍କ 'ତିଳକ ମଞ୍ଜରୀ', ଭୋଜକୃତ ପ୍ରଖ୍ୟାତ 'ଯୁକ୍ତ କଳ୍ପତରୁ'ରେ ନୌକା ଓ ଏହାର ନିର୍ମାଣ କଳାଦି ସଂପର୍କରେ ବିସ୍ତୃତ ଆଲୋଚନା କରାଯାଇଛି ।

'ବୃକ୍ଷ ଆୟୁର୍ବେଦ' ଗ୍ରନ୍ଥରେ ନୌକା ନିର୍ମାଣ ନିମିତ୍ତ ବ୍ୟବହୃତ ବିଭିନ୍ନ ବୃକ୍ଷର କାଷ୍ଠର ଜାତି ନିର୍ଣ୍ଣୟ କରାଯାଇ, ଏହାକୁ 'ବ୍ରାହ୍ମଣ-କ୍ଷତ୍ରିୟ-ବୈଶ୍ୟ ଓ ଶୁଦ୍ର ଜାତି'ରେ ବିଭକ୍ତ କରାଯାଇଛି । ଯେଉଁ ବୃକ୍ଷର କାଷ୍ଠ, 'ଲଘୁ ଓ କୋମଳ' ତଥା ସହଜରେ ଯୋଡ଼ି ହୋଇଯାଇପାରେ, ତାହାକୁ ବ୍ରାହ୍ମଣ ଜାତିର କାଠ ଆଖ୍ୟା ଦିଆଯାଇଛି । ସେହିପରି ହାଲୁକା ଓ କଠିନ କାଠ, କ୍ଷତ୍ରୀୟ ଜାତିର ଅଟେ । ଏଥିରେ ନିର୍ମିତ ନୌକାଟି ସୁଖସଂପଦ ବୃଦ୍ଧିକାରୀ ବୋଲି କୁହାଯାଇଛି । ଗଭୀର ସମୁଦ୍ର ମଧ୍ୟରେ ମଧ ଏହି କାଷ୍ଠରେ ନିର୍ମିତ ନୌକା, ମାଲିକକୁ ବିପଦରେ ପକାଏ ନାହିଁ । ସେହିପରି ବୈଶ୍ୟ ଜାତିର କାଠ କୋମଳ ଅଥଚ ଓଜନିଆ । ଶୁଦ୍ର ଜାତିର କାଠ, ଓଜନିଆ ଓ ଚେମଡ଼ା । ଭୋଜ ଆହୁରି ବି ସତର୍କ କରି ଦେଇଛନ୍ତି ଯେ - ଜାହାଜର କାଠ ପଟାକୁ ଯୋଖିବାରେ ଲୁହାକଣ୍ଟା ବର୍ଜ୍ଜନୀୟ । କାରଣ ସମୁଦ୍ରରେ ବୁଡ଼ି ରହିଥିବା ପ୍ରସ୍ତର ଦେହରେ ଯଦି ଚୁମ୍ବକ ଥିବ, ତାହା ଜାହାଜ ପାଇଁ ବିପଦ ସୃଷ୍ଟି କରିବ ।

'ଯୁକ୍ତ କଳ୍ପତରୁ'ରେ ବିଭିନ୍ନ ପ୍ରକାର ନୌକାର ଆକାର, ପ୍ରକାର, ଲମ୍ବା, ଚୌଡ଼ା, ଗଭୀରତା ବା ଉଚ୍ଚତାର ବିବରଣୀ ଦିଆଯାଇଛି । 'ନୌକା'କୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଛି ଯଥା- (କ) ସାମାନ୍ୟ (ନଦୀ ପାଇଁ ବ୍ୟବହୃତ) (ଖ) ବିଶେଷ (ଦୂର ସମୁଦ୍ର ଯାତ୍ରା ପାଇଁ ଉଦ୍ଦିଷ୍ଟ) ସେହିପରି 'ସାମାନ୍ୟ' ଶ୍ରେଣୀର ନୌକାକୁ ପୁନଶ୍ଚ ୧୦ ଭାଗରେ ବିଭକ୍ତ କରିଛନ୍ତି । ଯଥା- (୧) କ୍ଷୁଦ୍ରା, (୨) ମଧ୍ୟମା, (୩) ଭୀମା, (୪) ଚପଳା, (୫) ପଟଳା, (୬) ଭୟା, (୭) ଦୀର୍ଘା, (୮) ପତ୍ରପୁଟା, (୯) ଗର୍ଭରା, (୧୦) ମନ୍ଥରା

'କ୍ଷୁଦ୍ରାଥ ମଧ୍ୟମା ଭୀମା ଚପଳା ପଟଳା ଭୟା
ଦୀର୍ଘା ପତ୍ରପୁଟା ଚୈବ ଗର୍ଭରା ମଧ୍ୟମା ତଥା'

ଦୃଷ୍ଟାନ୍ତ ସ୍ୱରୂପ 'କ୍ଷୁଦ୍ରା' ନୌକାର ଲମ୍ବ x ଚଉଡ଼ା x ଉଚ୍ଚତା ହେଲା = ୧୬ x ୪ x ୪ ହାତ ।

ସେହିପରି 'ବିଶେଷ' ଶ୍ରେଣୀର ନୌକାକୁ ପ୍ରଥମେ (କ) ଦୀର୍ଘା, (ଖ) ଉନ୍ନତ ଭାବରେ ଦୁଇ ଭାଗରେ ବିଭକ୍ତ କରି 'ଦୀର୍ଘା'କୁ ପୁଣି ୧୦ ଭାଗରେ ବିଭକ୍ତ କରିଛନ୍ତି । ଯଥା- (୧) ଦୀର୍ଘିକା, (୨) ତରଣୀ, (୩) ଲୋଳା, (୪) ଗତ୍ୱରା, (୫) ଗାମିନୀ, (୬) ତରୀ, (୭) ଜଂଘଳା, (୮) ପ୍ଲାବିନୀ, (୯) ଧାରିଣୀ, (୧୦) ବେଗିନୀ ।

ଏଗୁଡ଼ିକର ଲମ୍ବ ଅଧିକ, ମାତ୍ର ଓସାର ତଥା ଉଚ୍ଚତା କମ୍ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ - 'ବେଗିନୀ'ର ଲମ୍ବ x ଚଉଡ଼ା x ଉଚ୍ଚତା ହେଲା = ୧୭୬ x ୨୨ x ୧୬.୩/୫ ହାତ । ସେହିପରି 'ଉନ୍ନତା'କୁ ୫ ଭାଗରେ ବିଭକ୍ତ କରାଯାଇଛି । ଯଥା- (୧) ଉର୍ଦ୍ଧା, (୨) ଅନୂର୍ଦ୍ଧା, (୩) ସ୍ୱର୍ଣ୍ଣମୁଖୀ, (୪) ଗର୍ଭିଣୀ, (୫) ମନ୍ଥରା (ଯାହାର ଉଚ୍ଚତା - ୪୮ ହାତ) ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ପୂର୍ବ କାଳରେ ବୃହତ୍‌କାୟ ଜାହାଜମାନ ନିର୍ମିତ ହେଉଥିଲା ।

ସେହିପରି ଜାହାଜଗୁଡ଼ିକ ୧ରୁ ୪ ମାସ୍ତୁଲଯୁକ୍ତ ଥିଲା । ଏକ ମାସ୍ତୁଲ ଥିବା ଜାହାଜକୁ ନୀଳରଙ୍ଗ, ଦୁଇ ମାସ୍ତୁଲଯୁକ୍ତ ଜାହାଜକୁ ହଳଦିଆରଙ୍ଗ, ତିନି ମାସ୍ତୁଲଯୁକ୍ତ ଜାହାଜକୁ ଲାଲ୍ ତଥା ଚାରି ମାସ୍ତୁଲଯୁକ୍ତ ଜାହାଜକୁ ଧଳାରଙ୍ଗରେ ରଙ୍ଗାଇବାକୁ ଶାସ୍ତ୍ର ନିର୍ଦ୍ଦେଶ ଥିଲା । ନୌକାର ପୁରୋଭାଗ (ମଙ୍ଗ)କୁ ସିଂହ, ବ୍ୟାଘ୍ର, ମହିଷ, ହସ୍ତୀ, ସର୍ପାକୃତି କରାଯାଉଥିଲା । କାପ୍ତାନଙ୍କ କକ୍ଷ ନିର୍ମାଣ ଦୃଷ୍ଟିରୁ ଏହାକୁ ସର୍ବ, ଅଗ୍ର ବା 'ମଧ ମନ୍ଦିରା' କୁହାଯାଉଥିଲା ।

'ସର୍ବ ମନ୍ଦିରା' ପୋତରେ ରାଜାଙ୍କ କୋଷ, ଅଶ୍ୱ ଓ ରାଣୀମାନେ ରହୁଥିଲେ । ମଧମନ୍ଦିରାରେ କାପ୍ତାନ ରହୁଥିଲେ । ଏହା ରାଜାଙ୍କ ବର୍ଷାବିଳାସ ପାଇଁ ଉଦ୍ଦିଷ୍ଟ ଥିଲା । ପୁରୀ ଭୋଗମଣ୍ଡୀ ଗାତ୍ରରେ ଅଙ୍କିତ ବୋଇତ ଚିତ୍ରଟି 'ମଧମନ୍ଦିରା' ଶ୍ରେଣୀର । ସେହିପରି ଜାହାଜର ଅନ୍ତଃଭାଗରେ କୋଠରୀ ଥିବା ଜାହାଜଟି ଅଗ୍ରମନ୍ଦିରା କୁହାଯାଏ । ଏହା ବହୁ ଦୂର ଯାତ୍ରା ତଥା ଯୁଦ୍ଧ ନିମିତ୍ତ ଅଭିପ୍ରେତ ଥିଲା ।


ରାଜପୁର

ଭାରତର ମୁସଲମାନ ରାଜତ୍ୱରେ ଏହି ପ୍ରକାର ନୌକା ନିର୍ମାଣ ହେଉଥିବାର ବିଷୟ ୧୩ଶ ଶତାବ୍ଦୀରେ ଭାରତକୁ ଆସିଥିବା 'ମାର୍କୋପୋଲ' ଉଲ୍ଲେଖ କରିଛନ୍ତି ।

୧୮୫୩ ମସିହାରେ ଇଂରେଜ ରାଜତ୍ୱରେ ଏପରି ଆଇନ କରାଗଲା ଓ କର ଧାର୍ଯ୍ୟ ହେଲା ଯେ ପ୍ରାଚୀନ ନୌକା ନିର୍ମାଣ କଳାର ଅନ୍ତ ଘଟିଲା ଓ ତାହା ସହିତ ଆଧୁନିକ ଯନ୍ତ୍ରଚାଳିତ ଜାହାଜମାନ ନିର୍ମାଣ କରାଗଲା ।

ଉକ୍ତ ପରିପ୍ରେକ୍ଷୀରେ ଆମେ ଉତ୍କଳୀୟ ବୋଇତ ନିର୍ମାଣ କଳା ସଂପର୍କରେ ଆଲୋଚନା କରିବା ।

**କଳିଙ୍ଗ ବୋଇତର ଆକାର ପ୍ରକାର ସମ୍ବନ୍ଧିତ ଐତିହାସିକ ତଥ୍ୟ -**

ପ୍ରାଚୀନ ତଥା ମଧ୍ୟଯୁଗରେ ନୌବାଣିଜ୍ୟ ନିମିତ୍ତ ବ୍ୟବହୃତ ପାଲଟଣା ନୌକା ବା ପୋତକୁ ଦେଶୀୟ ଭାଷାରେ 'ବୋଇତ' କୁହାଯାଉଥିଲା । ଏହି ବୋଇତର ଚାଳକ ବା ମାଲିକଙ୍କୁ 'ସାଧବ' କୁହାଯାଉଥିଲା । 'ସାଧବ' ଶବ୍ଦଟି ସଂସ୍କୃତର 'ସାର୍ଥବହ' ଶବ୍ଦରୁ ଆସିଛି ବୋଲି କୁହାଯାଏ । ତେବେ କଳିଙ୍ଗର ସାଧବମାନେ କୌଣସି ନିର୍ଦ୍ଦିଷ୍ଟ ଜାତି ବା ସଂପ୍ରଦାୟର ନଥିଲେ । ଏମାନେ ଏକ ଧନଶାଳୀ, ଉଦ୍ୟୋଗପତି ଥିଲେ । ନିଜର ପ୍ରଚେଷ୍ଟା ତଥା ଅଧ୍ୟବସାୟ ବଳରେ ଅନ୍ତଃ ଓ ବହିର୍ବାଣିଜ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରି ଦେଶର ଆର୍ଥିକସ୍ଥିତିକୁ ସୁଦୃଢ଼ କରିଥିଲେ । ସେମାନେ ଥିଲେ ଦୁଃସାହସୀ । ସମୁଦ୍ରର ଦୁର୍ଗମ ସ୍ଥିତି ଓ ପରିସ୍ଥିତିର ମୁକାବିଲା କରିବା କ୍ଷମତା ସେମାନଙ୍କର ଥିଲା । ସେମାନେ ପାଲଟଣା ଜାହାଜ ଚଳାଇ ସୁଦୂର ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଆଦି ଦ୍ୱୀପପୁଞ୍ଜରେ ବ୍ୟବସାୟ କରି ସେଠାରେ ନିଜର ପଦାଙ୍କନ ରଖିଯାଇଛନ୍ତି । ନୌବାଣିଜ୍ୟ ସାଙ୍ଗକୁ ସାଧବମାନଙ୍କର ବୋଇତ ନିର୍ମାଣ କଳା, ପୋତ ଚାଳନା କୌଶଳ, ସ୍ରୋତର ଗତି କଳନା ତଥା ସାମୁଦ୍ରିକ ବାୟୁ ପ୍ରବାହ ସମ୍ବନ୍ଧରେ ବିଶଦ ଧାରଣା ଥିଲା । ପରମ୍ପରା ଓ ଲୋକକଥାରେ ସେମାନଙ୍କ ଦୁଃସାହସିକ କାହାଣୀ ଓ ପ୍ରୌଢ଼ିର ବର୍ଣ୍ଣନା ରହିଛି ।

କଳିଙ୍ଗ ବୋଇତର ନିର୍ମାଣ କଳା ସଂପର୍କିତ ନିର୍ଦ୍ଦିଷ୍ଟ ତଥ୍ୟ ଉପଲବ୍ଧ ନ'ହେଲେ ମଧ ବହୁ ଟନ୍ ଓଜନର ପଣ୍ୟ ସାମଗ୍ରୀ ତଥା ବହୁ ସଂଖ୍ୟକ ଯାତ୍ରୀଙ୍କୁ ବହନ କରି ଦୂର ସମୁଦ୍ର ଯାତ୍ରା କରୁଥିବା ପାଲଟଣା ବୋଇତଗୁଡ଼ିକର ବିଶାଳତା ସଂପର୍କରେ ନିଶ୍ଚିତ ପ୍ରମାଣ ମିଳିଥାଏ ।

(୧) ତପୁସ ଓ ଭଲ୍ଲିକ ନାମକ ଦୁଇ ବଣିକ ଭ୍ରାତା ୫୦୦ ଶଗଡ଼ ଓଜନର ମୂଲ୍ୟବାନ୍ ସାମଗ୍ରୀ ବୋଇତରେ ବୋଝେଇ କରି ବର୍ମାରୁ ଆସି ଉତ୍ତର କଳିଙ୍ଗର Adzeita ନାମକ ପୋତାଶ୍ରୟରେ ପହଞ୍ଚିଥିଲେ ଓ ସେଠାରୁ ସ୍ଥଳପଥରେ ମଗଧ ଯାତ୍ରା କରିଥିଲେ । ଏହାଥିଲା ଖ୍ରୀଷ୍ଟପୂର୍ବର ଘଟଣା । ସେତେବେଳେ ବର୍ମାରେ କଳିଙ୍ଗର ଉପନିବେଶ ଥିଲା । ତେବେ କଥାଟି ହେଲା, ଏତେସବୁ ପଣ୍ୟଦ୍ରବ୍ୟ ବହନ କରିପାରୁଥିବା ପାଲଟଣା ବୋଇତଟିର ଆୟତନ, ଆକାର ଓ ପ୍ରକାର ନିଶ୍ଚିତରେ ବିଶାଳ ଥିଲା । (୧)

(୨) 'ଦାଠା ଧାତୁବଂଶ' ନାମକ ସିଂହଳୀ ବୌଦ୍ଧଗ୍ରନ୍ଥରୁ ଜଣାଯାଏ ଯେ, କଳିଙ୍ଗରାଜ ଗୁହଶିବଙ୍କ ଜାମାତା ଦନ୍ତକୁମାର ତଥା କନ୍ୟା ହେମମାଳା ବୁଦ୍ଧଦେବଙ୍କ ଦନ୍ତକୁ ଯେଉଁ ବୋଇତରେ ଧରି କଳିଙ୍ଗର ତାମ୍ରଲିପ୍ତି (ତମଲୁକ-ଅଧୁନା ମେଦିନୀପୁର) ବନ୍ଦରରୁ ସିଂହଳ ଯାତ୍ରା କରିଥିଲେ - ତାହାର ଗଠନ ଅତ୍ୟନ୍ତ ସୁଦୃଢ଼ ତଥା ନିରାପଦ ଥିଲା । ଯଥା- 'The Ship was firmly constructed with planks sewed together with ropes, having a well rigged, lofty mast with specious sails and maned by skilful navigators.' (୨)

(୩) କୋଟିଲ୍ୟ ତାଙ୍କ ପ୍ରଣୀତ 'ଅର୍ଥଶାସ୍ତ୍ର'ରେ (ଖ୍ରୀ:ପୂ: ୪୦୦) ନୌବାଣିଜ୍ୟ ସଂପର୍କିତ ଯେଉଁସବୁ ସୂଚନା ଦେଇଛନ୍ତି, ସେଥିରୁ ଜଣାଯାଏ ଯେ, କଳିଙ୍ଗର ବୋଇତଗୁଡ଼ିକ ଗଭୀର ସମୁଦ୍ର ମଧ୍ୟରେ ବାତାନୁକୂଳ ପରିସ୍ଥିତିରେ ଯାତ୍ରା କରିବାକୁ ସମର୍ଥ ଥିଲା ।(୩)

(୪) ଚୀନ୍ ପରିବ୍ରାଜକ ଫାହିୟାନ୍ (ଖ୍ରୀ:୪୧୫) କହନ୍ତି ଯେ, ସେ ଯେଉଁ କଳିଙ୍ଗର ବିରାଟ ବୋଇତରେ ବସି ଭାରତରୁ ସ୍ୱଦେଶ (ଚୀନ୍)କୁ ପ୍ରସ୍ଥାନ କରିଥିଲେ, ସେଥିରେ ତାଙ୍କ ସହିତ ୨୦୦ ଜଣ ଅନ୍ୟାନ୍ୟ ଯାତ୍ରୀ ବସି ଯାତ୍ରା କରୁଥିଲେ ।(୪) ଏଥିରୁ ସ୍ପଷ୍ଟ ହୁଏ ଯେ, କଳିଙ୍ଗର ପାଲଟଣା ବୋଇତଗୁଡ଼ିକର ବହୁ ସଂଖ୍ୟକ ଯାତ୍ରୀ ଓ ପଣ୍ୟଦ୍ରବ୍ୟ ବହନ କରିବାର କ୍ଷମତା ଥିଲା ।

(୫) ଜାଭା ଓ ବୋରୋବୁଦରରେ ସଂରକ୍ଷିତ ଏକ ବୋଇତର ଚିତ୍ରକୁ ଅବଲୋକନ କଲେ ସେ କାଳର କଳିଙ୍ଗ ବୋଇତର ନିର୍ମାଣ କଳାର ଶ୍ରେଷ୍ଠତା ଉପଲବ୍ଧି ହୋଇଥାଏ ।(୫)

(୬) ଷଷ୍ଠ-ସପ୍ତମ ଶତାବ୍ଦୀ ମଧ୍ୟରେ କେଶରୀ ବଂଶୀୟ ନୃପତିଙ୍କ ଦ୍ୱାରା ନିର୍ମିତ ଭୁବନେଶ୍ୱରର 'ବୋଇତାଳ' ମନ୍ଦିର (ଓଲଟ ବୋଇତ)କୁ ଦେଖିଲେ, ସେ କାଳର କଳିଙ୍ଗର ନୌବାଣିଜ୍ୟ ତଥା ନୌକା ନିର୍ମାଣ ସମ୍ବନ୍ଧିତ ଶିଳାଚାତୁରୀ ଜଣାଯାଏ ।

(୭) ୧୧ଶ ଶତାବ୍ଦୀରେ ନିର୍ମିତ 'ବ୍ରହ୍ମେଶର' ମନ୍ଦିର ଗାତ୍ରରେ ଖୋଦିତ ନୌକା ଚିତ୍ରରେ - ହାତୀ ସହିତ ମାହୁନ୍ତ, ଆହୁଲାଧାରୀ ନାବିକ, କୁଞ୍ଚିତ ରେଖାଦ୍ୱାରା ଜଳତରଙ୍ଗ ତଥା ଅର୍ଦ୍ଧଲୁପ୍ତ, ମତ୍ସ୍ୟ, ମଗର, ଆଦିରୁ ତତ୍କାଳୀନ ବ୍ୟବହୃତ କଳିଙ୍ଗ ପୋତର ଗଠନ କଳା ସମ୍ବନ୍ଧରେ ମଧ୍ୟ ଜାଣିହୁଏ ।

(୮) ପୁରୀ ଶ୍ରୀମନ୍ଦିର ଭୋଗମଣ୍ଡପ ପ୍ରସ୍ତର ଗାତ୍ରରେ ଏକ ବୋଇତର ଚିତ୍ର ଖୋଦିତ ହୋଇଥିବାର ଦେଖାଯାଏ । ବୋଇତରେ କାପ୍ତାନଙ୍କ କକ୍ଷ (ମନ୍ଦିର)ର ଅବସ୍ଥିତିକୁ ନେଇ ଏହାକୁ 'ମଧ୍ୟମନ୍ଦିରା' କୃତି ବୋଲି ଚିହ୍ନିତ କରାଯାଇପାରେ । ଚିତ୍ରରେ କାପ୍ତାନ ଜଣକ ନିଜ କକ୍ଷରେ ସ୍ଥିର ଭାବରେ ବସି ଉପରୁ ଝୁଲୁଥିବା ଦଉଡ଼ିଟିକୁ ଦୃଢ଼ ଭାବରେ ଜାବୁଡ଼ି ଧରିଛନ୍ତି । ପୋତଟି ପାଣି କାଟି ଚାଲିବା ବେଳେ, କାତର ଚାଳନା ଓ ତରଙ୍ଗର ଗର୍ତ୍ତ ସୂଚୀତ ହୋଇଛି । ଏହା ପ୍ରାୟ ୧୩ ଶତାବ୍ଦୀର ଏବଂ ତତ୍କାଳୀନ ଉତ୍କଳୀୟ ସ୍ଥପତିର ପୋତ ନିର୍ମାଣ କଳାର ପ୍ରମାଣ ବହନ କରିଥାଏ ।

(୯) ନୀଳଗିରିରୁ ନୌକା ଯୋଗେ ଜଳପଥରେ ବଡ଼ବଡ଼ ପଥରମାନ ବୁହାହୋଇ ଆସି ଚନ୍ଦ୍ରଭାଗା ତଟରେ କାରୁକାର୍ଯ୍ୟପୂର୍ଣ୍ଣ କୋଣାର୍କ ମନ୍ଦିର ଗଢ଼ା ଯାଇଛି । କୋଣାର୍କର ପ୍ରସିଦ୍ଧ ନବଗ୍ରହ ମୂର୍ତ୍ତି (ପୃଷ୍ଠଭାଗରୁ ଛେଦନ ପରେ ଏବେ ମଧ୍ୟ ୨୬୫ ଟନ୍ ଓଜନର ଖଣ୍ଡିଏ ପଥରରେ ନିର୍ମିତ)କୁ ଗଢ଼ା ଯାଇଥିବା ପ୍ରସ୍ତର ଖଣ୍ଡିକୁ ଯେଉଁ ନୌକା ବା ନୌ ଭେଳାରେ ଅଣାଯାଇଥିବ, ତାହାର ଭାର ବହନ କ୍ଷମତା ସମ୍ବନ୍ଧରେ କଳନା କରାଯାଇପାରେ । ନୌକା ଉପରେ ହାତୀର ଦୃଶ୍ୟରୁ ସେ କାଳରେ ବଡ଼ ବଡ଼ ନୌକା ଯୋଗେ ହାତୀ ପରିବହନ ହେଉଥିବାର ଜଣାଯାଏ ।

(୧୦) ଯାତ୍ରୀ ତଥା ପଣ୍ୟଦ୍ରବ୍ୟ ବ୍ୟତୀତ, ବଡ଼ ବଡ଼ ନୌକା ଓ ଭେଳା ଯୋଗେ, ହାତୀ, ଘୋଡ଼ା, ଶଗଡ଼, ଓଟ, ବଳଦ ଆଦି ବୁହା


ଚତୁରୀ

ହୋଇ ନଦୀ ଓ ହ୍ରଦ ପାର ହେଉଥିବାରୁ, ସେକାଳର ଦେଶୀୟ କୌଶଳରେ ନିର୍ମିତ ଜାହାଜଗୁଡ଼ିକର ଓଜନ ସମ୍ଭାଳିବା କ୍ଷମତା ଓ ନୌକା ନିର୍ମାଣ କଳାର ସୂଚନା ଦେଇଥାଏ । ଐତିହାସିକ ତଥା ନୌବିଶେଷଜ୍ଞମାନଙ୍କ ମତରେ - ପ୍ରାଚୀନ ଓ ମଧ୍ୟଯୁଗରେ କଳିଙ୍ଗରେ ବ୍ୟବହୃତ ପୋତଗୁଡ଼ିକର ଆକାର ଆଜିକାଲି ଉନ୍ନତ ବୈଷୟିକ କୌଶଳରେ ନିର୍ମିତ ବୃହଦାକାୟ ଜାହାଜଠାରୁ କୌଣସି ଗୁଣରେ କମ୍ ନ'ଥିଲା ।

ଚିଲିକାର ଯେଉଁ ଜଳସ୍ରୋତଟି ସମୁଦ୍ର ସହିତ ସଂଲଗ୍ନ, ତାହାର ଉତ୍ତର ପାର୍ଶ୍ୱରେ ଅବସ୍ଥିତ 'ମାଣିକପାଟଣା' ଥିଲା - ଏକଦା ପ୍ରମୁଖ ବନ୍ଦର । ଏଠାରେ ଦେଶ ବିଦେଶର ନୌକା ଓ ନାବିକଙ୍କ ଭିଡ଼ ଜମୁଥିଲା । ଏଠାରେ ଐତିହାସିକ 'କାଞ୍ଚିକାବେରୀ' ଯୁଦ୍ଧ (୧୫ଶ) ସଂପର୍କିତ ବିଷୟଟି ଉଲ୍ଲେଖ କରାଯାଇପାରେ । ଚିଲିକା ନିକଟସ୍ଥ ଆଦିଗ୍ରାମର 'ମାଣିକ' ଗଉଡୁଣୀଠାରୁ ଜଗନ୍ନାଥ-ବଳଭଦ୍ର ଦହି ଖାଇବା ଜାଣିବା ପରେ ଗଜପତି ପୁରୁଷୋତ୍ତମ ଦେବ ତା' ନାମରେ 'ମାଣିକପାଟଣା' ଗ୍ରାମଟି କରିଦେବା ଓ ସେହିଠାରୁ ନିଜର ବିରାଟ କଳିଙ୍ଗ ବାହିନୀ (ଗଜ, ଅଶ୍ୱ, ପଦାତିକ ସୈନ୍ୟ) ସହିତ ବଡ଼ ବଡ଼ ନୌକା ଓ ଭେଳା ଯୋଗେ ଘାଟ ପାରି ହୋଇ, କାଞ୍ଚି ଅଭିମୁଖେ ଯାତ୍ରା କରିଥିଲେ । ପୁରୁଷୋତ୍ତମ ଦାସଙ୍କ ରଚିତ 'କାଞ୍ଚି କାବେରୀ'ରେ ତାହା ପ୍ରତିଫଳିତ ହୋଇଛି -

'ଯେହ୍ନେ ପ୍ରଭୁ ଜଗନ୍ନାଥ ରାଉତ ବେଶରେ
ସମୁଦ୍ର ମୁହାଣ ପଥେ ଯାଉଛନ୍ତି ଧୀରେ ।'

ମାଣିକପାଟଣା ନିକଟରୁ ପ୍ରାପ୍ତ 'ତାମ୍ରଫଳକ' ତଥା ସ୍ୱର୍ଗତଃ ବିରୁପାକ୍ଷ କରଙ୍କ ରଚିତ 'ପ୍ରାଚୀନ ଉତ୍କଳର ଜଳଯାତ୍ରା'ରୁ ନୌକା ଯୋଗେ - ହସ୍ତୀ, ଅଶ୍ୱ, ସବାରି ଆଦି ପାର ହେବା କଥା ଜଣାଯାଏ । ଏଥିରେ 'ମାଲ୍, ପଶୁ, ସବାରି, ଯାତ୍ରୀ' ପାର ହେବା ପାଇଁ ଧାର୍ଯ୍ୟ କରାଯାଇଥିବା ଘାଟ ମାହାସୁଲର ପରିମାଣ (ଇଂରେଜ ରାଜତ୍ୱରେ) ଉଲ୍ଲେଖ ଅଛି । ଏଥିରୁ କଳିଙ୍ଗର ପୋତ/ଭେଳାର ଭାରବହନ କ୍ଷମତା ସମ୍ବନ୍ଧରେ ଅବଗତ ହେବାକୁ ପଡ଼ିଥାଏ । ନିମ୍ନରେ ଏହା ପ୍ରଦତ୍ତ ହେଲା -

| | | |
|---|---|---|
| Per each Man | Re | 0 0 9 |
| Per one litter, eight carriers, one coolie and one torch bearer | Re | 0 4 0 |
| Per coolie with luggage | Re | 0 1 0 |
| Per each horse with rider | Re | 0 6 0 |
| If the horse goes through water and rider on boat | Re | 0 3 0 |
| Per one elephant with load | Re | 1 0 0 |
| Per one camel with rider | Re | 0 10 0 |
| It the camel goes through water and rider on boat | Re | 0 4 0 |
| If the elephant goes through water and the man on boat | Re | 0 1 0 |
| Per every sheep and goat | Re | 0 3 0 |
| Per every bullock car | Re | 0 2 0 |
| Per every bullock and donkey | Re | 0 1 6 |
| Per every bullock and donkey without load | Re | 0 1 0 |
| Load of earch | Re | 0 1 0 |

(୧୨) ଭୁବନେଶ୍ୱରରୁ ପ୍ରାପ୍ତ 'ବ୍ରହ୍ମାଣ୍ଡ ପୁରାଣ' ନାମକ ତାଳପତ୍ର ପୋଥିରେ ପ୍ରାଚୀନ ଉତ୍କଳରେ ନିର୍ମିତ ତଥା ଜଳଯାତ୍ରା ଓ ନୌପରିବହନ ପାଇଁ ବ୍ୟବହୃତ ପୋତଗୁଡ଼ିକର ମନୋଜ୍ଞ ବର୍ଣ୍ଣନା ରହିଛି । ଏହା ନିର୍ଦ୍ଦିଷ୍ଟ ଭାବରେ କେଉଁ ଶତାବ୍ଦୀର କୁହାଯାଇ ନପାରିଲେ ମଧ୍ୟ ଏହାର ନିର୍ମାଣ କଳା ଯେ ଉନ୍ନତ ଧରଣର ଥିଲା, ତାହା ସ୍ପଷ୍ଟ ହୋଇଯାଏ । ବିଶେଷ କରି ଚିଲିକା ହ୍ରଦରେ ବ୍ୟବହୃତ ପୋତଗୁଡ଼ିକ ସମ୍ବନ୍ଧରେ ଏକ ବିଶଦ୍ ଧାରଣା ଏଥିରେ ଦିଆଯାଇଛି, ଯଥା-

'ଚିଲ୍‌କା ହ୍ରଦେ ସହସ୍ରଂ ତୁ, ସୁପୋତାଃ ଜଳଗାମିନଃ
ତାମ୍ରାଚ୍ଛାଦିତାଃ ବୈ ଦ୍ରୁତାଃ, ସହସ୍ର ଜଳ ଧାରକାଃ ॥
ବହୁ ଚକ୍ରାନ୍ୱିତାଃ, ଶୀଘ୍ରାଃ, ଯନ୍ତ୍ରଗାଃ, ଚାଳକାଶ୍ରିତାଃ
ବାଣିଜ୍ୟ କରଣେ ଶକ୍ତାଃ, ତ୍ରିପଞ୍ଚଶିଖରାନ୍ୱିତା ॥
ଦ୍ୱୀପାନ୍ତର ଗତାଯାତାଃ, ଜାଭା-ମଳୟ-ସିଂହଳ
ଗଙ୍ଗାସାଗର ଚୀନେଷୁ, ଯଦୃଚ୍ଛାୟା ତଦା ଗତିଃ ॥
ଦେଶ ଦେଶାନ୍ତ ଦ୍ରବ୍ୟାଣି, ବହନ୍ତୋ ଯାନ୍ତିକୋ[illegible]ବା
ଜଳ ନିମ୍ନେତୁ ବା କେଚିତ୍, ମଜ୍ଜନେ ଗୁପ୍ତ କୌଶଳେ ॥
ଲୁକ୍କାୟିତାଃ ଭୂତପୂର୍ବ, ମହାଶ୍ଚର୍ଯ୍ୟେ ପରଂଗତାଃ
କୂର୍ମଯନ୍ତ୍ରଂ ଲାବଯନ୍ତ୍ରଂ, ମତ୍ସରୂପଂ ତୁ ପକ୍ଷିକମ୍ ॥
ହ୍ରସ୍ୱଂ କାଷ୍ଠମୟ ଦେହଂ, ତାମ୍ରପଟ୍ଟ ସୁରକ୍ଷିତମ୍
ଲୌହ ଚକ୍ରଗତଂ ନିମ୍ନେ, ଚକ୍ରବ୍ୟୂହ ସମନ୍ୱିତମ୍ ॥
ବାୟୁନାଳ ପରିଣଦ୍ଧଂ, ସଂକୋଚ ବିସ୍ତାରକମ୍
ବିସ୍ତୃତୌ ମଜ୍ଜନଂ କ୍ଷେୟଂ, ସଂକୋଚେ ଭାସମାନକମ୍ ॥
ଦୀପନେ ଜ୍ୱଳନେ ଚୈବ, ଚକ୍ରବ୍ୟୂହାଦି ଚାଳନେ
କୁଟନେ ସ୍ଫୋଟନେ ବାପି, ହ୍ୱଳନେ ପ୍ରେରଣଂ ଚରଦ୍ୱେ ॥(୮)

ଏଥିରେ ନୌକାର ପ୍ରକାର ଭେଦ, ଗତିଶୀଳତା, ଗଠନ କଳା, ବହୁଦୂର ଓ ଦେଶ ଦେଶାନ୍ତର ଗମନ ପାଇଁ ସାମର୍ଥ୍ୟ ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି ।

(୧୩) ଖ୍ରୀ:୧୬୬୪ରେ ବଙ୍ଗଳାର ଶାସକ ସାୟାସ୍ତ ଖାଁ ନୌବାଣିଜ୍ୟ କ୍ଷେତ୍ରରେ ବିଦେଶୀ ପ୍ରଭାବ ରୋକିବା ପାଇଁ ନୌକା ନିର୍ମାଣଶାଳା ଥିବା ବନ୍ଦର ସହରରେ ଟିକସ ବସାଇଲେ । ପୂର୍ବ ଉପକୂଳର ଅନ୍ୟାନ୍ୟ ନୌକା ନିର୍ମାଣ କେନ୍ଦ୍ରରୁ ସେ ନଗଦ ଟଙ୍କା ଆକାରର ଟିକସ ନେବା ସ୍ଥଳେ ଓଡ଼ିଶାର ବାଲେଶ୍ୱର (ପିପିଲି) କେନ୍ଦ୍ରରୁ ୪୦୦ରୁ ୬୦୦ ଟନ୍ ଓଜନର ଗୋଟିଏ, ଦୁଇଟା ବିଶାଳ ଜାହାଜ ଟିକସ ବାବଦକୁ ନେଉଥିବାର ଜଣାଯାଏ । Mr. Browery କହନ୍ତି ଯେ- ବାଲେଶ୍ୱର, ପିପିଲିରେ ଯେଉଁ ବୋଇତ ସବୁ ନିର୍ମିତ ହେଉଥିଲା - ତାହା ବୃହଦାକାୟ ଏବଂ ସେଥିରେ ୨୦ଟି ପର୍ଯ୍ୟନ୍ତ ପାଲ ଖଞ୍ଜା ଯାଇ ପାରୁଥିଲା ।

(୧୪) ଏକ ଐତିହାସିକ ବିବରଣୀରୁ ଜଣାଯାଏ ଯେ- ୧୭ଶ ଶତାବ୍ଦୀରେ ଉତ୍କଳର ରାଜା, ମହାରାଜା, ଜମିଦାରମାନେ ନିଜର ସଉକ ମେଣ୍ଟାଇବା, ସୈନ୍ୟ ବାହିନୀରେ ବ୍ୟବହାର କରିବା ତଥା ବିଜୟୀ ରାଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଦେଶୀୟ ଅରଣ୍ୟରୁ ମିଳୁଥିବା ହାତୀଗୁଡ଼ିକ ଅପେକ୍ଷା ଶ୍ୟାମ, ଚୀନ୍ ସିଂହଳରୁ ସଂଗୃହୀତ ହାତୀ କିଣିବାକୁ ପସନ୍ଦ କରୁଥିଲେ । ଏହି ହାତୀ ଚାଲାଣ ବା Elephant Trading ରେ ସେତେବେଳେ ବାଲେଶ୍ୱରର ଖେମଚାନ୍ଦ ତଥା ଚିନ୍ତାମଣି ଶାହା ନାମକ ଦୁଇ ବ୍ୟବସାୟୀ ୧୬୭୯ ଖ୍ରୀ:ରୁ ୧୬୮୭ ପର୍ଯ୍ୟନ୍ତ ଲିପ୍ତ ଥିଲେ । East India Companyର Balasore Factoryରୁ ନିମ୍ନୋକ୍ତ ସୂଚନା ମିଳେ ।(୯)

| କ୍ର.ନଂ | ଜାହାଜର ମାଲିକ | କେଉଁଠାରୁ ଆସିଲା | ପୋତାଶ୍ରୟରେ ପହଞ୍ଚିବା ତାରିଖ | ବୁହାଯିବା ହାତୀ ସଂଖ୍ୟା |
|---|---|---|---|---|
| ୧. | ଖେମଚାନ୍ଦ | ଟେନା ସେରିମ୍ (ଶ୍ୟାମ) | ୨୦.୩.୧୬୮୦ | ୨୧ଟା |
| ୨. | ଖେମଚାନ୍ଦ | ଟେନାସେରିମ୍ (ଶ୍ୟାମ) | ୬.୫.୧୬୮୨ | ୨୨ଟା |
| ୩. | ଖେମଚାନ୍ଦ | ଆଚିନ୍ (ଇଣ୍ଡୋନେସିଆ) | ୫/୧୬୮୮ | ୨୨ଟା |
| ୪. | ଖେମଚାନ୍ଦ | ଗେଟ୍ (ସିଂହଳ) | ୧୦/୧୬୮୩ | ୧୪ଟା |
| ୫. | ମଲିକକାଶିମ୍ | ଟେନାସେରିମ୍ (ଶ୍ୟାମ) | ୧୪.୪.୧୬୮୦ | ୨୫ଟା |

୬. ଚିନ୍ତାମଣି ଶାହା ଟେନାସେରିମ୍ (ଶ୍ୟାମ) ୧.୪.୧୬୮୯ ୫ଟା

୭. ସାୟାସ୍ତ ଖାଁ ଟେନାସେରିମ୍ (ଶ୍ୟାମ) ୨୯.୫.୧୬୮୫ --

Mr. Broweryଙ୍କ ରିପୋର୍ଟ ଅନୁଯାୟୀ ପ୍ରତିବର୍ଷ ୧୩ରୁ ୧୫ଟା ଜାହାଜରେ ୨୫ଟା ପର୍ଯ୍ୟନ୍ତ ହାତୀ ଲଦି, ସିଂହଳ, ଶ୍ୟାମ ଓ ଇଣ୍ଡୋନେସିଆରୁ ପିପିଲ (ବାଲେଶ୍ୱର) ବନ୍ଦରକୁ ଆଣି ବିକା ଯାଉଥିଲା । ଏଣୁ ତତ୍କାଳୀନ ଜାହାଜର ଭାର ସମ୍ଭାଳିବା କ୍ଷମତା କେତେ ଥିଲା ଅନୁମାନ କରାଯାଇପାରେ ।

(୧୫) ମି. ହଣ୍ଟର୍ ସାହେବଙ୍କ 'History of Orissa' ପୁସ୍ତକରେ ୧୯ଶ ଶତାବ୍ଦୀ ପର୍ଯ୍ୟନ୍ତ ମହାନଦୀ, ପିପିଲି, ବାଲେଶ୍ୱର ଆଦି ନଦୀ ଓ ସାମୁଦ୍ରିକ ବନ୍ଦରରେ ୩୦୦ରୁ ୪୦୦ ଟନ୍ ଓଜନର ପଣ୍ୟଦ୍ରବ୍ୟ ବୋଝେଇ ଜାହାଜ ଗତାଗତ କରିବାର ବର୍ଣ୍ଣନା କରିଛନ୍ତି ।




(୧୬) F. Ballazar Solvynsଙ୍କ ପ୍ରଣୀତ 'Less Hindustan' ପୁସ୍ତକରେ ମଧ୍ୟ ବାଲେଶ୍ୱର ବନ୍ଦରର ପ୍ରସିଦ୍ଧି ତଥା ପାଲବିହୀନ ପଟୁଆ (ଦେଶୀୟ ବୋଇତ)ର ସମାଗମ କଥା କହିଛନ୍ତି ।

ଉପଯୁକ୍ତ ଐତିହାସିକ ତଥ୍ୟ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର, ପଟ୍ଟଚିତ୍ର, ଶିଳ୍ପ, ଭାସ୍କର୍ଯ୍ୟ ତଥା ପରିବ୍ରାଜକ ବିବରଣୀରୁ 'କଳିଙ୍ଗ ପୋତ'ର ଗଠନ ତଥା ଭାର ବହନ କ୍ଷମତା ସଂପର୍କରେ ଯତ୍ କିଞ୍ଚିତ୍ ଧାରଣା ସୃଷ୍ଟି ହୁଏ ।

**ପ୍ରାଚୀନ ଓ ମଧ୍ୟଯୁଗରେ ଉତ୍କଳରେ ବ୍ୟବହୃତ ନୌକା (ପୋତ)ର ବିବରଣୀ ଓ ତାହାର ନିର୍ମାଣ କଳା :**

ଓଡ଼ିଶାରେ ଶର, ନଳ, ସୋଲ, ବେଣା ଆଦିରୁ ପ୍ରସ୍ତୁତ ଭେଳାରେ ନଦୀ, ନାଳ, ହ୍ରଦ ପାର ହେବାର ଦେଖାଯାଏ । ନଳ ତଥା ବେଣାକୁ ଖରାରେ ଶୁଖାଇ ସେଥିରେ Craft (ଭେଳା) ପ୍ରସ୍ତୁତ କରି ଚିଲିକାର ସ୍ଥିର ଜଳରେ ବ୍ୟବହୃତ ହେଉଥିବାର ପ୍ରଚଳିତ ଥିଲା । ପୁରୀ ନରେନ୍ଦ୍ର ପୁଷ୍କରିଣୀରେ ଚାପ ନିମିତ୍ତ ଏହି ପ୍ରକାର ଭେଳା ପ୍ରସ୍ତୁତ ହେଉଥିବାର ଜଣାଯାଏ । ଅଂଶୁପା, ବ୍ରାହ୍ମଣୀ, ବୈତରଣୀ ଆଦି ନଦୀରେ ଜଣକିଆ ବ୍ୟବହାର ପାଇଁ କୈବର୍ତ୍ତମାନେ ପାଲଧୁଆ, ଶିମିଳି ଓ ଦେବଦାରୁ ପ୍ରଭୃତି ହାଲୁକା କାଠରେ ନିର୍ମିତ 'ଭେଳା' ବ୍ୟବହାର କରିଥାଆନ୍ତି । ଯେତେବେଳେ ମହାନଦୀ ଜଳପୂର୍ଣ୍ଣା ରହୁଥିଲା, ସେତେବେଳେ ବଡ଼ବଡ଼ ବାଉଁଶକୁ ଚତୁଷ୍କୋଣୀ ବିଶିଷ୍ଟ ପଟାଳି କରି ନଦୀର ଉପରମୁଣ୍ଡରୁ ଭସାଇ ଦିଆଯାଉଥିଲା । ପଟାଳି ଉପରେ ଆଶ୍ରୟ ନେବାକୁ ଅର୍ଦ୍ଧ ଗୋଲାକାର ଚାଳିଆ ଥିଲା । ନଡ଼ିଆ ବା ତାଳ ଗଛର ଗଣ୍ଡିକୁ କାଟି ତାକୁ ଖୋଳି ଗୋଟିଏ ଗୋଟିଏ ଲମ୍ବାଳିଆ ଓ ଅଣଓସାରିଆ 'କାଠୁଆ' (Canoe) ପ୍ରସ୍ତୁତ କରି କେଉଟ ସମ୍ପ୍ରଦାୟ ନଦୀରେ ମାଛ ମାରୁଥିଲେ । କୁହାଯାଏ, ଏଥିରୁ କ୍ରମେ ହୁଲିଡଙ୍ଗା ବା Life Boatର ଉଦ୍ଭବ ହେଲା । କାଠଭେଳା ବା Catamaran ହେଲା ନୌପରିବହନ ପାଇଁ ଅନ୍ୟ ଏକ ମାଧ୍ୟମ । ସମାନ ସମାନ ଲମ୍ବର ହାଲୁକା କାଠଗଡ଼ମାନଙ୍କୁ ଯୋଡ଼ି ଏକ ସୁଦୃଢ଼ କାଠଭେଳା କରାଯାଏ । ଦୁଇ କାଠଗଡ଼ ମଧ୍ୟରେ ଫାଙ୍କ ଥିବାରୁ ପାଣି ଗଳିଯାଏ । ପରବର୍ତ୍ତୀ କାଳରେ ଏହି ଭେଳାରେ କାନ୍ଥି ବା ବାଡ଼ ଯୋଗ କରାଗଲା । ଓଡ଼ିଶାର ବଡ଼ ବଡ଼ ନଦୀମାନଙ୍କରେ ଏହି ପ୍ରକାର ଭେଳା ଗତାଗତ କରୁଥିଲା

ତେବେ ସଂପୂର୍ଣ୍ଣ ନୌକା ବା ବୋଇତ ନିର୍ମାଣ କଳାରେ କ୍ରମଶଃ ଉନ୍ନତି ଦେଖାଗଲା । ଗମ୍ଭାରୀ, ତମାଳ, ପଣସ ଆଦି ବୃକ୍ଷର କାଠକୁ ଚିରି ଶୁଖାଇ ତାହାକୁ ବଡ଼ ବଡ଼ ନୌକାର (Frame) ଛାଞ୍ଚ ନିର୍ମାଣରେ ବ୍ୟବହାର କରାଗଲା । ଜାହାଜର ଫ୍ରେମ୍ (ବହିରାକୃତି) ବା Hullଟି ସମଗ୍ର ଜାହାଜର ପ୍ରମୁଖ ଅଙ୍ଗ । ଏହା ମଜଭୁତ୍ କାଠ ପଟାରେ ନିର୍ମିତ । କେତେକ କ୍ଷେତ୍ରରେ ଏହା Flat ବା ଚଟକା ତ, କେତେକ ସ୍ଥଳେ ଏହାର ଦୁଇମୁଣ୍ଡ ଉର୍ଦ୍ଧାକୃତି ବିଶିଷ୍ଟ ହୋଇଥାଏ । ଏହି ଫ୍ରେମ୍‌ଟି ନୌକାର ଉଭୟ ପାର୍ଶ୍ୱସ୍ଥିତ ପଟାବାଡ଼ ସହିତ ଯୁକ୍ତ ହୋଇଥାଏ । ପଟାଗୁଡ଼ିକୁ ଯୋଖିବା ପାଇଁ ସାଧାରଣତଃ ଦୁଇଟି ପନ୍ଥା ଅବଲମ୍ବନ କରାଯାଉଥିଲା । ଗୋଟିଏ ହେଲା ପଟାକୁ ପଟା ଧାରରେ ପାଖାପାଖି କଣା କରାଯାଇ ସେଥିରେ କତା ଦଉଡ଼ି ସାହାଯ୍ୟରେ ମଜଭୁତ୍ ଭାବରେ ବାନ୍ଧି ଦିଆଯାଉଥିଲା । ଖ୍ରୀଷ୍ଟପୂର୍ବରୁ ସିଂହଳକୁ ଦନ୍ତଧାତୁ ନେଇ ଯାଉଥିବା ନୌକାଟି ଏହିପରି ଗ୍ରଥିତ ହୋଇଥିବାର ଜଣାଯାଏ । ମାତ୍ର ପରବର୍ତ୍ତୀ କାଳରେ ଦୂରସମୁଦ୍ର ତଥା ନିରାପଦ ଯାତ୍ରା ପାଇଁ କାଠପଟାଗୁଡ଼ିକୁ ଲୁହାକଣ୍ଟା ବା କାଠଖିଲ ଦ୍ୱାରା ଯୁକ୍ତ କରାଯାଉଥିଲା ।

ଦୀନକୃଷ୍ଣ ଦାସ (୧୫ ଶତାବ୍ଦୀ)ଙ୍କ 'ପ୍ରସ୍ତାବସିନ୍ଧୁ'ରେ କରତରେ କାଟି ଦୁଇଟି ପଟାକୁ ଖାପ କରି କିପରି ଖିଳି ଖଞ୍ଜି ଦିଆଯାଉଥିଲା, ତାହା ଉଲ୍ଲେଖ କରାଯାଇଛି ।

'ସେ ଲୁହା କାଟଇ କରପେଟା
ନାବ ଖଞ୍ଜିବାକୁ ଗଢ଼ଇ କଣ୍ଟା ।
ଦୁଇ ଖଣ୍ଡ ପଟା ଭିତରେ ପଶେ
ଯେସନ ନାରାଚ ଦେହରେ ବସେ ।।'

ପଟା ଯୋଡ଼ାଇ ସରିଲେ, ଛିଦ୍ରଗୁଡ଼ିକୁ ଲାଖ, ପାଳ, ଝୋଟ କିମ୍ବା ଅଠା (Gum) ଦ୍ୱାରା ମୁଦି ଦିଆଯାଏ ।

ମାସ୍ତୁଲ (Mast) ଥାଏ ବୋଇତର ମଝିରେ । ଉତ୍କଳୀୟ ବୌତରେ ୧ କିମ୍ବା ୨ଟି ମାସ୍ତୁଲ ରହୁଥିଲା । ପରବର୍ତ୍ତୀ କାଳରେ ୩ ବା ୪ଟି ମାସ୍ତୁଲ ରହିବାର ବ୍ୟବସ୍ଥା ହେଲା । ମାସ୍ତୁଲ୍ ଦେହରେ ଚତୁଷ୍କୋଣ, ତ୍ରିକୋଣ, ଆୟତ କ୍ଷେତ୍ର ବିଶିଷ୍ଟ ପାଲ ଖଞ୍ଜା ଯାଉଥିଲା । 'ପାଇକ ଖେଦା' ପୁସ୍ତକରେ ଉତ୍କଳୀୟ ପୋତର ବିଭିନ୍ନ ଅବୟବ ଯଥା- ମାସ୍ତୁଲ, ମଙ୍ଗଳ ପତାକାସ୍ତମ୍ଭ, ଆଦି ସମ୍ବନ୍ଧରେ ବିଶଦ ଆଲୋଚନା କରାଯାଇଛି, ଯାହାକି ପରବର୍ତ୍ତୀ ପରିଚ୍ଛେଦରେ ଆଲୋଚିତ ହୋଇଛି । ତେବେ ଓଡ଼ିଶାର ଧାମରା ମୁହାଣରେ ଦୁଇ ମାସ୍ତୁଲଯୁକ୍ତ ବୋଇତ ନିର୍ମିତ ହେଉଥିବାର ଜଣାଯାଏ । ମାଳଏସିଆଦିକୁ ଯାତ୍ରା ପାଇଁ ବଡ଼ ବଡ଼ ପୋତରେ ୩ଟି ମାସ୍ତୁଲ ମଧ୍ୟ ରହୁଥିଲା । ପୂର୍ବେ ମାସ୍ତୁଲଗୁଡ଼ିକ ଟିକ୍ ବା ଟାଣୁଆ ହାଲୁକା କାଠରେ ତିଆରି ହେଉଥିଲା । ପ୍ରାୟ ୧୨ଶ ଶତାବ୍ଦୀ ବେଳକୁ ଏହି ପାଲଟଣା ପୋତଗୁଡ଼ିକରେ କାଠ ବଦଳରେ ଧାତବ ମାସ୍ତୁଲ ଖଞ୍ଜା ହେବାର ଜଣାଯାଏ । ବନ୍ଦରରେ ଜାହାଜକୁ ବାନ୍ଧି ରଖିବା ନିମିତ୍ତ ଉତ୍କଳୀୟ ପୋତଗୁଡ଼ିକ ଦୁଇପାର୍ଶ୍ୱରେ କାଛି ବା ପାଗଡ଼ କୁହାଯାଉଥିବା ଦଉଡ଼ି ବନ୍ଧା ହେଉଥିଲା । ଜାହାଜରେ ଥାଏ ପାତାକ ସ୍ତମ୍ଭ, ଯେଉଁଥିରେ ଧଳା, ନାଲି ବା ହଳଦିଆ ରଙ୍ଗର ପତାକା ବନ୍ଧା ହୋଇଥାଏ । 'ପାଲ' ବା 'ଅଝାଲ' ହେଉଛି, ପାଲଟଣା ନୌକାର ଅତ୍ୟାବଶ୍ୟକୀୟ ଅଙ୍ଗ । ଭାରତର ଅନ୍ୟାନ୍ୟ ଅଞ୍ଚଳରେ ବ୍ୟବହୃତ ନୌକାର ପାଲ ପରି ଉତ୍କଳୀୟ ପୋତର ପାଲଗୁଡ଼ିକରେ ମଧ୍ୟ ବର୍ଗାକାର, ଆୟତାକାର, ତ୍ରିକୋଣୀ, ଚତୁଷ୍କୋଣୀ ପାଲ ଖଞ୍ଜା ଯାଇଥାଏ । ବ୍ୟାସ କବି ଫକୀରମୋହନ ନିଜ ଅନୁଭୂତିରୁ ଉତ୍କଳୀୟ ଜାହାଜ ନିର୍ମାଣ କଳା ସଂପର୍କିତ ଅନେକ ବର୍ଣ୍ଣନା (ଗ୍ରନ୍ଥାବଳୀ) ଦେଇଛନ୍ତି । ତେବେ ଓଡ଼ିଶାରେ ବ୍ୟବହୃତ ଏହି ପାଲକୁ କରାକୁ, କଲମି,, ଶବର, ଜିଭି, ତଭର, ଦରିଆ, ପେଲା ଆଦି ନାମରେ ପରିଚିତ । ବୋଇତର ଆକାର ପ୍ରକାର (ଛୋଟବଡ଼)କୁ ନେଇ ଏହା ବ୍ୟବହୃତ ହେଇଥାଏ ।

'ପାଲ' ତିଆରି ପାଇଁ ତଲେଇ, କନା, କେର୍‌ପାଲ, କାନ୍‌ଭାସ, ତଥା ଝୋଟ ନିର୍ମିତ ପଟି ବ୍ୟବହୃତ ହୁଏ । ଚିଲିକା ହ୍ରଦରେ ଗତାଗତ କରୁଥିବା ନୌକାଗୁଡ଼ିକରେ ବାଉଁଶ ପାତିଆ, ବେତଛାଲି ବା ତାଳପତ୍ର ନିର୍ମିତ ତଲେଇ ବ୍ୟବହୃତ ହେବାର ଦେଖାଯାଏ ।(୧୦) ବନ୍ଦରରେ ଆଶ୍ରୟ ସମୟରେ ଅଥବା ଜଳଯାତ୍ରା ସମୟରେ ବିପଦ ସଂକୁଳ ପରିସ୍ଥିତିରେ, ଜାହାଜକୁ ଜଳରେ ସ୍ଥିର ରଖିବାକୁ ନଙ୍ଗର ବା Anchorର ଆବଶ୍ୟକତା ପଡ଼ିଥାଏ । ଉତ୍କଳୀୟ ପାଲଟଣା ବୋଇତର ସମ୍ମୁଖ ଓ ପୃଷ୍ଠଭାଗରେ ଦୁଇଟା କରି ଲୌହ ନଙ୍ଗର ଥିବାର ଜଣାଯାଏ । ଫକୀର ମୋହନ ସେନାପତିଙ୍କ ମତରେ ପୂର୍ବେ ବାଲେଶ୍ୱରରେ ୩୦-୪୦ ମହଣ ଓଜନର ଲୌହ ନଙ୍ଗର ନିର୍ମିତ ହେଉଥିଲା ।

ଚିଲିକାରେ ବ୍ୟବହୃତ ନୌକାଗୁଡ଼ିକରେ ଦଉଡ଼ିରେ ବନ୍ଧା ହୋଇ ବଡ଼ ବଡ଼ ପଥର ଖଣ୍ଡମାନ ଥାଏ । ଝଡ଼ତୋଫାନ ସମୟରେ ଏହାକୁ ପାଣିକୁ ଖସାଇ ଦିଆଯାଉଥିଲା ।

'ମଙ୍ଗ' ହେଉଛି ବୋଇତର ସମ୍ମୁଖ ଭାଗ । ଏହା ସ୍ୱତନ୍ତ୍ର ଭାବରେ ତିଆରି ହୋଇ ପରେ ଖଞ୍ଜି ଦିଆଯାଇଥାଏ । ଭାରତର ଅନ୍ୟାନ୍ୟ ଅଞ୍ଚଳର ନୌକାରେ ନିର୍ମିତ ମଙ୍ଗ ପରି, ଉତ୍କଳୀୟ ପୋତଗୁଡ଼ିକର ମଙ୍ଗ-ରାଜହଂସ, ହସ୍ତୀ, ସିଂହ, ଛଞ୍ଚାଣ, ପକ୍ଷୀରାଜ ମୁଖାକୃତିର ହୋଇଥାଏ । ତେବେ ରାଜହଂସ ଶୈଳୀ ଅଧିକ ଜନପ୍ରିୟ ଅଟେ । ମଙ୍ଗ ଉପରେ 'ମଙ୍ଗୁଆଳ' (Captain) ଥାଇ, ପଥ ନିର୍ଦ୍ଦେଶ କରେ । ତାକୁ ମାନି ନାବିକ ସର୍ଦ୍ଦାର ବା 'ମିର୍ଦ୍ଧା', ଜାହାଜ ଚଳାଇ ନିଏ ।

ଜାହାଜ ମଧ୍ୟରେ ଥାଏ ଢୁଲିଓଙ୍ଗା ବା 'Life Boat', ଅସ୍ତ୍ରାଗାର ଓ ଅନ୍ୟାନ୍ୟ ଯନ୍ତ୍ରପାତି । ଦୂର ଓ ଗଭୀର ସମୁଦ୍ର ଯାତ୍ରା ପାଇଁ ବ୍ୟାପକ ପ୍ରସ୍ତୁତି ହୋଇଥାଏ ।

**ଉତ୍କଳୀୟ ପୋତ ଓ ପାଇକ ଖେଦା**

ପୋତ ନିର୍ମାଣ ତଥା ତାହାର ଆନୁଷଙ୍ଗିକ ବ୍ୟାପାର ବିଷୟରେ ଅନେକ ସଂସ୍କୃତ, ଇଂରାଜୀ ତଥା ଓଡ଼ିଆ ଗ୍ରନ୍ଥମାନ ଅଛି । ସେଗୁଡ଼ିକ ମଧ୍ୟରେ ସଂସ୍କୃତରେ ବିରଚିତ 'ଯୁକ୍ତିକଳ୍ପତରୁ', 'ବୃହତ୍ ସଂହିତା', 'ବୃକ୍ଷ ଆୟୁର୍ବେଦ' କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର', ଶୁକ୍ରନୀତି, ମୌତାବରୁଣୀ, କଠୋସଂହିତା ତଥା ୧୬ଶ ଶତାବ୍ଦୀର ପ୍ରତାପରୁଦ୍ର ଦେବଙ୍କ ରାଜସଭା ପଣ୍ଡିତ ଗୋଦାବରି ମିଶ୍ରଙ୍କ 'ହରିହର ଚତୁରଙ୍ଗ' ପ୍ରଧାନ । ସେହିପରି ଇଂରାଜୀ ପୁସ୍ତକ ମଧ୍ୟରେ 'History of Java' (Sir Stanford Rafis) Simth's Early History of India, History of Indian Shipping and Maritime activity (Radhakumud Mukhopadhaya), A Maritime History of India (Rear Admiral Sridharan) ତଥା ଓଡ଼ିଆରେ ବିରଚିତ 'ସମରତରଙ୍ଗ' । ମାତ୍ର ସମର ଶାସ୍ତ୍ର ବିଶାରଦ, ଖୋର୍ଦ୍ଧାରାଜା ନରସିଂହ ଦେବଙ୍କ ରାଜକବି, ପୁରୀ ଜିଲ୍ଲା - ଖୋର୍ଦ୍ଧାରାଜା ନରସିଂହ ଦେବଙ୍କ ରାଜକବି, ପୁରୀ ଜିଲ୍ଲା - ବ୍ରହ୍ମଗିରି ଥାନା - ଗଡ଼କୋକଲ ଗ୍ରାମର ଅଧିବାସୀ - କହ୍ନାଇ ଚମ୍ପତିରାୟଙ୍କ ପ୍ରଣୀତ ପାଇକ ଖେଦା (ଖ୍ରୀ:୧୬୨୪) ଉତ୍କଳୀୟ ସମରକଳାର ଏକ ନିର୍ଭରଯୋଗ୍ୟ ଗ୍ରନ୍ଥ ।

ଏହି ପୁସ୍ତକରେ ଆନୁଷଙ୍ଗିକ ସମର ବିଷୟକୁ ବର୍ଣ୍ଣନା ସହିତ ଉତ୍କଳୀୟ ପୋତର ନିର୍ମାଣ କଳା ସଂପର୍କିତ ବର୍ଣ୍ଣାଢ଼୍ୟ ବର୍ଣ୍ଣନା ରହିଅଛି । କବି ରାଜ୍ୟ ସୁରକ୍ଷା କ୍ଷେତ୍ରରେ ନୌ-ବିଭାଗକୁ ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ବୋଲି କହିଛନ୍ତି । ସେ ଉତ୍କଳୀୟ ପୋତର ବିଭାଗୀକରଣ କରି ସମସ୍ତ ପୋତକୁ 'ବାଣିଜ୍ୟ' ତଥା 'ଯୁଦ୍ଧ' ନିମିତ୍ତ ଦୁଇ ପ୍ରମୁଖ ଭାଗରେ ବିଭକ୍ତ କରିଛନ୍ତି ।(୧୧) ତାହାକୁ ପୁନଶ୍ଚ ବ୍ୟବହାରିକ ଦୃଷ୍ଟିରୁ ବିଭିନ୍ନ ନାମକରଣ କରାଯାଇଛି । ଯଥା-

(କ) ଯୁଦ୍ଧ ଜାହାଜ - (୧) ରାଜସୁର, (୨) ଲାଞ୍ଜୁଆ, (୩) ଖାଇଜଗା, (୪) ଗଙ୍ଗାପ୍ରସାଦ, (୫) ନନ୍ଦିଆ, (୬) ଖୁଡୁପ, (୭) ଚାତୁରୀ (ଚିତ୍ର-୩, ୪, ୫)

(ଖ) ବାଣିଜ୍ୟ ତରୀ - (୧) ବହିତର (ବୋଇତ), (୨) ଗାଣ୍ଡିଆ, (୩) ଚୋଟମୁଖୀ

ସମରକୁଶଳୀ ପୋତଗୁଡ଼ିକର ଗଠନ, ଶିଳ୍ପ ଚାତୁରୀ, କେଉଁ ନାବରେ କି କି ଯନ୍ତ୍ରପାତି, ଅସ୍ତ୍ରଶସ୍ତ୍ର ରହିବ, ଶତ୍ରୁ ବିପକ୍ଷରେ ଓ ବିପଦବେଳେ ତା'ର ପ୍ରୟୋଗବିଧି ସମ୍ବନ୍ଧରେ ସ୍ପଷ୍ଟୀକରଣ ଦେଇଛନ୍ତି - ୧. ଦୃଷ୍ଟାନ୍ତ ସ୍ୱରୂପ 'ନଦିଆ' ଯୁଦ୍ଧ ଜାହାଜର (ନିର୍ମାଣ ଓ ସଜ୍ଜା) ସଂପର୍କରେ ଲେଖାଅଛି -

'ଏଥି ଆୟୁଧମାନ ଭରି ଥାଇ
ସାତ ବଖରା କରିବ ନିଠାଇ
ଦୁଇ ପଟରେ ଦୁଇ ପାଲଥିବ
ମଝି ପୀଢ଼େ ଥାଇ
ପାଲୁଆ ଧରିବ ଡୋରକୁ ଠେଇଁ ।'(୭/୯)

ପାଲ ତଳକୁ ଚାଳମାନ ଥିବ
ଚାଳ ଉପରେ ପୁହାଣି ରହିବ ।
ପୁହାଣିରୁ ଚାରିକାଠ ରହିଣ
ତା'ର ଉପରେ ଚାମୁଣ୍ଡିଆ ପୁଣ
ମଝିଘର ଥିବ
ସେହି ଘରରେ ମଙ୍ଗୁଆ ରହିବ । (୭/୧୦)

ପୁନଶ୍ଚ-

ପୋତ ହେବ ଦୁଇକୋଡ଼ି ମୁଠୁଣି
ଯୋଡ଼ା ମୁହଁରେ ରହିବ କିଳିଣୀ
ଦୁଇ ପାରୁଶେ ଗୁପ୍ତ ଘର ଥିବ
ଦୁଇ ଯାହା ତହିଁ ବନ୍ଧା ରହିବ
ଖାପ କରିଥିବ
ଗଣ୍ଡି ଫିଟିଲେ, ଫିଟି ତା' ପଡ଼ିବ । (୭/୧୧)

ଯଦି ଶତ୍ରୁମାନେ ଅତର୍କିତ ଆକ୍ରମଣ କରନ୍ତି, ଭଣ୍ଡାରରେ ଅସ୍ତ୍ରଶସ୍ତ୍ର ଗଛିତ ଥିବ । ଡୋର ଫିଟାଇ ଦେଲେ ଗୁପ୍ତ ତରୀରେ ଭାସି ଯିବ । ଏଥିରେ 'ଚାତୁରୀ' ଜାତୀୟ ସମର କୁଶଳୀ ତରୀର ପ୍ରୟୋଗ ବିଷୟରେ ବିଶେଷ ବର୍ଣ୍ଣନା ରହିଅଛି । ସେତେବେଳେ 'ବାଷ୍ପଚାଳିତ' ପୋତର ମଧ୍ୟ ନିର୍ମାଣ କଳା ଜଣାଥିଲା । 'ଭାତି' ସାହାଯ୍ୟରେ ନିଆଁରେ ଜଳକୁ ଫୁଟାଇ, ବାଷ୍ପ ସୃଷ୍ଟି କରି, ନାବ ଚଳାଇବା ବ୍ୟବସ୍ଥାର ବର୍ଣ୍ଣନା ରହିଛି । ଯଥା-

ଚାତୁରୀରେ- ତାଳ ତଳେ ଭାତି ଯେ ଜଳୁଥିବ
ଭାତି ତଳରେ ଜଳମାନ ଥିବ
ଭାତି ଥିବ ଜଡ଼ିଣ ଥୋପ ଦେହେ
ଚଳୁଥିବ ସେ ଖାପ, ଖୋପ ପ୍ରାୟ
ଭାତିଆ ଯେ ଥିବ
ପାଦ ଚାଳିଣ ଭାତିକୁ ତାହିବ ॥ (୭/୨୦)

ଅଗି ଜଳିଲେ ଭାତିର ଭିତର
ଉର୍ଦ୍ଧ୍ୱ ଶୂନ୍ୟରେ ବାଷ୍ପ ଆବର
ମଙ୍ଗ ଉପରେ ଥିବ ଯେଉଁ ରନ୍ଧ୍ର
ଜାହାଜ ଉଠିବ
ପାଲକୁ ଜଳରେ ଚାଣ୍ଡେ ପେଲିବ ॥ (୭/୨୧)

ପୁନଶ୍ଚ - 'ଭାତି ବାହୁଣ ଥିବ, ତୁହା ତୁହା,
ବାମ୍ଫ ମାଡ଼ରେ, ପାଲ ଏବଠିଆ ।
ପାଲେ ପେଲିବ ବାମ୍ଫକୁ ନିଖୁଣେ
ତରୀ ଚଳିବ ସଇନ ଗହଣେ ॥ (୭/୨୪)

ଏହିପରି ଭାବରେ ବାମ୍ଫ ସୃଷ୍ଟି କରି ପାଲଟଣା ବୋଇତକୁ ବେଗଗାମୀ କରିବାର କଳା, ଉତ୍କଳୀୟ ନାବିକ ଓ ନୌସେନାଙ୍କୁ ଜଣାଥିଲା । ଏହା ଷୋଳ ଓ ସତର ଶହ ଶତାବ୍ଦୀ ଘଟଣା ।

**ନୌବାଣିଜ୍ୟର ଅନ୍ତଃସମାଧି**

ତେବେ ଉତ୍କଳୀୟ ପାଲଟଣା ଜାହାଜର ସଳିଳ ସମାଧି ଘଟିବାର ଅନେକ କାରଣ ମଧ୍ୟରୁ କେତେଗୋଟି ନିମ୍ନରେ ପ୍ରଦତ୍ତ ହେଲା - (୧) ନଦୀବନ୍ଧ ଯୋଜନା (Dam Project) ହେବା ଫଳରେ ନଦୀଗୁଡ଼ିକରେ ବର୍ଷସାରା ଜଳ ରହିଲା ନାହିଁ । ଏଣୁ ନୌଚାଳନା ପାଇଁ ଉପଯୋଗୀ ହେଲା ନାହିଁ ।

(୨) ସ୍ଥଳ ପଥରେ ପରିବହନ ବୃଦ୍ଧି ପାଇଲା । ଏହା କମ୍ ଖର୍ଚ୍ଚ ଶୀଘ୍ର ପଣ୍ୟଦ୍ରବ୍ୟର ବିପଣନ ହୋଇପାରୁଥିବାରୁ ନୌପରିବହନ ହ୍ରାସ ପାଇଲା ।

(୩) ରେଳ ଯୋଗେ ପରିହବନ ତ୍ୱରାନ୍ୱିତ ହେଲା ।

(୪) ଆଧୁନିକ ବୈଷୟିକ ଜ୍ଞାନ କୌଶଳରେ ପ୍ରସ୍ତୁତ ଜାହାଜଗୁଡ଼ିକ ବିପଦ ସଂକୁଳ ପରିସ୍ଥିତିକୁ ମୁକାବିଲା କରିପାରୁଥିବାରୁ, ଏହାର ନିର୍ମାଣ ବୃଦ୍ଧି ପାଇଲା ।

(୫) ସମୁଦ୍ର ମୁହାଣ ପୋତି ହୋଇ ଅଗଭୀର ହେବାରୁ ବଡ଼ ବଡ଼ ଜାହାଜ ପାଇଁ ଅନୁପଯୋଗୀ ହେଲା ।

(୬) ପୂର୍ବରୁ ଜଳଦସ୍ୟୁ ତଥା ବିଦେଶୀ ଜାହାଜଗୁଡ଼ିକ ଦେଶୀୟ ପୋତର ସଫଳ ମୁକାବିଲା କରିପାରିଲେ ।

(୭) ଓଡ଼ିଶା ସ୍ୱାଧୀନତା ହରାଇବା ସଂଗେସଂଗେ ମରହଟ୍ଟା ମୋଗଲ ସଂଘର୍ଷ, ଅତ୍ୟାଚାର, ଟିକସ ବୃଦ୍ଧି ହେତୁ ଦେଶୀୟ ନୌବାଣିଜ୍ୟ କ୍ଷତିଗ୍ରସ୍ତ ହେଲା ।

(୮) ଇଂରେଜମାନଙ୍କ Salt Act, ଉତ୍କଳୀୟଙ୍କ ମୁଖ୍ୟ ଲୁଣ ଚାଲାଣ କ୍ଷେତ୍ରରେ ବାଧା ସୃଷ୍ଟି କଲା ।

(୯) ଏହିପରି ମରହଟ୍ଟା, ମୁସଲମାନ, ଫରାସୀ, ଦିଲମାର, ଇଂରେଜମାନଙ୍କ ଦାଉରେ କବଳିତ ହୋଇ ଓଡ଼ିଆ ସାଧବ ପୁଅର

ନୌଯାତ୍ରା ଧନ୍ଦାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ସମୁଦ୍ର ପଥରେ ବହିର୍ବାଣିଜ୍ୟ ନିମିତ୍ତ ଦେଶୀୟ କୌଶଳରେ ଗଢ଼ା 'ବୋଇତ' ନାଁ 'ସାଧବ', ସବୁକିଛି ଲୋକକଥା, ପରମ୍ପରା ତଥା କଟକ ଗଡ଼ଗଡ଼ିଆ ଘାଟର 'ବୋଇତ ବନ୍ଦାଣ'ରେ ସୀମିତ ରହିଲା ।

ଆଜି କଳିଙ୍ଗ ବୋଇତ, ପ୍ରାଚକ ଚିତ୍ରପଟ ଏବଂ ମନ୍ଦିର ଓ ଶୈଳଗାତ୍ରରେ ଧ୍ୱନ୍ତାଭ ଓ ନିଷ୍ପ୍ରଭ ସ୍ମୃତିଚାରଣ କରୁଛି ମାତ୍ର ।

**(କ) ପାଦଟୀକା :**

୧. Marine Activities in the Ancient Utkal Prachi-1931, vol-II

୨. Maritime contact p-66 by K.S. Behera (VHR-J-1994)

୩. ସପ୍ତାହ ବୃତମାଷାଢ଼ୀ କାର୍ତ୍ତିକୀଚାନ୍ତରା ତରଃ
କାର୍ମିକ ପ୍ରତ୍ୟୟଂ ଦଧାନିତ୍ୟଂ ଚାହ୍ନିକମାବହେତ୍ (ଅର୍ଥଶାସ୍ତ୍ର)

୪. Maritime contact (VH. R.J.-1994) by K.S. Behera, pp.57

୫. By courtesy : A Maritime History of India by Rear Admiral K. Sridharan

୬. ଚିତ୍ର-୨ (Royal barge in Jaganath Temple)

୭. Table-8, (Page-20, Marine Activities in Ancient India - Prachi-1931)

୮. ତତ୍ରୈବ - ପୃଷ୍ଠା-୭

୯. Elephant Trade in Orissa in the Seventeenth Century, p.-9 (By Lalatendu Das Mohapatro) Maritime Activities and Trade in Orissa (O. State Archives - BBSR)

୧୦. Boat-building in Orissa - Rabinarayan Dash - ibid-

**(ଖ) ସହାୟକ ଗ୍ରନ୍ଥସୂଚୀ :**

୧. Maritime Activities and Trade in Orissa - Orissa State Archives - Bhubaneswar-01, 1996

୨. Prachi (Quarterly), Part-II (1931), Publishd on behalf of the Prachi Samitte by B.C. Patanaik.

୩. Utkal Historical Research Journal, Golden Jubilee year-special - 1994

୪. A Maritime History of India by Rear Admiral K. Sridharan, 1982

୫. କଲ୍ୟାଣ ଶିକ୍ଷାଙ୍କ (ହିନ୍ଦୀ), ଗୀତା ପ୍ରେସ୍ ଗୋରଖପୁର (ପ୍ରାଚୀନ ନୌକା ନିର୍ମାଣ କଳା)

୬. ପ୍ରାଚୀନ ଉତ୍କଳ : ଜଗବନ୍ଧୁ ସିଂହ, ୧୯୬୪

୭. ପ୍ରାଚୀନ ଉତ୍କଳର ଜଳଯାତ୍ରା : ବିରୁପାକ୍ଷ କର, ୧୯୧୫

୮. ଓଡ଼ିଆ ଜାତିର ଇତିହାସ - ନବୀନ କୁମାର ସାହୁ

୯. ଅର୍ଥଶାସ୍ତ୍ର : କୌଟିଲ୍ୟ

୧୦. ପାଇକ ଖେଦା : କହ୍ନାଇ ଚମ୍ପତିରାୟ (ସଦାଶିବ ରଥଶର୍ମାଙ୍କ ମୁଖବନ୍ଧ ସହ), ପ୍ରକାଶକ : ଜଗନ୍ନାଥ ଗବେଷଣା ସମିତି - ଏମାର ମଠ, ପୁରୀ

୧୨. ଗଙ୍ଗବଂଶାନୁ ଚରିତମ୍ : ବାସୁଦେବ ରଥ ସୋମୟାଜୀ by Kashiprasad Jayswal - Patna-1982

୧୩. Indian Aniquity - R.L. Mitra

୧୪. ଭାରତ ଇଣ୍ଡୋନେସିଆର ସାଂସ୍କୃତିକ ଓ ନୌବାଣିଜ୍ୟ ସଂପର୍କ : ଡ. ଚନ୍ଦ୍ରଭାନୁ ପଟେଲ (ଉତ୍କଳ ପ୍ରସଙ୍ଗ - ୫/୨୦୦୪)

୧୫. କାର୍ତ୍ତିକ ବୋଇତ ବନ୍ଦାଣ : ଡ. ବେଣୁଧର ପାତ୍ର (ଉତ୍କଳ ପ୍ରସଙ୍ଗ - ୧୧/୧୯୯୬)

୧୬. ଓଡ଼ିଶାର ସାମୁଦ୍ରିକ ପରମ୍ପରା : ଡ. ଭଗବାନ ପଣ୍ଡା, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର-୧୪

୧୭. Ship building and Commerce in Ancient Bengal (Calcutta University Journal, Vol.X, pp-IIII-23)

୧୮. A Narrative of a journey to the diamond mines at Sambalpur (O.H.R.J. Vol-I, No.-3, 10/1972)

୧୯. ଫକୀର ମୋହନ ଗ୍ରନ୍ଥାବଳୀ

୨୦. ପ୍ରସ୍ତାବ ସିନ୍ଧୁ : ଦୀନକୃଷ୍ଣ ଦାସ

ସେ ନାବ ଜଳରେ ମେଲିଲେ ନେଇ
ଲୁହା ଶହେ ବିଶା ଭିତରେ ଥୋଇ ।
ନାନା ରତ୍ନମାନ ଭିତରେ ଥୋଇ
ଅକୂଳ ସମୁଦ୍ରେ ମେଲିଲେ ନେଇ ।
ସେ ନାବ ସ୍ୱଭାବେ ସଣ୍ଢ ସମାନ
ଲୁହା ପ୍ରତି କେବେ ନୁହେଁ ବିମନ ।।

ଅଭିନନ୍ଦନ
୩୫, ବସନ୍ତ ବିହାର
ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ, ଭୁବନେଶ୍ୱର - ୧୮

# ଐତିହାସିକ ବାଲିଯାତ୍ରା ଓ ବୋଇତ ବନ୍ଦାଣ ଉତ୍ସବ

ସୁଶାନ୍ତ କୁମାର ସେନାପତି

**ଭା**ରତର ସାମାଜିକ, ରାଜନୈତିକ, ଧାର୍ମିକ ଓ ସାଂସ୍କୃତିକ ବିବର୍ତ୍ତନ ଦୃଷ୍ଟିରୁ ଓଡ଼ିଶାର ସ୍ଥାନ ସ୍ୱତନ୍ତ୍ର ଅଟେ । ରାଜନୈତିକ ସୀମାକୁ ନେଇ ଓଡ଼ିଶା ପୂର୍ବେ କଳିଙ୍ଗ, କଙ୍ଗୋଦ, ଉଡ୍ର, କୋଶଳ ଓ ଉତ୍କଳ ଆଦି ନାମରେ ପରିଚିତ ଥିଲା । ପ୍ରାଚୀନ ଉତ୍କଳ ଏକ ବୈଭବଶାଳୀ ଓ ସମୃଦ୍ଧଶାଳୀ ଦେଶ ରୂପେ ପରିଗଣିତ ହେଉଥିଲା । ନଦନଦୀ, ବଣ ପାହାଡ଼, ସୁବିସ୍ତୃତ ସମୁଦ୍ର ବେଳାଭୂମି, ଶସ୍ୟଶ୍ୟାମଳଭରା କ୍ଷେତ, ଦୁର୍ମୂଲ୍ୟ ଖଣିଜ ରତ୍ନରେ ଭରପୂର ଓଡ଼ିଶା ଭାରତମାତାର ମଣି ସଦୃଶ । ଓଡ଼ିଆ ପୁଅର ସାହସିକତା ଓ ବୀରତ୍ୱର ଗାଥା ପୌରାଣିକ ଗ୍ରନ୍ଥ ମହାଭାରତ ଏବଂ ଇତିହାସ ପୃଷ୍ଠାରେ ବିମଣ୍ଡିତ । ଆମର ସଂସ୍କୃତି ଖ୍ରୀଷ୍ଟପୂର୍ବ ଦଶହଜାର ବର୍ଷର ପୂର୍ବବର୍ତ୍ତୀ ବୋଲି ଗବେଷକମାନେ ମତ ଦିଅନ୍ତି । ବିବର୍ତ୍ତନବାଦର ସ୍ରୋତରେ ଉତ୍କଳୀୟ ସାଂସ୍କୃତିକ ପରମ୍ପରା ବିଲୁପ୍ତ ହୋଇଯାଇଥିବା ସ୍ଥଳେ କଟକର ବାଲିଯାତ୍ରା ଓ ବୋଇତ ବନ୍ଦାଣ ଉତ୍ସବ ଅତୀତର ସ୍ମୃତି ଓ ସ୍ୱାଭିମାନକୁ ଉଜ୍ଜୀବିତ କରିଥାଏ ।



କଟକ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର । ପୂର୍ବେ ଏହା ଓଡ଼ିଶାର ରାଜଧାନୀ ଥିଲା ଏବଂ ଏହାକୁ ଓଡ଼ିଶାର ଏକ ମୁଖ୍ୟ ବାଣିଜ୍ୟ କେନ୍ଦ୍ର ଭାବେ ପରିଗଣିତ କରାଯାଏ । କଟକକୁ ଛାଡ଼ି ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ପ୍ରଗତିର କଥା ଚିନ୍ତା କରାଯାଇପାରେ ନାହିଁ । ସେଥିପାଇଁ କଥାରେ ଅଛି କଟକ ନଗର ଧବଳ ଟଗର । କଟକର ବାଲିଯାତ୍ରା ସମଗ୍ର ଉତ୍କଳର ଐତିହ୍ୟ ଓ ସଂସ୍କୃତିର ବୈଜୟନ୍ତୀ ଗୌରବୋଜ୍ଜ୍ୱଳ ପ୍ରାଚୀନ ନୌବାଣିଜ୍ୟର ବାର୍ତ୍ତାବହ । ଏହି ଯାତ୍ରା କେବଳ ପ୍ରଦର୍ଶନୀର ଏକ କ୍ଷେତ୍ର ନୁହେଁ ଏହା ଆମ ରାଜ୍ୟର ଶିଳ୍ପ, କଳା, ଭାସ୍କର୍ଯ୍ୟ, ବିଭିନ୍ନ ବାଣିଜ୍ୟିକ ବିଭବ ତଥା ହସ୍ତଶିଳ୍ପ ଓ କୁଟୀର ଶିଳ୍ପର ଏକ ଭରପୂର ଗନ୍ତାଘର । ତେଣୁ ବାଲିଯାତ୍ରା ଓଡ଼ିଶାର ଏକ ଜାତୀୟ ପର୍ବ ଭାବରେ ସୁପ୍ରତିଷ୍ଠିତ ଓ ସୁବିଦିତ । ଏହି ବାଲିଯାତ୍ରା ଉତ୍ସବ କେବେଠାରୁ ଓ କାହିଁକି ପ୍ରଚଳିତ ତା'ର କିଛି ସଠିକ୍ ପ୍ରମାଣ ନାହିଁ । ଐତିହାସିକ ତଥା ଗବେଷକମାନେ ଏହା ଉପରେ ଭିନ୍ନ ଭିନ୍ନ ମତପୋଷଣ କରନ୍ତି । କେତେକ କହନ୍ତି କାର୍ତ୍ତିକ ପୂର୍ଣ୍ଣିମା ଦିନ ଶ୍ରୀ ଚୈତନ୍ୟ ମହାପ୍ରଭୁ କଟକରେ ବିରାଜମାନ କରି ଉଦ୍ଦଣ୍ଡ କୀର୍ତ୍ତନ ପୂର୍ବକ ବିଷ୍ଣୁ ପ୍ରେମରେ ଆତ୍ମ ବିସ୍ମୃତ ହୋଇ ପୁଣ୍ୟତୋୟା ମହାନଦୀର ବାଲିଘାଟରେ ଗଡ଼ି ଗଡ଼ି ଲୋଟି ଯାଇଥିଲେ । ସେଇଦିନଠାରୁ ଏ ପବିତ୍ରଘାଟ ଗଡ଼ଗଡ଼ିଆ ଘାଟ ରୂପେ ବିଦିତ ଏବଂ ସେଇ ଅବିସ୍ମରଣୀୟ ସ୍ମୃତିକୁ ସାଉଁଟି ରଖିବାକୁ ଯେଉଁ ଉତ୍ସବର ଆୟୋଜନ କରାଯାଇଥିଲା, ଆଜିର ବାଲିଯାତ୍ରା ତାହାର ଏକ ପରିପ୍ରକାଶ ।

ଦ୍ୱିତୀୟ ମତଟି ହେଲା ଏହିଦିନ ବଣିଜ ବେପାର ସାରି ସ୍ୱଦେଶକୁ ବାହୁଡ଼ି ଆସୁଥିବା ସାଧବମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ଏପରି ଏକ ଆୟୋଜନ କରାଯାଇଥିଲା । କିନ୍ତୁ କେତେକଙ୍କ ମତରେ 'କାର୍ତ୍ତିକ ପୂର୍ଣ୍ଣିମା' ଦିନ ସାଧବମାନେ ବୋଇତରେ ବାଲିଦ୍ୱୀପକୁ ଯାତ୍ରା କରୁଥିବାରୁ ଏ ଉତ୍ସବ 'ବାଲିଯାତ୍ରା' ନାମରେ ନାମିତ ହୋଇଛି । ଓଡ଼ିଆ ଝିଅଙ୍କ 'ଖୁଦୁରୁକୁଣୀ ଓଷା' କଥାକୁ ତର୍ଜମା କରି ଦେଖିଲେ ତୃତୀୟ ତଥା ଶେଷ ମତଟି ଅଧିକ ପ୍ରାସଙ୍ଗିକ ମନେହୁଏ ।

କାର୍ତ୍ତିକ ମାସ ଓଡ଼ିଶାବାସୀଙ୍କ ପାଇଁ ଏକ ପବିତ୍ର ମାସ । ପୌରାଣିକ ତଥା ଧାର୍ମିକ ଦୃଷ୍ଟିରୁ ଏ ମାସର ଯଥେଷ୍ଟ ଗୁରୁତ୍ୱ ରହିଛି । ଆଶ୍ୱିନ, କାର୍ତ୍ତିକ ଓ ମାର୍ଗଶିର ଏ ତିନି ମାସରେ ଆକାଶ ମେଘମୁକ୍ତ ରହିଥାଏ । ତିନିମାସ ମଧ୍ୟରେ କାର୍ତ୍ତିକ ମାସ ସବୁଠାରୁ ଶୁଭପ୍ରଦ ଅଟେ । ଏହି ସମୟରେ ସମୁଦ୍ର ଶାନ୍ତ ଥାଏ । କାର୍ତ୍ତିକ ମାସରେ ବୋଇତ ନେଇ ସମୁଦ୍ରରେ ଯାତାୟାତ କରିବା ଅତ୍ୟନ୍ତ ନିରାପଦ ଅଟେ । ତେଣୁ କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରତ୍ୟୁଷରୁ ଉତ୍କଳର ସାଧବପୁଅମାନେ ବିଭିନ୍ନ କାରିଗରୀ ଶିଳ୍ପ ସାମଗ୍ରୀ, ବସ୍ତ୍ର, ସୁଗନ୍ଧ ଦ୍ରବ୍ୟ, ଅଳଙ୍କାର ଏବଂ ଅନ୍ୟାନ୍ୟ ସାମଗ୍ରୀ

ନେଇ ପାଲଟଣା ବୋଇତମାନଙ୍କରେ ସାତ ସମୁଦ୍ର ତେର ନଈ ପାରି ହୋଇ ବେପାର ବଣିଜ ପାଇଁ ବାଲି, ଜାଭା, ସୁମାତ୍ରା ଓ ବୋର୍ଣ୍ଣିଓ ପ୍ରଭୃତି ସ୍ଥାନକୁ ଯାତ୍ରା କରୁଥିଲେ । ସେଠାରେ ରହି ସୁନା, ରୁପା ମଣି, ମୁକ୍ତା ପ୍ରଭୃତି ମୂଲ୍ୟବାନ ଧାତୁମାନ ସଂଗ୍ରହ କରିବା ସଂଗେସଂଗେ ସାଥୀରେ ନେଇଥିବା ଦ୍ରବ୍ୟାଦିକୁ ବିକ୍ରୀ କରି ପ୍ରଚୁର ଧନ ସଂପତ୍ତି ଧରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଥିଲେ । ସେମାନଙ୍କର ପ୍ରତ୍ୟାବର୍ତ୍ତନ ଆଣି ଦେଉଥିଲା ଶାନ୍ତି, ମୈତ୍ରୀ ଓ ପ୍ରୀତିର ସନ୍ଦେଶ । ସେତିକି ନୁହେଁ, ତାହା ଦେଶ ଦେଶ ମଧ୍ୟରେ ସୁସଂପର୍କ ଏବଂ ସମସ୍ତଙ୍କ ମଧ୍ୟରେ ଆତ୍ମୀୟତାର ଭାବକୁ ଉଦ୍ରେକ କରୁଥିଲା । ବାସ୍ତବରେ ଓଡ଼ିଆ ବଣିକମାନେ ଥିଲେ କୁବେରଙ୍କ ପରି ଧନୀ ଓ ମାନୀ ।

ବୋଇତ ବନ୍ଦାଣ ଉତ୍ସବ ନୌବାଣିଜ୍ୟ ସମୃଦ୍ଧ ଉତ୍କଳର ପରିଚୟ ପ୍ରଦାନ କରିଥାଏ । ଓଡ଼ିଶାରେ ଅନେକ ନଦୀ ଓ ବିସ୍ତୃତ ସମୁଦ୍ର ଉପକୂଳ ଥିବାରୁ ଓଡ଼ିଆମାନେ ନୌଯାତ୍ରାରେ ନିପୁଣ ଥିଲେ । ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ କେବଳ ଓଡ଼ିଶା ଭୂଖଣ୍ଡ ବା ଭାରତ ମଧ୍ୟରେ ସୀମାବଦ୍ଧ ନଥିଲା । ତାହା ବିଶ୍ୱର ଅନେକ ଦେଶରେ ସମୁଦ୍ରର ପରପାରିରେ ପରିବ୍ୟାପ୍ତ ଥିଲା ।

ସେତେବେଳେ ବଙ୍ଗୋପସାଗର 'ପୂର୍ବାମ୍ବୁଧି' ନାମରେ ପରିଚିତ ଥିଲା । ବଙ୍ଗୋପସାଗରର ଚାରିପାଖରେ ଥିବା ସ୍ଥାନ ଯଥା- ବ୍ରହ୍ମଦେଶ, ଇଣ୍ଡୋଚୀନ, ଶ୍ୟାମ, ମାଳୟ, ଯବ ବା ଜାଭା, ସୁମାତ୍ରା, ବାଲି, ଶ୍ରୀଲଙ୍କା ଓ ବୋର୍ଣ୍ଣିଓ ପ୍ରଭୃତିରେ ଓଡ଼ିଆମାନେ ନିଜର ସାମ୍ରାଜ୍ୟ ବିସ୍ତାର କରିଥିଲେ । ଏହି ସାମ୍ରାଜ୍ୟଗୁଡ଼ିକୁ ନେଇ କଳିଙ୍ଗ ରାଜ୍ୟର ନାମ 'ବୃହତ୍ କଳିଙ୍ଗ' ହୋଇଥିଲା । ଅଦ୍ୟାବଧି ସେଠାକାର କେତେକ ଅଧିବାସୀ ନିଜକୁ 'କ୍ଲିଙ୍ଗ ବା କଳିଙ୍ଗଜାତି' ଭାବେ ଅଭିହିତ କରନ୍ତି । କଳିଙ୍ଗ ଜାତି 'ପୂର୍ବାମ୍ବୁଧି' ବା ବଙ୍ଗୋପସାଗରକୁ ନିଜର କ୍ଷମତା ବଳରେ 'କଳିଙ୍ଗ ସାଗର' ନାମ ଦେଇଥିଲେ । 'ଆର୍ଯ୍ୟ ମଞ୍ଜୁଶ୍ରୀ ମୂଳକଳ୍ପ'ରେ ପୂର୍ବାମ୍ବୁଧିର ନାମ କଳିଙ୍ଗୋଦ ବା କଳିଙ୍ଗ ସାଗର ରୂପେ ବର୍ଣ୍ଣିତ ହୋଇଥିବାରୁ ଏହି ସାଗର କଳିଙ୍ଗ ଅଧିବାସୀମାନଙ୍କ ଦ୍ୱାରା ପ୍ରାଧାନ୍ୟ ବିସ୍ତାର କରିଥିବାର ଜଣାଯାଏ । ସମୁଦ୍ର ଯାତ୍ରାରେ କଳିଙ୍ଗର ଦୁର୍ବାର ଶକ୍ତି ଓ ଦକ୍ଷତା ପାଇଁ କାଳି ଦାସ ତାଙ୍କ ପ୍ରସିଦ୍ଧ କାବ୍ୟ 'ରଘୁବଂଶ'ରେ କଳିଙ୍ଗ ରାଜାଙ୍କୁ ମହୋଦଧିପତି ବା ସମୁଦ୍ରରାଜା ଭାବେ ବର୍ଣ୍ଣନା କରିଛନ୍ତି । ଟଲେମିଙ୍କ ମତରେ ତୋଷାଳି କଳିଙ୍ଗର ରାଜଧାନୀ ଥିଲା କିନ୍ତୁ ପରିବ୍ରାଜକ ମେଘାସ୍ଥନିସ୍‌ଙ୍କ ପ୍ରଦତ୍ତ ତଥ୍ୟରୁ 'ପର୍ଥଲି' କଳିଙ୍ଗର ରାଜଧାନୀ ଏବଂ କଳିଙ୍ଗ ଉପକୂଳର ଦୈର୍ଘ୍ୟ ସାତଶହ ମାଇଲ୍ ବୋଲି ଜଣାପଡ଼େ ।

ଐତିହାସିକ ତଥ୍ୟାନୁଯାୟୀ ୨୫୦୦ ବର୍ଷ ପୂର୍ବରୁ ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟ ନୌବାଣିଜ୍ୟ କ୍ଷେତ୍ରରେ ସମଗ୍ର ଭାରତବର୍ଷରେ ଥିଲା ଅଦ୍ୱିତୀୟ । ହଣ୍ଟରଙ୍କ ଓଡ଼ିଶା ଇତିହାସ ପ୍ରଥମ ଖଣ୍ଡାନୁସାରେ ସୁବର୍ଣ୍ଣରେଖା, ଛନୁଆ, ବାଲେଶ୍ୱର, ଚୂଡ଼ାମଣି, ଧାମରା, ଚାନ୍ଦବାଲି, ଲଇଛନପୁର, ପୁରୀ, ତାମଲୁକ୍ ଓ ଫଲସ୍ ପଏଣ୍ଟ ପ୍ରଭୃତି ୯ଗୋଟି ବନ୍ଦର ସେତେବେଳେ କାର୍ଯ୍ୟକ୍ଷମ ଥିଲା । ସେଥି ମଧ୍ୟରୁ ଧାମରା - ଚାନ୍ଦବାଲି ପ୍ରଧାନ ବନ୍ଦର ରୂପେ ପରିଗଣିତ ହେଉଥିଲା । ତେଣୁ ଏହାକୁ 'କଳିଙ୍ଗର ପ୍ରବେଶ ପଥ' ବୋଲି କୁହାଯାଉଥିଲା । ଆନ୍ତର୍ବାଣିଜ୍ୟ ଓ ବହିର୍ବାଣିଜ୍ୟ ପାଇଁ ସେତେବେଳେ ଚାନ୍ଦବାଲି ବନ୍ଦର ବେଶ୍ ନାଁ କରିଥିଲା । ଧାମରା ଓ ଚାନ୍ଦବାଲି ବନ୍ଦର ଓଡ଼ିଶାର ରାଜନୈତିକ ଓ ଅର୍ଥନୈତିକ ଇତିହାସର ଏକ ପ୍ରତିଫଳନ ଅଟେ । ବ୍ରିଟିଶ୍ ସାହେବ ମ୍ୟାଡ୍‌ନେଲ୍ ୧୮୫୮ ମସିହା ମାର୍ଚ୍ଚ ୧୮ ତାରିଖରେ ଧାମରା ଓ ୧୮୮୧ ମାର୍ଚ୍ଚ ୨୮ ତାରିଖରେ ଚାନ୍ଦବାଲି ବନ୍ଦରର ଉଦ୍‌ଘାଟନ କରିଥିଲେ ।

ଗବେଷକମାନଙ୍କ ମତାନୁସାରେ ତାମ୍ରଲିପ୍ତ, ଚେଳିତାଲୋ, ଋଷିକୁଲ୍ୟା ନଦୀ ମୁହାଣରେ ଥିବା ପାଲୁର ବା ପାନ୍ଥୁର, ଜୟପୁର, ପାରାଦୀପ, ପିଥୁଣ୍ଡା (ଅସ୍ତରଙ୍ଗ), ପିପିଲି ଆଦି ବନ୍ଦର ଦେଇ ସେତେବେଳେ ବୋଇତମାନ ଯିବା ଆସିବା କରୁଥିଲା ।

'ତାମ୍ରଲିପ୍ତ' ଥିଲା ବଙ୍ଗୋପସାଗର ବା କଳିଙ୍ଗ ସାଗରର କେନ୍ଦ୍ର ବନ୍ଦର । ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ତାଙ୍କ ଭ୍ରମଣ କାହାଣୀରେ 'ଚେଳିତାଲୋ' ଓ 'ଚରିତ୍ର' ନାମରେ ଦୁଇଟି ବନ୍ଦର ବେଶ୍ ଖ୍ୟାତି ଲାଭ କରିଥିବା କଥା ଉଲ୍ଲେଖ କରିଛନ୍ତି । କେତେକ ଐତିହାସିକ କୁହନ୍ତି 'ଚେଳିତାଲୋ' କାଳକ୍ରମେ ଚାନ୍ଦବାଲି ଓ 'ଚରିତ୍ର' ବନ୍ଦର ଚାନ୍ଦିପୁର ନାମରେ ଖ୍ୟାତ ହୋଇଥାଇପାରେ । କେହି କେହି ପାରାଦୀପ ନିକଟସ୍ଥ ତିର୍ତ୍ତୋଲକୁ 'ଚେଳିତାଲୋ' ବୋଲି ମତ ଦେଉଥିଲେ ମଧ୍ୟ ଏହା ଅପ୍ରାସଙ୍ଗିକ ମନେହୁଏ । ବରଂ ଚିଲିକା କୂଳବର୍ତ୍ତୀ 'ଚିତ୍ରଗଡ଼'କୁ 'ଚେଳିତାଲୋ' ବୋଲି କହିବାର ଯଥାର୍ଥତା ବେଶୀ ପ୍ରାସଙ୍ଗିକ ମନେହୁଏ । ଚିଲିକା ପୂର୍ବେ ବନ୍ଦର ପାଇଁ ଅତ୍ୟନ୍ତ ଉପଯୋଗୀ ଥିଲା । ଏହାର ଗଭୀର ଓ ପ୍ରଶସ୍ତ ମୁହାଣ ଦେଇ ବଡ଼ ବଡ଼ ବୋଇତ ସବୁ ସୁବିଧାରେ ଯାତାୟାତ କରିପାରୁଥିଲେ ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତକରେ 'ପହୁଣ୍ଡ' ନାମକ ଏକ ବନ୍ଦର ଆମ ରାଜ୍ୟରେ ଥିବାର ସୂଚନା ଜୈନ ଧର୍ମଗ୍ରନ୍ଥ 'ଉତ୍ତରାଧାୟନ' ସୂତ୍ରରେ ଦେଖିବାକୁ ମିଳେ । ଐତିହାସିକ ସିଲଭାନ୍ ଲେଭି ଏହାକୁ ଖାରବେଳଙ୍କ ଶିଳାଲିପି ବର୍ଣ୍ଣିତ 'ପିଥୁଣ୍ଡ' ଓ ଟଲେମିଙ୍କ 'ପିଟୁଣ୍ଡ' ସହିତ ତୁଳନା କରିଛନ୍ତି । ଶ୍ରୀଲେଭି ଗଞ୍ଜାମ ଉପକୂଳର 'ପାଲୁରୁ'କୁ 'ଦନ୍ତପୁର' ରୂପେ ଚିହ୍ନିତ କରିଛନ୍ତି । ଖ୍ରୀ:ପୂ: ତୃତୀୟ ଶତକ ବେଳକୁ ଏହା ଏକ ପ୍ରସିଦ୍ଧ ବନ୍ଦର ରୂପେ ସ୍ୱୀକୃତି ଲାଭ କରିଥିଲା । ବୌଦ୍ଧଧର୍ମ ପ୍ରଚାର ପାଇଁ ମହାରାଜା ଅଶୋକ, ତାଙ୍କ ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରାଙ୍କୁ ଏହି ବନ୍ଦର ବାଟ ଦେଇ ସିଂହଳ ପଠାଇଥିଲେ ।

କେବଳ ନୌବାଣିଜ୍ୟ ପାଇଁ ନୁହେଁ ଦେଶମାତୃକାର ସୁରକ୍ଷା ପାଇଁ ମଧ୍ୟ ସେତେବେଳେ ନୌବାହିନୀକୁ ସଂଗଠିତ ଓ ଶକ୍ତିଶାଳୀ

କରାଯାଉଥିଲା । ଓଡ଼ିଶାର ତତ୍କାଳୀନ ବୃହତ୍ତମ ପୋତାଶ୍ରୟମାନଙ୍କ ମଧ୍ୟରେ କରିକରୋଡ଼ମ୍ ପଲୁରା, ନୈନଗୌନା, କନ୍ନଗର, ତ୍ରିଗ୍ଲିପ୍ତନ, ଦୋସରା, ତାମଲିତିସ, ତୋସଲାଇ, ମନଦ, ଡ୍ରୀଲିଙ୍ଗନ, ଅଦାମାସ ପ୍ରଭୃତି ଉଲ୍ଲେଖନୀୟ । ସେତେବେଳେ ଦୁଇ ପ୍ରକାର ପୋତର ପ୍ରଚଳନ ଥିଲା । ଗୋଟିଏ ହେଲା 'ସାମାନ୍ୟ ପୋତ' ଓ ଅନ୍ୟଟି ହେଲା 'ବିଶେଷ ପୋତ' ବା 'ଅର୍ଣ୍ଣବପୋତ' । ସାମାନ୍ୟପୋତକୁ 'ନୌକା' ଏବଂ ବିଶେଷପୋତକୁ 'ବୋଇତ' କୁହାଯାଉଥିଲା । ନୌକାଗୁଡ଼ିକ ଦୈର୍ଘ୍ୟ, ପ୍ରସ୍ଥ ଓ ଉଚ୍ଚତା ଅନୁସାରେ ଦଶପ୍ରକାର ଥିଲାବେଳେ ବୋଇତକୁ 'ଦୀର୍ଘା ଓ ଉନ୍ନତା' ଏହିପରି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଥିଲା । ଦୀର୍ଘା ବୋଇତ ଏଗାର ପ୍ରକାର ଏବଂ ଉନ୍ନତା ବୋଇତ ପାଞ୍ଚ ପ୍ରକାର ଅଟେ ।

ଏହିସବୁ ବୋଇତମାନଙ୍କ ମଧ୍ୟରୁ ଏକ ମାସ୍ତୁଲ ବିଶିଷ୍ଟ ବୋଇତକୁ ନୀଳବର୍ଣ୍ଣ, ଦୁଇ ମାସ୍ତୁଲ ବିଶିଷ୍ଟ ବୋଇତକୁ ପୀତ (ହଳଦିଆ), ତିନି ମାସ୍ତୁଲ ବିଶିଷ୍ଟ ବୋଇତକୁ ରକ୍ତ ବର୍ଣ୍ଣ (ଲାଲ) ଏବଂ ଚାରି ମାସ୍ତୁଲ ବିଶିଷ୍ଟ ବୋଇତକୁ ଶ୍ୱେତ ବର୍ଣ୍ଣ (ଧଳା)ରେ ଚିତ୍ରିତ କରାଯାଉଥିଲା । ବୋଇତଗୁଡ଼ିକର ସମ୍ମୁଖ ଭାଗ କେଶରୀ, ମହିଷ, ନାଗ, ବ୍ୟାଘ୍ର, ପକ୍ଷୀ, ହସ୍ତୀ, ଭେକ ଓ ମନୁଷ୍ୟର ମୁଖ ଆକୃତିପରି କରାଯାଉଥିଲା । ବୋଇତରେ ତିନି ପ୍ରକାର କୋଠରୀ ବା ପ୍ରକୋଷ୍ଠ ରହୁଥିଲା । ଯଥା- ସର୍ବମନ୍ଦିରା, ମଧ୍ୟ ମନ୍ଦିରା ଓ ଅଗ୍ର ମନ୍ଦିରା । ଅଗ୍ର ମନ୍ଦିରାରେ ପ୍ରତିରକ୍ଷା ସାମଗ୍ରୀ ଓ ସୈନ୍ୟ ରହୁଥିଲେ, ମଧ୍ୟ ମନ୍ଦିରାରେ ରାଜାମାନେ ଏବଂ ସର୍ବ ମନ୍ଦିରରେ ରାଜକୋଷ, ସ୍ତ୍ରୀଲୋକ ଏବଂ ଅଶ୍ୱମାନଙ୍କର ପରିବହନ ହେଉଥିଲା । ସମୁଦ୍ରରେ ବୋଇତମାନଙ୍କୁ ମାର୍ଗ ନିର୍ଦ୍ଦେଶ କରିବା ପାଇଁ ପାହାଡ଼ ଗାତ୍ରରେ ଖୋଦିତ ବୃହଦାକାର ପ୍ରଦୀପ ସବୁ ବତୀଘର ପରି କାମ ଦେଉଥିଲା । ପାହାଡ଼ ନଥିବା ସ୍ଥାନରେ ଉଚ୍ଚସ୍ତମ୍ଭ ନିର୍ମାଣ କରି ତା'ଉପରେ ପ୍ରଦୀପ ରଖା ହେଉଥିଲା । ଓଡ଼ିଶା ସମୁଦ୍ର ଉପକୂଳର ଅନେକ ସ୍ଥାନରେ ଭଙ୍ଗାରୁଜା ବତୀଘର ଆଜି ମଧ୍ୟ ଦୃଷ୍ଟି ଗୋଚର ହୋଇଥାଏ ।

ଏକାଦଶ ଶତାବ୍ଦୀରୁ ଓଡ଼ିଶାର ନୌଶକ୍ତିର ପତନ ଆରମ୍ଭ ହେଲା । ମୁସଲମାନ୍ ଓ ମରହଟ୍ଟାମାନଙ୍କ ସମୟରେ ଅତ୍ୟଧିକ ବାଣିଜ୍ୟ ଶୁଳ୍କ ଏହାର ଘୋର ପ୍ରତିବନ୍ଧକ ହୋଇ ତାକୁ ରୁଗ୍ଣ ଅବସ୍ଥାକୁ ନେଇଗଲା । ମୋଗଲମାନଙ୍କ ଅଧୀନରେ ଯେଉଁ ନୌଓ୍ୱାରା ବା ପୋତବାହିନୀ ଗଠନ କରାଯାଇଥିଲା ତାହା ଓଡ଼ିଶାର ନୌବାଣିଜ୍ୟ ତଥା ନୌବାହିନୀ ଇତିହାସର ଶେଷ ଦୀପଶିଖା ଭଳି ଥିଲା । କିନ୍ତୁ ଇଂରେଜମାନଙ୍କ ରାଜତ୍ୱ କାଳରେ ତାହା ସଂପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ଏକଦା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଥିବା କଳିଙ୍ଗ ସାମ୍ରାଜ୍ୟର ଆକାର କ୍ଷୁଦ୍ର ହେବା ସହିତ ଅତୀତର ଗୌରବମୟ ପରମ୍ପରା ଆଜି ବିଲୁପ୍ତ । ସେଦିନର ନୌବାଣିଜ୍ୟର ସ୍ମୃତି ଏବେ କେବଳ ବାର୍ଷିକ ବୋଇତ ବନ୍ଦାଣରେ ସୀମିତ । କର୍ପୂର ଉଡ଼ିଯାଇଛି ହେଲେ କନା ପଡ଼ିରହିଛି । ଓଡ଼ିଆମାନେ କେବଳ ଅତୀତର ସ୍ମୃତିଚାରଣ କରିବାକୁ ଯାଇ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାର ସକାଳୁ ସ୍ନାନ ସାରି କଦଳୀ ବାହୁଙ୍ଗା, ସୋଲ ଅବା କାଗଜରେ ତିଆରି ଡଙ୍ଗା ଭିତରେ ପାନଗୁଆ ରଖି, ଦୀପ ଅବା ବତୀ ଜାଳି - ଆ, କା, ମା, ବୈ / ପାନ ଗୁଆ ଥୋଇ / ପାନ ଗୁଆ ତୋର / ମାସକ ଧରମ ମୋର - କହି ପାଣି ଉପରେ ଡଙ୍ଗାକୁ ଭସାଇ ଦେଉଛନ୍ତି । ଦିନ ଚାଲିଯାଇଛି ହେଲେ ଚିହ୍ନ ରହିଯାଇଛି ସବୁଦିନ ପାଇଁ ।

ଡେମୋନ୍‌ଷ୍ଟ୍ରେଟର
ମହର୍ଷି ମହାବିଦ୍ୟାଳୟ
ଶହୀଦନଗର, ଭୁବନେଶ୍ୱର-୭

## କ୍ରୀଡ଼ା ବିଭାଗ 'ନ୍ୟୁଜ୍ ଲେଟର' ଦ୍ୱିତୀୟ ସଂସ୍କରଣ ଉନ୍ମୋଚିତ

ରାଜ୍ୟ କ୍ରୀଡ଼ା ଓ ଯୁବସେବା ବିଭାଗ ପକ୍ଷରୁ ପ୍ରକାଶ ପାଉଥିବା ତ୍ରୟମାସିକ 'ନ୍ୟୁଜ୍ ଲେଟର' ଦ୍ୱିତୀୟ ସଂସ୍କରଣକୁ ଗତ ଅକ୍ଟୋବର ୩୧ ତାରିଖରେ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଆନୁଷ୍ଠାନିକ ଭାବେ ଉନ୍ମୋଚନ କରିଛନ୍ତି । ଏହି ନ୍ୟୁଜ୍ ଲେଟରରେ ରାଜ୍ୟର କ୍ରୀଡ଼ା ଭିତ୍ତିଭୂମି, ପ୍ରକଳ୍ପ କାର୍ଯ୍ୟ, କ୍ରୀଡ଼ା ଓ କ୍ରୀଡ଼ାବିତ୍‌ମାନଙ୍କ ସଂପର୍କରେ ଅନେକ ମୂଲ୍ୟବାନ ତଥ୍ୟ ପ୍ରଦାନ କରାଯାଇଛି । ଏହା ରାଜ୍ୟର କ୍ରୀଡ଼ାପ୍ରେମୀ ତଥା କ୍ରୀଡ଼ାବିତ୍‌ମାନଙ୍କ ନିମନ୍ତେ ଅତ୍ୟନ୍ତ ଉପାଦେୟ ହୋଇପାରିବ ବୋଲି ମନ୍ତ୍ରୀ ଶ୍ରୀ ନାୟକ ଏହାକୁ ଉନ୍ମୋଚନ କରି ଆଶା ପ୍ରକାଶ କରିଛନ୍ତି ।

# ଉତ୍କଳର ପ୍ରାଚୀନ ନୌଯାତ୍ରା ପରମ୍ପରା

ଡକ୍ଟର ଜନ୍ମେଜୟ ଚୌଧୁରୀ

ଦୂର ଅତୀତରେ ଉତ୍କଳ ନୌବାଣିଜ୍ୟର ପରମ୍ପରା ଭାରତ କାହିଁକି, ପୃଥିବୀ ଇତିହାସରେ ସୃଷ୍ଟି କରିଥିଲା ଏକ ଗୌରବମୟ ଅଧ୍ୟାୟ ଯାହାର ପାଶ୍ଚାତ୍ ଭାଗରେ ରହିଥିଲା ତତ୍କାଳୀନ ଭୌଗଳିକ ଅବସ୍ଥିତି, ସୁଗଭୀର ନଦନଦୀ, ସୁଶୋଭିତ ଦନ୍ତୁରିତ ସାମୁଦ୍ରିକ କୂଳ । ଉତ୍କଳୀୟମାନେ ଥିଲେ ବାଣିଜ୍ୟିକ ଜାହାଜ ନିର୍ମାଣର ଅନନ୍ତ ଜ୍ଞାନର ଅଧିକାରୀ । ତେଣୁ ନୌବାଣିଜ୍ୟ ପାଇଁ ଏ ଜାତିକୁ ଅଶାନ୍ତ ସାଗରର ବକ୍ଷ ତଥା ଦରିଆପାରି ଦେଶ କରୁଥିଲା ଆହ୍ୱାନ । ସମୁଦ୍ର ଥିଲା ସେମାନଙ୍କ ପାଇଁ ପବିତ୍ର ତୀର୍ଥ । ବିସ୍ତୃତ ନୀଳ ସମୁଦ୍ରର ବକ୍ଷ ଭେଦ କରି ସାତ ସମୁଦ୍ର ତେର ନଈ ପାର ହୋଇ ବୋଇତ ନେଇ ବିଦେଶକୁ ଯାଉଥିଲେ । ସେମାନେ ବାଣିଜ୍ୟ କରି ଓ ବୋହି ଆଣୁଥିଲେ ଧନ, ରତ୍ନ, ମଣି, ମୁକ୍ତା ବିଭବ ଓ ଅମାପ ସମ୍ପଦ । ସମ୍ପ୍ରସାରିତ ଓ ପ୍ରଭାବିତ କରିଥିଲେ ଶିଳ୍ପ, କଳା, ସଂସ୍କୃତିର ମହାନ୍ ଭୂଖଣ୍ଡ-କଳିଙ୍ଗର ଉନ୍ନତ ଗୌରବମୟ ସଂସ୍କୃତି ଓ ସଭ୍ୟତାକୁ ଅନନ୍ତ ଅଗାଧ ମହାସମୁଦ୍ରର ପରପାରିରେ । ବାନ୍ଧି ଥିଲେ କଳିଙ୍ଗ ସହିତ ରୋମ ସାମ୍ରାଜ୍ୟ, ଆଫ୍ରିକା ମହାଦେଶ, ଦକ୍ଷିଣ-ପୂର୍ବ ଏସିଆର ଜାଭା, ସୁମାତ୍ରା, ବାଲି, ମାଳୟ, ବୋର୍ଣ୍ଣିଓ, ଚୀନ୍, ଜାପାନ, ସିଂହଳ, ବ୍ରହ୍ମଦେଶ ଇତ୍ୟାଦି ସହିତ ସାମାଜିକ, ରାଜନୈତିକ ବାଣିଜ୍ୟିକ ତଥା ସାଂସ୍କୃତିକ ସେତୁ । ଗଢ଼ି ତୋଳି ଥିଲେ ଅନେକ ଉପନିବେଶ ବିଦେଶୀ ମାଟିରେ । ଏଥିପାଇଁ ଦାୟୀ ସମୁଦ୍ରପ୍ରେମୀ ଓଡ଼ିଆ ଜାତିର ନିର୍ଭୀକତା ଓ ଦୁଃସାହସିକତା କଳିଙ୍ଗ ନାବିକ ଓ ସମୁଦ୍ରଜୀବୀମାନଙ୍କର ନୌ-ଚାଳନା ନିପୁଣତା ।

ମହାଭାରତ, ରାମାୟଣ, କାଳିଦାସଙ୍କର ରଘୁବଂଶ, ବ୍ରହ୍ମାଣ୍ଡ ପୁରାଣ, ବାୟୁ ପୁରାଣ, ମତ୍ସ୍ୟ ପୁରାଣ, ସ୍କନ୍ଦ ପୁରାଣ, ଗରୁଡ଼ ପୁରାଣ, ଅଗ୍ନି ପୁରାଣ ଏବଂ ମାର୍କଣ୍ଡେୟ ପୁରାଣ, ବୌଦ୍ଧ ଜାତକ, ପ୍ରାଚୀନ ବୌଦ୍ଧଶାସ୍ତ୍ର, ତଅପୋଇ ଉପାଖ୍ୟାନ, ଖୁଲଣା ସୁନ୍ଦରୀ ଉପାଖ୍ୟାନ, କଥା ଚରିତ ସାଗର, ଦଶକୁମାର ଚରିତ, ଗ୍ରୀକ୍ ନାବିକ ଟୋଲେମିଙ୍କ ଭ୍ରମଣ ବୃତ୍ତାନ୍ତ, ଫାହିୟାନ ଓ ହୁଏନ୍‌ସାଙ୍କ ବିବରଣୀ ଏବଂ ଗ୍ରୀସୀୟ ଓ ଆରବୀୟ ଲେଖକମାନଙ୍କ ବିବରଣୀ ପ୍ରଭୃତି ବିଭିନ୍ନ ପ୍ରକାର ଗ୍ରନ୍ଥ ଓ ପ୍ରତ୍ନତାତ୍ତ୍ୱିକ ଗବେଷଣାରୁ କଳିଙ୍ଗର ନୌବାଣିଜ୍ୟ ବିଷୟରେ ଜାଣିବାକୁ ମିଳେ । 'ଦାଶବଂଶ' ଏବଂ 'ପୂବାଦଳିୟା' ଇତ୍ୟାଦି ଗ୍ରନ୍ଥମାନଙ୍କରେ କଳିଙ୍ଗ ସହିତ ଚୀନ୍‌ର ନୌବାଣିଜ୍ୟ ସମ୍ପର୍କ ତ୍ରୟୋଦଶରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ରହିଥିବା କଥା ଅନ୍ୟତମ ଚୀନ୍ ପରିବ୍ରାଜକ ଚାଉ-ନୁ-କୁଆଙ୍କ ବିବରଣୀରୁ ଜଣାଯାଏ । ବ୍ରହ୍ମଦେଶ ତଥା ଥାଇଲାଣ୍ଡ, ଜାଭା, ବାଲି, ସୁମାତ୍ରା ଆଦି ଦ୍ୱୀପପୁଞ୍ଜ ସମୂହ ସହିତ ଉତ୍କଳର ପ୍ରାଚୀନ ବାଣିଜ୍ୟ କାରବାର ସମ୍ପର୍କରେ ବହୁତଥ୍ୟ ରହିଛି । ମାତ୍ର ପ୍ରକୃତରେ କେବେ କଳିଙ୍ଗର ଏହି ନୌ-ବାଣିଜ୍ୟ ପରମ୍ପରା ଆରମ୍ଭ ହୋଇଥିଲା, ଏହାର ସଠିକ୍ ଉତ୍ତର ନାହିଁ । କିନ୍ତୁ ଜଣାଯାଏ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କର କଳିଙ୍ଗ ବିଜୟ ବେଳକୁ କଳିଙ୍ଗ ନୌ-ବାଣିଜ୍ୟ ପରମ୍ପରା ପ୍ରତିଷ୍ଠା ଲାଭ କରିସାରିଥିଲା । କେବଳ ସେତିକି ନୁହେଁ ବିଭିନ୍ନ ସ୍ଥାନରେ ଏହାର ଉପନିବେଶମାନ ମଧ୍ୟ ସ୍ଥାପନ ହୋଇ ସାରିଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଗ୍ରୀକ୍ ପର୍ଯ୍ୟଟକ ଟୋଲେମିଙ୍କ ଗ୍ରନ୍ଥରୁ ଜଣାଯାଏ ଯେ, ପାଲୁର ଗଞ୍ଜାମ ନିକଟସ୍ଥ ଏକ ନଗର-କଳିଙ୍ଗର ସର୍ବଶ୍ରେଷ୍ଠ ବନ୍ଦର ଥିଲା । ଏଥିରୁ ମଧ୍ୟ ଜଣାଯାଏ ଯେ ନନିଗେନ-ପୁରୀ, କଟକ୍ଦମ-କଟକ, କୋଣଗର-କୋଣାର୍କ, କୋଗମ୍-ବାଲେଶ୍ୱର, ପଲୁର-ଜଳେଶ୍ୱର, ଦୋଷଗମ୍-ବୈତରଣୀ, ଅଦମଶ-ସୁବର୍ଣ୍ଣରେଖା, ମନଦ-ମହାନଦୀ ଇତ୍ୟାଦି ପ୍ରଭୃତି ବିଭିନ୍ନ ପ୍ରଧାନ ନଦୀ ଓ ନଗର ପ୍ରଥମ ଶତାବ୍ଦୀର ବହୁ ପୂର୍ବରୁ କଳିଙ୍ଗମାନଙ୍କର ବାଣିଜ୍ୟ କେନ୍ଦ୍ର ଥିଲା । ଉପକୂଳରେ ଥିବା ଚିଲିକା, ପୁରୀ, କୋଣାର୍କ, ତାମ୍ରଲିପ୍ତ, ସୁବର୍ଣ୍ଣରେଖା, ନରେଖା, ସାରଗୋ, ବାଲେଶ୍ୱର, ଲୋଇଚନପୁର, ଚୁଡ଼ାମନ, ଧାମରା ପ୍ରଭୃତି ପ୍ରଧାନ ବନ୍ଦର ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ଖ୍ରୀଷ୍ଟପୂର୍ବ ତୃତୀୟ ଓ ଚତୁର୍ଥ ଶତାବ୍ଦୀର କେତେକ ଅନୁଶାସନରୁ ଜଣାପଡ଼େ ଯେ ସମୁଦ୍ର ଯାତ୍ରା ଓ ସମୁଦ୍ର ବାଣିଜ୍ୟ ସେତେବେଳେ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା ବିଧାନର ଅନ୍ତର୍ଗତ ହୋଇଥିଲା ।

କଳିଙ୍ଗବାସୀମାନେ ଦକ୍ଷିଣପୂର୍ବ ଏସିଆର ଯେଉଁ ଦ୍ୱୀପପୁଞ୍ଜ ସହିତ ନୌବାଣିଜ୍ୟ ସମ୍ପର୍କ ସ୍ଥାପନ କରିଥିଲେ, ସେଗୁଡ଼ିକ ଏକତ୍ରିତ ଭାବରେ 'ସୁବର୍ଣ୍ଣଭୂମି' ବା 'ସୁବର୍ଣ୍ଣଦ୍ୱୀପ' ନାମରେ ସମଗ୍ର ବିଶ୍ୱରେ ପରିଚିତ ଥିଲା । ଏହି ଦ୍ୱୀପପୁଞ୍ଜର ମାଳୟ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ବାଲି ପ୍ରଭୃତି ପ୍ରଧାନ ଦ୍ୱୀପ ବାଣିଜ୍ୟ ପାଇଁ ଉତ୍କୃଷ୍ଟତମ ଥିଲା । ପ୍ରାଚୀନ ଚୀନ୍ ବିବରଣୀ ଯେଉଁଥିରେ କଳିଙ୍ଗର ଅଧିବାସୀମାନଙ୍କୁ

'କୁ-ଉନ୍-ଲୁନ୍' ବୋଲି କୁହାଯାଇଛି । ଏଥିରୁ ଜଣାଯାଏ ଯେ ମାଳୟ ଦ୍ୱୀପପୁଞ୍ଜରେ କଳିଙ୍ଗବାସୀ ସର୍ବପ୍ରଥମେ ରାଜ୍ୟ ଓ ସଂସ୍କୃତିର ବିକାଶ ଲାଭ କରିଥିଲେ । ଏହି ସୂତ୍ରରୁ ଆହୁରି ଜଣାଯାଏ ଯେ ସାହସୀ ନାବିକମାନେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ପାଲୁର ବନ୍ଦର ଦେଇ ମାଳୟ ଦ୍ୱୀପରେ ବାଣିଜ୍ୟ କରୁ କରୁ ବସତି ସ୍ଥାପନ କଲେ । ଜାଭା ଦ୍ୱୀପର ଇତିହାସରୁ ଜଣାଯାଏ କଳିଙ୍ଗର ରାଜପୁତ୍ର ୨୦,୦୦୦ ପରିବାରକୁ ସେଠାକୁ ପଠାଇ କାଳକ୍ରମେ ସେଠାରେ ବସତି ସ୍ଥାପନ କଲେ । ଜାଭା ସାଙ୍ଗକୁ ବାଲି ଦ୍ୱୀପରେ ହିନ୍ଦୁକରଣ ପ୍ରକ୍ରିୟା ପ୍ରଥମ ଶତାବ୍ଦୀରୁ ହୋଇଥିଲା ବୋଲି ଜଣାପଡ଼େ । କେତେକ ମତବ୍ୟକ୍ତ କରନ୍ତି ବାଲିରେ ହିନ୍ଦୁଧର୍ମର ପ୍ରଭାବ ଜାଭାଦ୍ୱୀପ ଦେଇ ପହଞ୍ଚିଥିଲା । କିନ୍ତୁ 'ବୃହତ୍‌ସଂହିତା' ଓ 'କଥାଚରିତ ସାଗର'ରୁ ଜଣାଯାଏ ଯେ ବହୁ ପ୍ରାଚୀନ କାଳରୁ ଭାରତ ଓ ବାଲି ମଧ୍ୟରେ ସିଧାସଳଖ ବାଣିଜ୍ୟିକ ସମ୍ପର୍କ ଥିଲା । ବାଲିରେ ସଭ୍ୟତାର ବିକାଶ ପାଇଁ କଳିଙ୍ଗର ଦାନ ଅତୁଳନୀୟ । ବାଲି ଅଧିବାସୀମାନଙ୍କର ବର୍ତ୍ତମାନର ପ୍ରଚଳିତ ବେଶଭୂଷା, ଆଚାର ବ୍ୟବହାର, ହସ୍ତଶିଳ୍ପ, ପୂଜାପଦ୍ଧତି, ପର୍ବପର୍ବାଣି ଓ ଖାଦ୍ୟସାମଗ୍ରୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେଗୁଡ଼ିକ ପ୍ରାଚୀନ କାଳରୁ କଳିଙ୍ଗରୁ ପରିବ୍ୟାପ୍ତ ହୋଇଛି । ଏହାବ୍ୟତୀତ ଇଣ୍ଡୋନେସିଆର ଅନ୍ୟ ଦ୍ୱୀପଗୁଡ଼ିକ ଓ ସିଂହଳ, ଚୀନରେ ମଧ୍ୟ କଳିଙ୍ଗବାସୀ ସ୍ୱୀୟ ଗୌରବମୟ ନୌ-ବାଣିଜ୍ୟ ପରମ୍ପରା ଦ୍ୱାରା ପ୍ରାଚୀନ କଳିଙ୍ଗର ସମୃଦ୍ଧ ସଭ୍ୟତା ଓ ସଂସ୍କୃତିକୁ ବିକିରଣ କରି ଏହାର ପ୍ରଭାବ ଓ ପ୍ରତିଷ୍ଠା ଲାଭ କରିପାରିଥିଲେ ।

ପ୍ରାଚୀନ କଳିଙ୍ଗର ନୌ-ବାଣିଜ୍ୟ ତଥା ଧାର୍ମିକ ଚେତନାର ସ୍ମାରକୀ ବହନ କରି ଓଡ଼ିଶାର ପୁରପଲ୍ଲୀରେ ଅନେକଗୁଡ଼ିଏ ପର୍ବ ପାଳନ କରାଯାଇଥାଏ । ତନ୍ମଧ୍ୟରୁ କାର୍ତ୍ତିକ ପୂର୍ଣ୍ଣିମାରେ ବାଲିଯାତ୍ରା ଓ ବୋଇତ ବନ୍ଦାଣ, ଚୈତ୍ର ପୁନେଇଁରେ ଘୋଡ଼ାନାଚ, ଭାଦ୍ରବ ମାସରେ ଖୁଦୁରୁକୁଣୀ ଓଷା, ଦୀପାବଳୀରେ ବୋଇତ ଝୋଟି ଇତ୍ୟାଦି ଚିରାଚରିତ ପ୍ରଥା ଅନୁସାରେ ପାଳିତ ହେଉଛି । ପ୍ରାଚୀନ ବୋଇତ ଯାତ୍ରାର ସ୍ମୃତିକୁ ପାଳନ କରିବା ନିମନ୍ତେ ଏବେବି ଓଡ଼ିଶାର ଲୋକମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରତ୍ୟୁଷରୁ ନଈ, ନାଳ, ପୋଖରୀ ଓ ସମୁଦ୍ରରେ ସ୍ନାନକରି ଶୋଲ ବା କଦଳୀ ବାସୁଙ୍ଗାରେ ନିର୍ମିତ ରଙ୍ଗ ବେରଙ୍ଗର ଡଙ୍ଗାମାନ ଭସାଇଥା'ନ୍ତି । ପ୍ରତ୍ୟେକ ଗ୍ରାମ ଓ ସହର ନଦୀତୁଠ ଓ ଘାଟ କାର୍ତ୍ତିକ, ପୂର୍ଣ୍ଣିମାଦିନ ପ୍ରତ୍ୟୁଷରୁ ଏକ ଯାତ୍ରା ବା ମେଳା ଭଳି ପ୍ରତୀୟମାନ ହୁଏ । ସୁସଜ୍ଜିତ ବୋଇତରେ ଜଳୁଥିବା ଦୀପବତୀର ଆଲୋକ ଜଳରେ ପ୍ରତିଫଳିତ ହୋଇ ଅତୀତର ଗୌରବକୁ ଚିହ୍ନଟ କରିବା ସାଙ୍ଗକୁ ଏକ ମନୋରମ ଦୃଶ୍ୟ ସୃଷ୍ଟି କରିଥାଏ । ଭୌଗଳିକବିତ୍ ମତ ଦିଅନ୍ତି ଯେ, କାର୍ତ୍ତିକ ମାସ ସମୟରେ ଉତ୍ତର-ପୂର୍ବ ମୌସୁମୀ ବାୟୁ ପ୍ରବାହକୁ ନୌ-ଯାତ୍ରାର ଅନୁକୂଳ ସମୟ ବୋଲି ଗ୍ରହଣ କରାଯାଇ ଦକ୍ଷିଣ-ପଶ୍ଚିମ ମୌସୁମୀ ପ୍ରବାହ ସମୟ ଆଷାଢ଼କୁ ଓଡ଼ିଆ ବଣିକର ପ୍ରତ୍ୟାବର୍ତ୍ତନ ଋତୁ ବୋଲି ବିବେଚନା କରାଯାଏ । ପ୍ରାଚୀନ ଉତ୍କଳର ସାଧବ ପୁଅ ନୌ-ବାଣିଜ୍ୟରେ ଯେ ବିଶେଷ ପାରଦର୍ଶିତା ଲାଭ କରିଥିଲା, ଏହା ଐତିହାସିକମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଥାନ୍ତି । ସାଧବପୁଅମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରତ୍ୟୁଷରୁ ସ୍ନାନସାରି ବୋଇତରେ ଗଙ୍ଗାମାତାଙ୍କୁ ନିଜ ରାଜ୍ୟରେ ଉତ୍ପନ୍ନ ହେଉଥିବା ପାନ ଓ ବାହାର ଦେଶରୁ ପାନ ବିନିମୟରେ ଆଣୁଥିବା ଗୁଆ ସମର୍ପଣ କରି ଚୀନ, ବ୍ରହ୍ମଦେଶ, କାମ୍ବୋଡ଼ିଆ ଓ ସୁବର୍ଣ୍ଣଦ୍ୱୀପ ଆଧୁନିକ ଇଣ୍ଡୋନେସିଆ ଅନ୍ତର୍ଗତ ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ବାଲିଦ୍ୱୀପ ଅଭିମୁଖେ ବାଣିଜ୍ୟ କରିବା ଉଦ୍ଦେଶ୍ୟରେ ଜଳଯାତ୍ରା କରୁଥିଲେ । ଏତଦ୍‌ବ୍ୟତୀତ ମାଳୟ, ସିଂହଳ, ସିଙ୍ଗାପୁର ଏପରିକି ସୁଦୂର ରୋମ୍ ଦେଶକୁ ବୋଇତରେ ଯାଇ କଳିଙ୍ଗ ପୁଅମାନେ ବାଣିଜ୍ୟ ବ୍ୟବସାୟ କରୁଥିଲେ । ବ୍ରହ୍ମଦେଶର ପେଗୁ ଅଞ୍ଚଳରେ କଳିଙ୍ଗବାସୀମାନେ ଉପନିବେଶ ସ୍ଥାପନ କରିଥିବାର କଥା ମେଘାସ୍ଥନିସ୍‌ଙ୍କ ବିବରଣୀରୁ ଜଣାପଡ଼େ । ମାର୍ଗଶିର ମାସରେ ଉତ୍ତର-ପୂର୍ବ ଦିଗରୁ ପ୍ରବାହିତ ହେଉଥିବା ମୌସୁମୀ ବାୟୁ ସାଧବ ପୁଅମାନଙ୍କର ବୋଇତ ଯାତ୍ରା ପାଇଁ ଅନୁକୂଳ ହେଉଥିବାରୁ ପ୍ରାୟ ସେମାନେ କାର୍ତ୍ତିକ ପୂର୍ଣ୍ଣିମା ପରି ଶୁଭ ଓ ପବିତ୍ର ଦିନରେ ଜଳଯାତ୍ରା ଆରମ୍ଭ କରୁଥିଲେ ବୋଲି ଅନୁମାନ କରାଯାଏ । କାରଣ ସେତେବେଳେ ପାଲଟଣା ବୋଇତ ନେଇ ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମ ଦିଗକୁ ସାଧବ ପୁଅମାନେ ନୌ-ବାଣିଜ୍ୟ କରିବାକୁ ଯାଉଥିଲେ । ତେଣୁ କାର୍ତ୍ତିକ ପୂର୍ଣ୍ଣିମା ହିଁ ଜଳଯାତ୍ରା ପାଇଁ ପ୍ରକୃଷ୍ଟ ସମୟ ଭାବେ ଧାର୍ଯ୍ୟ ହୋଇ ଥିବାର ଅନୁମାନ କରାଯାଏ । ଏହିଦିନ ପ୍ରତ୍ୟୁଷରୁ ସାଧବ ବୋହୂମାନେ ସ୍ନାନ ସାରି ବନ୍ଦାପନା ଥାଳି ଧରି ବୋଇତ ବନ୍ଦାଣ କରୁଥିଲେ ଓ ନିଜ ନିଜର ସ୍ୱାମୀମାନେ ସର୍ବକୁଶଳରେ ବାଣିଜ୍ୟ ସାରି ଫେରି ଆସିବା ପାଇଁ ଗଙ୍ଗାମାତାଙ୍କୁ ପ୍ରାର୍ଥନା କରି ସାଧବ ପୁଅଙ୍କର ଶୁଭ ମନାସି ବିଦାୟ ଦେଉଥିଲେ । ବନ୍ଦରମାନଙ୍କରେ ଅନ୍ୟାନ୍ୟ ଜ୍ଞାତିକୁଟୁମ୍ବ ଓ ଆତ୍ମୀୟ ସ୍ୱଜନମାନେ ଉପସ୍ଥିତ ରହି ସାଧବ ପୁଅମାନଙ୍କୁ ବିଦାୟ ଦେଉଥିଲେ । ସମଗ୍ର ବନ୍ଦର, ନଗରୀ ଉତ୍ସବ ମୁଖରିତ ହୋଇ ଉଠୁଥିଲା । କଳିଙ୍ଗରେ ଉତ୍ପାଦନ ହେଉଥିବା ମସଲା, ପାନ, ପାଟଲୁଗା, ହୀରା, ମୂଲ୍ୟବାନ ପଥର, ହସ୍ତୀଦନ୍ତ ଓ ଏଥିରେ ନିର୍ମିତ ସୂକ୍ଷ୍ମ କାରୁକାର୍ଯ୍ୟ, ସୂକ୍ଷ୍ମ ଓ ସୁନ୍ଦର ବସ୍ତ୍ର ଇତ୍ୟାଦି ବିଦେଶକୁ ବୋଇତରେ ବୋଝେଇ କରି ରପ୍ତାନୀ କରିବା ନିମନ୍ତେ ସାଧବପୁଅମାନେ ନେଉଥିଲେ । ସିଂହଳକୁ ହାତୀ ମଧ୍ୟ ରପ୍ତାନୀ ହେଉଥିଲା । ବିଦେଶରେ ବାଣିଜ୍ୟ ସାରି ସାଧବପୁଅ ଫେରି ଆସୁଥିଲା ବୋଇତରେ ଅଜସ୍ର ଧନ ସମ୍ଭାର-ମୁକ୍ତା, ସୁନା, ରୂପା, ରେଶମବସ୍ତ୍ର, ଗୁଆ ଓ ମୂଲ୍ୟବାନ ରତ୍ନ ଧରି କଳିଙ୍ଗକୁ ।

ମାତ୍ର ଏକାଦଶ ଶତାବ୍ଦୀରେ ଦକ୍ଷିଣ ଭାରତରେ ଚୋଳ ବଂଶ ରାଜୁତି କରୁଥିବା ସମୟରେ କଳିଙ୍ଗର ନୌ-ଶକ୍ତିର ପତନ ଆରମ୍ଭ ହେଲା । ହିନ୍ଦୁ ମହାସାଗରରେ ଆରବ ନାବିକମାନଙ୍କର ପ୍ରତିପତ୍ତି

ବଢ଼ିବାକୁ ଲାଗିଲା । ଆରବ ଜାତି ନୌବାଣିଜ୍ୟକୁ ଅକ୍ତିଆର କରିନେଲେ । ଓଡ଼ିଶାରେ ସେତେବେଳେ ଗଙ୍ଗ ଓ ସୂର୍ଯ୍ୟବଂଶୀ ରାଜାମାନେ ପରସ୍ପର ମଧ୍ୟରେ ଯୁଦ୍ଧରତ ଥିଲେ । କଳିଙ୍ଗର ଗୌରବମୟ ନୌ-ବାଣିଜ୍ୟ ପରମ୍ପରା ରକ୍ଷା ଦିଗରେ କେହି ଧ୍ୟାନ ଦେଲେ ନାହିଁ । ପର୍ତ୍ତୁଗୀଜ୍ ଜଳଦସ୍ୟୁମାନେ ସମୁଦ୍ର ମଧ୍ୟରେ ଜାହାଜରୁ ଲୁଟତରାଜ କରିବାକୁ ଲାଗିଲେ । ଓଡ଼ିଆ ସାଧବମାନେ ସର୍ବସ୍ୱାନ୍ତ ହୋଇ ପଡ଼ିଲେ । ସମୁଦ୍ର ଯାତ୍ରା କ୍ରମେ ବିପଦଜନକ ହୋଇ ପଡ଼ିଲା । ପର୍ତ୍ତୁଗୀଜମାନଙ୍କ ପରେ ବିଦେଶୀ ବେପାରୀମାନେ ଓଡ଼ିଶା ଉପକୂଳରେ ବାଣିଜ୍ୟ କୋଠିମାନ ସ୍ଥାପନ କଲେ । ନୌ-ବାଣିଜ୍ୟରେ ବିଦେଶୀମାନଙ୍କର ପ୍ରଭାବ ବଢ଼ିବାକୁ ଲାଗିଲା । ବାଲେଶ୍ୱର ବନ୍ଦରରେ ପର୍ତ୍ତୁଗାଲ, ଡଚ୍, ପାର୍ସୀ ଓ ଇଂରେଜମାନେ ବାଣିଜ୍ୟ କୋଠି ନିର୍ମାଣ କଲେ । ଓଡ଼ିଶାର ବଣିକମାନେ ସେମାନଙ୍କ ମୁକାବିଲା କରିପାରିଲେ ନାହିଁ । ତା'ଛଡ଼ା ନଦୀର ମୁହାଣ ଓ ବନ୍ଦରଗୁଡ଼ିକ ବାଲିରେ କ୍ରମେ କ୍ରମେ ପୋତିହୋଇ ପଡ଼ିଲା । ବେପାର ବଣିଜ ବନ୍ଦ ହୋଇଗଲା । ସମ୍ପ୍ରତି ଓଡ଼ିଶାର ଗୌରବମୟ ନୌ-ବାଣିଜ୍ୟ ଅତୀତ ଗର୍ଭରେ ଲୁଚିଯାଇଛି । କିନ୍ତୁ ତା'ର ସ୍ମୃତି ଓଡ଼ିଆ ଜାତି ପ୍ରାଣରେ ଏବେବି ଉଜ୍ଜୀବିତ ହୋଇରହିଛି । ବାଲିଯାତ୍ରା, ଦୀପାବଳୀ ଅମାବାସ୍ୟାର ବୋଇତ ବନ୍ଦାଣ ଓ ଖୁଦୁରୁକୁଣୀ ଓଷା ପାଳନ ପଛରେ ଓଡ଼ିଆ ପୁଅର ପ୍ରାଚୀନ ନୌ-ଯାତ୍ରାର ଗୌରବମୟ ପରମ୍ପରା ଲୁଚି ରହିଛି । କର୍ପୂର ଉଡ଼ି କେବଳ କନା ଖଣ୍ଡକ ପଡ଼ି ରହିଛି । ପ୍ରାଚୀନ ଉତ୍କଳର ଅତୀତର ଗୌରବାବହ ବୀରତ୍ୱ କାହାଣୀ ଅସାମାନ୍ୟ ଭାସ୍କର୍ଯ୍ୟ, ଅପରୂପ ଚିତ୍ର, ଶିଳ୍ପ, ମନକିଣା ସଂଗୀତର ମୂର୍ଚ୍ଛନା ଇତିହାସର ବିସ୍ମୃତିର ଅତଳ ଗର୍ଭରେ ଲୀନ ହୋଇ ଆଜି କିମ୍ବଦନ୍ତୀର ବିଷୟବସ୍ତୁ ହୋଇ ପଡ଼ିଛି । ଏ ଜାତିର ବିଜୟ ଜୈତ୍ର ଦିନେ ଆକାଶମାର୍ଗର ଗର୍ଭରେ ଉଡ୍ଡୀୟମାନ ହେଉଥିଲା । ଆଜି ଓଡ଼ିଆ ଜାତି ଦୀନ, ହୀନ, ନିର୍ବୀର୍ଯ୍ୟ, ଭୀରୁ ଏବଂ ଦମ୍ଭ ସାହସ ବିବର୍ଜିତ । ଦିନେ ଯେଉଁ ଓଡ଼ିଆ ଜାତି ଅନ୍ୟ ଦ୍ୱାରା ପ୍ରପୀଡ଼ିତ ଜାତିକୁ ଆପଣା କ୍ରୋଡ଼ରେ ନିଃଶଙ୍କ ଚିତ୍ତରେ ଆଶ୍ରୟ ପ୍ରଦାନ କରିଥିଲା, ଆଜି ସେହି ଜାତି ଓଡ଼ିଆ ନାମ ଶୁଣିଲେ ଘୃଣା ପ୍ରକାଶ କରେ । ମୃତ ପ୍ରାୟ ଏ ଓଡ଼ିଆ ଜାତିର ପୁନଃଜୀବନ ସଞ୍ଚାରଣ ପାଇଁ ଇତିହାସର ମୃତ୍ୟୁ ସଞ୍ଜିବନୀ ମନ୍ତ୍ର ଗାନ କରିବାକୁ ପଡ଼ିବ ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

# ଭଦ୍ରକରେ ଶିକ୍ଷିତ ଯୁବକ ଜଣେ ଆଦର୍ଶ ଚାଷୀ ହୋଇଛନ୍ତି

## (ସଫଳ କାହାଣୀ)

ଭଦ୍ରକ ଜିଲ୍ଲାର ସୋମନାଥ ପତି ଜଣେ ୩୦ ବର୍ଷର ଶିକ୍ଷିତ ଯୁବକ । ତାଙ୍କ ପିତା- ଶ୍ରୀ ମହେନ୍ଦ୍ର ପ୍ରସାଦ ପତି, ଗ୍ରା- ଓଲଂଗ, ପୋ- ରାନ୍ଦିଆ, ଥାନା- ଭଦ୍ରକ, ଜିଲ୍ଲା- ଭଦ୍ରକ । ତାଙ୍କ ବାପା ଜଣେ ପୂର୍ବତନ ସରପଞ୍ଚ ଓ ହୋମିଓପ୍ୟାଥି ଡାକ୍ତର । ସୋମନାଥ ପତି ଯୁକ୍ତ ଦୁଇ ପାସ୍ କରିବା ପରେ ଚାକିରି ପଛରେ ନଗୋଡ଼େଇ ପିତାଙ୍କ ପରାମର୍ଶ ଅନୁସାରେ ଜଣେ ସଫଳ ଚାଷୀ ହୋଇଛନ୍ତି । ତାଙ୍କର ସାଳନ୍ଦୀ ନଦୀ କୂଳରେ ଏକ ବିରାଟ ଚକ ଜମି ଥିବାରୁ ସେ ସେଥିରେ ସବୁପ୍ରକାର ଗଛ ଲଗାଇଛନ୍ତି । ଚାରି ଏକରରେ ପୋଖରୀ ଅଛି । ସେଥିରେ ମାଛ ଚାଷ କରି ବର୍ଷକୁ ଅଶୀ ହଜାର ଟଙ୍କା ଲାଭ କରନ୍ତି । ନଅ ଏକର ଜମିରେ ଆମ୍ବ, କଦଳୀ, ଲେମ୍ବୁ ଏବଂ ପରିବା ଯଥା- କୋବି, ବୋଇତାଳୁ, ବିଲାତି, ଭେଣ୍ଡି ଚାଷ କରି ଷାଠିଏ ହଜାର ଟଙ୍କା ରୋଜଗାର କରନ୍ତି । ଧାନରୁ ୩୬ ହଜାର ଟଙ୍କା ପାଆନ୍ତି । ମୋଟ ବର୍ଷକୁ ଏକ ଲକ୍ଷ ଛଅସ୍ତରୀ ହଜାର ଟଙ୍କା ରୋଜଗାର କରନ୍ତି । ତାଙ୍କର ପାଞ୍ଚ ଭାଇ ଅଛନ୍ତି । ସମସ୍ତେ ଚାଷ କାର୍ଯ୍ୟରେ ଲାଗନ୍ତି । ସେ ନିକଟସ୍ଥ ବ୍ୟାଙ୍କ ଅଫ୍ ଇଣ୍ଡିଆରୁ ତିରିଶ ହଜାର ଟଙ୍କା ମାତ୍ର ଋଣ ନେଇ ପରିଶୋଧ କରିଦେଇଛନ୍ତି । ବର୍ତ୍ତମାନ ଚାଷ କରି ସ୍ୱାଧୀନ ଭାବରେ ଜୀବିକା ନିର୍ବାହ କରି ଶାନ୍ତିରେ ରହୁଛନ୍ତି । ଭଦ୍ରକ ଜିଲ୍ଲାର ସେ ଜଣେ ଅଗ୍ରଣୀ ଚାଷୀ ହୋଇଥିବାରୁ ଆଧୁନିକ ପ୍ରଣାଳୀରେ ଚାଷ କରି ଆତ୍ମ ତୃପ୍ତି ମଧ୍ୟ ପାଆନ୍ତି । ପାଖରେ ଫାକର ଭଳି ଏକ କାରଖାନା ଥିଲେ ମଧ୍ୟ ସେ ଚାକିରି ପଛରେ ନଗୋଡାଇ ବାପାଙ୍କ ନୀତି ଓ ଆଦର୍ଶରେ ଜଣେ ସଚେତନ ନାଗରିକ ଭାବରେ ଜୀବନଯାପନ କରୁଛନ୍ତି । ସେହିଭଳି ଯଦି ଗ୍ରାମାଞ୍ଚଳର ଶିକ୍ଷିତ ବେକାର ଯୁବକ ଆଦର୍ଶ କୃଷକ ହୁଅନ୍ତେ ତା'ହେଲେ ଗ୍ରାମାଞ୍ଚଳରେ ଆର୍ଥିକ ପରିସ୍ଥିତିରେ ପରିବର୍ତ୍ତନ ହେବା ସହ ବେକାର ସମସ୍ୟାର ସମାଧାନ ହୋଇପାରନ୍ତା ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ଭଦ୍ରକ



# ଆଲୋକର ଉତ୍ସବ ଦୀପାବଳି

ଶ୍ରୀନିବାସ ଆଚାର୍ଯ୍ୟ

ଏହି ବିଚିତ୍ରମୟୀ ସଂସାରରେ ଯୁଗ ପରେ ଯୁଗ ଗତି କରୁଅଛି । ପ୍ରତ୍ୟେକ ଯୁଗରେ ନିଘଞ୍ଚ ଅନ୍ଧାର ରୂପକ ପାପକୁ ବିନାଶ କରି ଆଲୋକ ରୂପକ ପୁଣ୍ୟ ତଥା ଧର୍ମର ଧ୍ୱଜା ଉତ୍ତୋଳନ କରିବା ପାଇଁ ବିଭିନ୍ନ ରୂପରେ ଦେବାଦେବୀମାନେ ମର୍ତ୍ତ୍ୟମଣ୍ଡଳରେ ଆବିର୍ଭାବ ହୋଇଥାଆନ୍ତି । ସେହି ଦେବାଦେବୀଙ୍କ ଦ୍ୱାରା ଘଟି ଯାଇଥିବା ଘଟଣା ଓ ସମୟଚକ୍ରକୁ ନେଇ ସୃଷ୍ଟି ହୋଇଅଛି ଶତ ଶତ ଧାର୍ମିକ ଉତ୍ସବଗୁଡ଼ିକ । ଆଜି ସେହି ଉତ୍ସବଗୁଡ଼ିକ ଆମ ଦେଶ ଭାରତ କାହିଁକି ସମଗ୍ର ବିଶ୍ୱ ଦରବାରରେ ସର୍ବଜନାନୁମୋଦିତ ହୋଇ ବିଭିନ୍ନ ପ୍ରକାରରେ ପାଳିତ ହେଉଅଛି । ତନ୍ମଧ୍ୟରୁ ଦୀପାବଳି ଉତ୍ସବଟିର ମହତ୍ତ୍ୱ ସର୍ବୋଚ୍ଚ ଓ ପ୍ରଧାନ ଅଟେ ।

ଦୀପାବଳି ପର୍ବଟି ଶାରଦୀୟ ବା ଦଶହରା ପର୍ବର ୨୦ ଦିନ ପରେ କାର୍ତ୍ତିକ ମାସ ଅମାବାସ୍ୟା ତିଥିରେ ଶାସ୍ତ୍ରାନୁମୋଦିତ ବିଧିବିଧାନ ତଥା ସାମାଜିକ ପରମ୍ପରା ସହିତ ମହା ସମାରୋହ ଓ ଜାକଜମକରେ ପାଳନ ହୋଇଥାଏ । କାର୍ତ୍ତିକ ମାସଟି ବାରମାସ ମଧ୍ୟରେ ଶ୍ରେଷ୍ଠ । ପବିତ୍ର ଓ ଧାର୍ମିକ ମାସ ହୋଇଥିବାରୁ ଦୀପାବଳି ଉତ୍ସବଟିର ମହତ୍ତ୍ୱ ମଧ୍ୟ ବିଶ୍ୱ ବନ୍ଦନୀୟ । ଏହି ମାସର ପ୍ରାୟ ପ୍ରତ୍ୟେକ ଦିବସ ସମାଜର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଦେବାଦେବୀଙ୍କ ଦ୍ୱାରା ଶୁଭାଶୀର୍ବାଦ ଦିବସ ଅଟେ । କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ହିନ୍ଦୁଜାତିର ସମସ୍ତ ଭକ୍ତ ଏହି ପର୍ବକୁ ଶାନ୍ତ ପରିବେଶ ମଧ୍ୟରେ ମହାଆଡ଼ମ୍ବରପୂର୍ଣ୍ଣ ଭାବରେ ପାଳନ କରିଥାଆନ୍ତି । ଏହି ପର୍ବକୁ କେହି କେହି ଦିୱାଲୀ କହନ୍ତି ତ ଅନ୍ୟ କେହି କେହି ଦିଆଲୀ କହିଥାଆନ୍ତି । ଏହି ପର୍ବଟି ସମଗ୍ର ଜନସମାଜ ତଥା ଭକ୍ତମାନଙ୍କ ମଧ୍ୟରେ ସୃଷ୍ଟି କରିପାରିଛି ସାମାଜିକ ପରମ୍ପରା, ସଂସ୍କୃତି, କଳା, ଐକ୍ୟ, ମିତ୍ରତା ଓ ଆଧ୍ୟାତ୍ମିକର ଐତିହ୍ୟ ।

ଦୀପାବଳି ଉତ୍ସବକୁ ମଧ୍ୟ ଆଲୋକ ଓ ଉଲ୍ଲାସର ଉତ୍ସବ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଲୋକ ହିଁ ସତ୍ୟ - ଏହା ଧର୍ମ ଓ ନ୍ୟାୟର ପ୍ରତୀକ । ଅନ୍ଧାର ରୂପକ ପାପକୁ ବିନାଶ କରି ଆଲୋକ ରୂପକ ଧର୍ମକୁ ରୋପଣ କରିବା ଅର୍ଥାତ୍ ଦୁଷ୍ଟ ଅସୁରମାନଙ୍କୁ ନିଧନ କରି ଦେବାଦେବୀମାନଙ୍କୁ ସ୍ୱାଗତ କରିବା ହିଁ ଏହି ପର୍ବର ମୂଳ ଉଦ୍ଦେଶ୍ୟ । ଦୀପାବଳି ଅମାବାସ୍ୟାର ନିଘଞ୍ଚ ଅନ୍ଧାରକୁ ଦୂରକରି ପ୍ରଜ୍ୱଳିତ ଦୀପ ଓ କାଉଁରିଆ କାଠି ମାଧ୍ୟମରେ ଆଲୋକ ରୂପକ ଧର୍ମକୁ ସ୍ୱାଗତ କରିବା ହିଁ ଏହି ପର୍ବଟି ଉଦ୍ଦିଷ୍ଟ । ଏଥିପାଇଁ ଅସଂଖ୍ୟ ଭକ୍ତମାନଙ୍କ ମନରେ ଖେଳି ଯାଇଥାଏ ଅସୀମ ଉତ୍ସାହ ଓ ଉଦ୍ଦିପନାର ତରଙ୍ଗମାଳା । ହିନ୍ଦୁ କୁଳର ସମସ୍ତ ନରନାରୀ ସେମାନଙ୍କ ଦ୍ୱାରା ଦେଶରେ ଶତ ଶତ ଜ୍ୱଳନ୍ତ ଦୀପ, ମହମବତୀ ଇତ୍ୟାଦି ଥୋଇ କାଳରାତ୍ରିର ଅନ୍ଧାରକୁ ଦୂର କରି ଆଲୋକ ରୂପକ ଧର୍ମ ସଂସ୍ଥାପନା ପାଇଁ ଦେବାଦେବୀମାନଙ୍କୁ ସ୍ୱାଗତ କରିଥାଆନ୍ତି । ଏହାଦ୍ୱାରା ପ୍ରତ୍ୟେକଙ୍କ ହୃଦୟରେ ସୃଷ୍ଟି ହୋଇଥାଏ ଅସୀମ ଆଧ୍ୟାତ୍ମିକ ଚେତନାର ପରିବେଶ । ବିଭିନ୍ନ ପ୍ରକାରର ରଙ୍ଗ ବେରଙ୍ଗର ବାଣ ଫୁଟାଇ ଆନନ୍ଦରେ ଉପଲବ୍ଧି କରିଥାନ୍ତି ଏହାର ସ୍ୱାଦ । ଇନ୍ଦ୍ରଧନୁର ସପ୍ତରଙ୍ଗ ଆଲୋକରଶ୍ମି ପରି ସୃଷ୍ଟି ହୋଇଥାଏ ଆଲୋକର ଉତ୍ସ ଓ ସୃଷ୍ଟି ହୋଇଥାଏ ବାଣଗୁଡ଼ିକର ମେଘନାଦ ଶବ୍ଦ । ଏହି ପରିବେଶ ମଧ୍ୟରେ ପରମ ଭକ୍ତଗଣ ହଜାଇ ଦେଇଥାଆନ୍ତି ସେମାନଙ୍କର ଆତ୍ମାକୁ ଦେବାଦେବୀଙ୍କ ଚରଣାବିନ୍ଦରେ । ଚୁମ୍ବକୀୟ ଶକ୍ତିପରି ଆଧ୍ୟାତ୍ମିକ ଶକ୍ତି ଆକର୍ଷିତ କରି ନେଇଥାଏ ଅସୀମ ଭକ୍ତଗଣଙ୍କର ମନ ଓ ପ୍ରାଣ ।

ଦୀପାବଳି ପର୍ବଟିର ମୂଳରେ ନିହିତ ଅଛି ଅନେକ ପୌରାଣିକ ତଥ୍ୟାବଳି । ରାମାୟଣରେ ବର୍ଣ୍ଣିତ ମାନବରୂପୀ ଭଗବାନ ଶ୍ରୀରାମଚନ୍ଦ୍ର ବିଜୟାଦଶମୀ ତଥା ଦଶହରା ଦିନ ରାବଣ ବଧ ଓ ସୀତା ଉଦ୍ଧାର କରିବାପାଇଁ ଶୁଭାଗମନ କରିଥିଲେ ଓ କାର୍ତ୍ତିକ ମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ପବିତ୍ର ଦିବସରେ ଦୀର୍ଘ ବାର ବର୍ଷ ବନବାସ ଜୀବନ ଅତିବାହିତ କରି ସୀତାଙ୍କ ସହ ଜନ୍ମସ୍ଥାନ ଅଯୋଧ୍ୟା ନଗରୀକୁ ଶୁଭାଗମନ କରିଥିଲେ । ସେହି ମହାନ୍ ପବିତ୍ର ଦିବସରେ ତାଙ୍କର ହୋଇଥିଲା ଅଭିଷେକୋତ୍ସବ । ଏହି ସ୍ମୃତି ଜଡ଼ିତ ଦିନରେ ସମସ୍ତ ରାମଭକ୍ତ ତଥା ଅଯୋଧ୍ୟା ନଗରୀର ପ୍ରଜାମାନେ ଆଲୋକ ପ୍ରଜ୍ୱଳନ ଓ ଆତସବାଜି ସହିତ ଆନନ୍ଦ ଉଲ୍ଲାସରେ ବିଭୋର ହୋଇ ରାମଚନ୍ଦ୍ରଙ୍କୁ ଗାଦିସୀନ କରାଇଥିଲେ ।

ଏହି ପର୍ବକୁ ଶାରଦୀୟ ପର୍ବର ଏକ ଅଂଶବିଶେଷ ତଥା ଶେଷ ପର୍ଯ୍ୟାୟ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଏହି ପର୍ବରେ

ସର୍ବଶକ୍ତିଦାୟିନୀ, ଦୁର୍ଗତିନାଶିନୀ ମା' ଦୁର୍ଗା ଉଗ୍ରକାଳିକା ରୂପ ଧାରଣ କରି ମାୟାବୀ ଅସୁର ମହିଷାସୁରକୁ ମାରିବାରେ ସମର୍ଥ ହୋଇଥିଲେ । ଚଣ୍ଡୀ ପୁରାଣରେ କଥିତ ଅଛି, ଯେତେବେଳେ ମା' ଦୁର୍ଗା ନିର୍ମମ, ନିଷ୍ଠୁର, ଅତ୍ୟାଚାରୀ ମହିଷାସୁରର ସେନାପତି ରକ୍ତବୀର୍ଯ୍ୟ ସହିତ ଯୁଦ୍ଧ କରି ନିରାଶ ହୋଇଯାଇଥିଲେ, ସେତେବେଳେ ଅତ୍ୟନ୍ତ କ୍ରୋଧାନ୍ୱିତ ଓ ରକ୍ତବର୍ଷ୍ଣରେ ଜର୍ଜରିତ ହୋଇଯିବାରୁ ତାଙ୍କ ଶରୀରରୁ ଚାମୁଣ୍ଡା ନାମକ ଏକ ଦେବୀ ଆବିର୍ଭୂତ ହୋଇଥିଲେ । ଦେବୀଙ୍କର ଏହି ରୂପକୁ ଶାନ୍ତ କରିବା ପାଇଁ ଯେଉଁ ପୂଜା କରାଯାଇଥାଏ, ତାହା ହେଉଛି କାଳୀପୂଜା ।

ଭାଗବତରେ ଲିଖିତ ଭୀତତ୍ରସ୍ତ ଦେବଗଣଙ୍କ ନିମିତ୍ତ ମାନବରୂପୀ ଭଗବାନ ଶ୍ରୀକୃଷ୍ଣ ମହାପ୍ରତାପୀ ନାରକାସୁରକୁ ଏହି ଦିନ ବଧ କରି ପୃଥିବୀକୁ ଉଶ୍ୱାସ କରିଥିଲେ । ନାରକ ଦ୍ୱାରା ବନ୍ଦୀ ହୋଇଥିବା ସହସ୍ର ସୁନ୍ଦରୀ କନ୍ୟାଙ୍କୁ ମୁକ୍ତି କରି ଶ୍ରୀକୃଷ୍ଣ ଦ୍ୱାରକାପୁରକୁ ପଠାଇଥିଲେ । ଅତ୍ୟାଚାରର ବିନାଶ ଅର୍ଥାତ୍ ନାରକାସୁରର ବଧ ସଂଗେସଂଗେ ପୃଥିବୀରାଣୀ ଶାନ୍ତି ଲାଭ କରିଥିବାରୁ, ସମସ୍ତ ଦ୍ୱାରକାବାସୀ ଆନନ୍ଦ ଓ ଉଲ୍ଲାସ ମନରେ ଏହି ଦିବସରେ କାଉଁରିଆ କାଠିରେ ଅଗ୍ନି ସଂଯୋଗ କରି ମହା ଆଡ଼ମ୍ବରପୂର୍ଣ୍ଣ ଭାବରେ ପାଳନ କରିଥାଆନ୍ତି । ତେଣୁ ଏହି ଉତ୍ସବକୁ 'ନାରକୋତ୍ସବ' ନାମରେ ନାମିତ କରାଯାଇଅଛି । ପୁନଶ୍ଚ ଏହି ପବିତ୍ର ଦିବସରେ ଶ୍ରୀକୃଷ୍ଣ ଇନ୍ଦ୍ର ଦେବତାଙ୍କ ଗର୍ବକୁ ଖଣ୍ଡନ କରିଥିବାର କିମ୍ବଦନ୍ତୀ ଭାଗବତରେ ବର୍ଣ୍ଣିତ ହୋଇଅଛି । ଇନ୍ଦ୍ରଙ୍କ କୋପରେ ଗୋପପୁରରେ ଦିବାନିଶି ଅହରହ ପ୍ରଳୟଙ୍କରୀ ବତାସ ଓ ଜଳବୃଷ୍ଟି ଲାଗି ରହିଲା । ଏହା ଫଳରେ ଗୋପପୁରର ଆବାଳ-ବୃଦ୍ଧ-ବନିତା ଓ ପଶୁପକ୍ଷୀଙ୍କ ଜୀବନ ଧାରଣ କରିବା ସମ୍ପୂର୍ଣ୍ଣ ଅସମ୍ଭବ ହୋଇଗଲା । ପ୍ରଳୟଙ୍କରୀ ବର୍ଷା ଓ ପବନ ଦାଉରୁ ଗୋପବାସୀଙ୍କୁ ବଞ୍ଚାଇବା ପାଇଁ ଶ୍ରୀକୃଷ୍ଣ ଗିରି ଗୋବର୍ଦ୍ଧନକୁ ନିଜ ଆଙ୍ଗୁଳିରେ ଦୀର୍ଘ ସାତ ଦିନ ଓ ରାତି ଟେକି ଧରି ରଖିଥିଲେ ।

ଲକ୍ଷ୍ମୀ ପୁରାଣରେ ବର୍ଣ୍ଣିତ ସୌଭାଗ୍ୟର ଦେବୀ ମା' ଲକ୍ଷ୍ମୀ ଅସୁର ରାଜା ବଳିଙ୍କ ଦ୍ୱାରା ବନ୍ଦୀ ହୋଇ ପାତାଳପୁରରେ ନିର୍ଯ୍ୟାତିତ ଓ ଅବହେଳିତ ଅବସ୍ଥାରେ ଥିଲେ । ଏହି ଦିନ ସ୍ୱୟଂ ଭଗବାନ ବାମନ ଅବତାର ହୋଇ ମା' ଲକ୍ଷ୍ମୀଙ୍କୁ ଅସୁରଠାରୁ ମୁକ୍ତ କରି ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବାରେ ସମର୍ଥ ହୋଇଥିଲେ । ଏହି ମହାନ୍ ଦିବସରେ ମା' ଲକ୍ଷ୍ମୀଙ୍କ ପୂଜା ଅର୍ଚ୍ଚନାର ବିଧିବିଧାନ ମଧ୍ୟ ଅଛି । ଆଉ ମଧ୍ୟ ସେହି ଦିବସରେ ବାମନ ରୂପୀ ଭଗବାନ ମହାଦାନୀ ବଳିଙ୍କୁ ତିନିପାଦ ବର ମାଗି ପାତାଳପୁରୀକୁ ତାଙ୍କ ପାଦରେ ଠେଲି ବନ୍ଦୀ କରି ରଖିଥିଲେ । ବଳିଙ୍କର ଦାନରୁ ବଞ୍ଚିତ ହୋଇ ପୃଥିବୀବାସୀ ତଥା ବଳିଙ୍କର ପ୍ରଜାକୁଳ ମର୍ମାହତ ହୋଇଥିଲେ । ବଳିଙ୍କ ଦାନ ଓ ପ୍ରଜାମାନଙ୍କ ଅନୁରୋଧରେ ପ୍ରୀତ ହୋଇ ବିଷ୍ଣୁ ତାଙ୍କୁ ବର୍ଷକରେ ଥରେ ତଥା କାର୍ତ୍ତିକ ଅମାବାସ୍ୟା ମଧ୍ୟ ରାତ୍ରିରେ ପୃଥିବୀ ପୃଷ୍ଠକୁ ଭ୍ରମଣରେ ଆସିବାକୁ ଅନୁମତି ପ୍ରଦାନ କରିଥିଲେ । ସେହି ଦିନ ଅର୍ଦ୍ଧରାତ୍ରୀରେ ପୃଥିବୀବାସୀ ଆନନ୍ଦ ଓ ଉଲ୍ଲାସ ମନରେ ଦୀପାଲୋକରେ ବଳି ରାଜାଙ୍କୁ ସ୍ୱାଗତ ଓ ସମ୍ବର୍ଦ୍ଧନା କରିବାର ବିଧିବିଧାନମାନ ଅଛି । ତେଣୁ ଦୀପାବଳି ଉତ୍ସବ 'ବଳି ରାଜ୍ୟ' ଉତ୍ସବ ରୂପେ ସୁବିଦିତ ।

ଏହି ଉତ୍ସବଟିର ପ୍ରଧାନ ବୈଶିଷ୍ଟ୍ୟ ହେଲା ପାଁଯା ଡକା ପର୍ବ । ପରଲୋକଗମନକାରୀ ପିତୃପୁରୁଷଙ୍କୁ ସବୁଦିନ ମନେ ରଖିବା ପାଇଁ ଓ ଶୁଭ କାମନା କରି ଏହି ଦିବସ ରାତ୍ରିରେ ସେମାନଙ୍କର ସନ୍ତାନସନ୍ତତିମାନେ ଧୂପ, ଦୀପ, ଚନ୍ଦନ ଓ ନୈବେଦ୍ୟ ଅର୍ଘ୍ୟ ଅର୍ପଣ କରିଥାନ୍ତି । ସମଗ୍ର ଭାରତରେ ସମସ୍ତ ପରିବାରରେ ଆତ୍ମୀୟସ୍ୱଜନ ଏହି ପର୍ବ ପାଳନର ବିଧିବିଧାନ ପରିଲକ୍ଷିତ ହୁଏ । ସ୍ୱଔରଷରୁ ଜାତ ତଥା ରକ୍ତାଗତ ପରିବାରର ସମସ୍ତ ସଦସ୍ୟ ଏକତ୍ରିତ ହୋଇ ପବିତ୍ର ମନରେ ଏକ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ଜ୍ୱଳନ୍ତ କାଉଁରିଆ କାଠିକୁ ବିଡ଼ା ବିଡ଼ା ଧରି ପିତୃକୁଳ ଓ ମାତୃକୁଳର ସ୍ୱର୍ଗାରୋହଣ କରିଥିବା ପୂର୍ବପୁରୁଷମାନଙ୍କୁ ଉଚ୍ଚସ୍ୱରରେ ନିମ୍ନଲିଖିତ ମନ୍ତ୍ର ମାଧ୍ୟମରେ ପ୍ରାର୍ଥନା କରିଥାନ୍ତି ।

ମନ୍ତ୍ର : ବଡ଼ ବଡ଼ିଆ ହୋ, ଅନ୍ଧାରେ ଆସି ଆଲୁଏ ଯାଅ,
ଗଙ୍ଗା ଯାଅ, ଗୟା ଯାଅ, କାଶୀ ଯାଅ, ପୁରୁଷୋତ୍ତମରେ
ମହାପ୍ରସାଦ ଖାଇ, ବାଇଶି ପାହାଚରେ ଗଡ଼ ଗଡ଼ଉ ଥାଅ ।

ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଏହି ଦିବସରେ ଉଜ୍ଜୟନୀର ରାଜା ବିକ୍ରମାଦିତ୍ୟ ସିଂହାସନ ଆରୋହଣ କରିଥିଲେ । ସମ୍ରାଟ ଆକବର ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଏହି ପର୍ବଟିକୁ ସମ୍ମାନ ଦେଉଥିଲେ । ଚାଲୁକ୍ୟ ବଂଶୀୟ ନରପତିଙ୍କ ଶାସନ ସମୟରେ ଭାରତର ସର୍ବତ୍ର ସ୍ଥାନରେ ପାଳିତ ହେବାର କଥିତ ଅଛି । ଜୈନ ସାହିତ୍ୟରେ ଏହି ଉତ୍ସବକୁ 'ଯକ୍ଷରାତ୍ର' ଉତ୍ସବ ରୂପେ ନାମିତ ହୋଇଅଛି । ଆର୍ଯ୍ୟ ସମାଜର ପ୍ରବର୍ତ୍ତକ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଏହି ଦିବସରେ ଦେହତ୍ୟାଗ କରିଥିଲେ ଓ ସ୍ୱାମୀ ରାମତୀର୍ଥ ଜନ୍ମ ଓ ମୃତ୍ୟୁବରଣ କରିଥିଲେ । ଏହି ମହାନ୍ ପବିତ୍ର ଓ ଧାର୍ମିକ ଦିବସ ସମଗ୍ର ମାନବ ଜାତିର ଗର୍ବ ଓ ଗୌରବ ଅଟେ ।

ବହୁ ପ୍ରାଚୀନ କାଳରୁ ଅର୍ଥାତ୍ ବେଦ ଶାସ୍ତ୍ର ପ୍ରଚଳନ ସମୟରୁ ଏହି ଉତ୍ସବଟି ପାଳିତ ହୋଇ ଆସୁଥିଲେ ମଧ୍ୟ ଏହାର ଜନ୍ମ ବୃତ୍ତାନ୍ତ ସମ୍ପର୍କରେ ନିର୍ଦ୍ଦିଷ୍ଟ ଭାବେ କିଛି କହିହେବ ନାହିଁ । କେହି କେହି ମଧ୍ୟ ଏହି ଦିବସକୁ 'କାଳରାତ୍ରି' ବୋଲି କହିଥାନ୍ତି । କାରଣ ଏହି ଘୋର ଅନ୍ଧାର ରାତ୍ରିରେ ଭୂତ, ପ୍ରେତ, ଡାହାଣୀ, ଚିରୁଗୁଣୀ ଇତ୍ୟାଦି ଭୟଙ୍କର ଜନ୍ତୁମାନେ ଭ୍ରମଣ କରିଥାନ୍ତି । ସେମାନଙ୍କୁ ଶାନ୍ତି କରାଇ ପ୍ରତ୍ୟାବର୍ତ୍ତନ କରିବା ନିମିତ୍ତ ବିଧିବିଧାନ ସହିତ ଧୂପ, ଦୀପ ଦେଖାଇ ଓ ବାଣ ଫୁଟାଇ ପୂଜା କରାଯାଇଥାଏ । କେହି କେହି ମତପୋଷଣ କରନ୍ତି ବାଣ ଫୁଟାଇ ସେମାନଙ୍କୁ ଭୟଭୀତ କରାଇଲେ, ସେମାନେ ପଳାଇ

ଯାଇଥାଆନ୍ତି । ଅନ୍ୟମାନଙ୍କ ମତରେ ଦୀପ ଜାଳି, ବାଣ ଫୁଟାଇ ଅନ୍ଧାର ରାତ୍ରିରେ ଆଲୁଅ ଦେଖାଇଲେ ସେମାନେ ବିଦାୟ ନେଇଥାଆନ୍ତି ।

ଲୋକାନୁଚାରରେ ଦୀପାବଳିକୁ କାଳୀପୂଜା ପର୍ବ ବୋଲି କହିଥାଆନ୍ତି । କାଳୀ ଉପାସନା ଭାରତୀୟ ଶାକ୍ତ - ତନ୍ତ୍ରଧର୍ମ ଧାରାର ଏକ ପ୍ରାଚୀନ ପରମ୍ପରା । ଭାରତୀୟ ସଭ୍ୟତା ସୃଷ୍ଟି ସମୟରୁ କାଳୀପୂଜା ପର୍ବଟି ପାଳିତ ହୋଇଆସୁଅଛି । ଆଜିର ଆଧୁନିକ ଯୁଗ ତଥା ବିଜ୍ଞାନ ଯୁଗରେ ପାଶ୍ଚାତ ସଭ୍ୟତାର ପ୍ରଭାବରେ ଭାରତୀୟ ସଭ୍ୟତାର ସାମାଜିକ ଓ ସାଂସ୍କୃତିକ ପରମ୍ପରାର ପରିବର୍ତ୍ତନ ହୋଇଥିଲେ ମଧ ଦୀପାବଳି ପରି ମହାନ୍ ପର୍ବର ପରାକାଷ୍ଠା ପୂର୍ବପରି ଅକ୍ଷୁଣ୍ଣ ରହିଛି । ଏହି ପୂଜାର ବିଧିବିଧାନ ତଥା ପୂଜା ଉପକରଣ ଆଣି ଦେଇଥାଏ ଅଗଣିତ କୋମଳମତି ପିଲାମାନଙ୍କ ମନରେ ଅସରନ୍ତି କୌତୁକ, ଅତୁଳନୀୟ ଆଗ୍ରହ ଓ ଅସୀମ ଆନନ୍ଦଉଲ୍ଲାସ । କାରଣ ବିଭିନ୍ନ ରଙ୍ଗବେରଙ୍ଗର ଆଲୋକ ସଜ୍ଜା, ଆତସବାଜିର ଦୃଶ୍ୟ ଓ ମେଘ ଗର୍ଜନର ଶବ୍ଦ ଇତ୍ୟାଦି ଆଣି ଦେଇଥାଏ ସେମାନଙ୍କ ହୃଦୟରେ ଅପୂର୍ବ ପ୍ରଫୁଲ୍ଲତା ।

ଆଜିର ଯୁବପିଢ଼ି ଉପରେ ଦୀପାବଳି ପର୍ବ ଅତୀତର ସ୍ମୃତି, ସୁଖ ଓ ସମୃଦ୍ଧି ଇତ୍ୟାଦିର ସୁ-ପ୍ରଭାବ ପଡ଼ିବା ସଂଗେସଂଗେ ଭାରତୀୟ କଳା, ସଂସ୍କୃତି, ସାମାଜିକ ପରମ୍ପରା, ଐତିହ୍ୟ, ସାହିତ୍ୟ ଓ ଆଧ୍ୟାତ୍ମିକ ଦର୍ଶନ ଇତ୍ୟାଦିର ପରାକାଷ୍ଠା ଜୀବିତ ହୋଇ ରହିଅଛି । ଏତଦ୍‌ବ୍ୟତୀତ ଏହାର ଐଶ୍ୱରିକ ତଥା ଆଧ୍ୟାତ୍ମିକ ଭାବଧାରା କଳୁଷିତ ପରିବେଶକୁ ବିନାଶ କରି ଆଣି ଦେଇଛି ଶାନ୍ତି, ସ୍ନେହ, ଶ୍ରଦ୍ଧା, ଆଶୀର୍ବାଦ, ନ୍ୟାୟ ଓ ଧର୍ମର ଚେତନାବାଣୀ ।

ଘ.ନଂ.-ଟୁ.ଆର.ଏ-୩୫/୭
ୟୁନିଟ୍-୮, ଭୁବନେଶ୍ୱର

# ଖବରକାଗଜଗୁଡ଼ିକୁ ସମାନୁପାତିକ ରୀତିରେ ବିଜ୍ଞାପନ ପ୍ରଦାନ କରାଯିବାକୁ ବିଭାଗୀୟ ମନ୍ତ୍ରୀଙ୍କ ନିର୍ଦ୍ଦେଶ

କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ରମାନଙ୍କୁ ବିଜ୍ଞାପନ ପ୍ରଦାନ କ୍ଷେତ୍ରରେ ସଂପୂର୍ଣ୍ଣ ସ୍ୱଚ୍ଛତା ଅବଲମ୍ବନ କରିବା ସହ ସମାନୁପାତିକ ରୀତିରେ ଯେଭଳି ଖବରକାଗଜଗୁଡ଼ିକୁ ବିଜ୍ଞାପନ ଦିଆଯାଏ, ସେଥି ନେଇ ପଦକ୍ଷେପ ନେବାକୁ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ବିଭାଗୀୟ ପଦାଧିକାରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ଗତ ଅକ୍ଟୋବର ୨୯ ତାରିଖ ଦିନ ଭାରତୀୟ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ଫେଡେରେସନ କେନ୍ଦ୍ରୀୟ ଉପସଭାପତି ଅମ୍ବିକା ପ୍ରସାଦ ଦାସଙ୍କ ନେତୃତ୍ୱରେ ଏକ ପ୍ରତିନିଧି ଦଳ ମନ୍ତ୍ରୀ ଶ୍ରୀ ନାୟକଙ୍କୁ ସଚିବାଳୟଠାରେ ସାକ୍ଷାତ କରି ସମ୍ବାଦପତ୍ର ଓ ସାମ୍ବାଦିକମାନଙ୍କର ବିଭିନ୍ନ ସ୍ୱାର୍ଥ ସମ୍ବଳିତ ପ୍ରସଙ୍ଗ ଉପରେ ଆଲୋଚନା କରିଥିଲେ । ଆଲୋଚନା କାଳରେ ସମ୍ବାଦପତ୍ରଗୁଡ଼ିକ ଅନୁମୋଦନ ପୂର୍ବରୁ ଏକ କମିଟି ଦ୍ୱାରା ବିଧିବଦ୍ଧ ସମୀକ୍ଷା କରାଯିବା, ପ୍ରେସ୍ ଏକାଡେମୀ, ସାମ୍ବାଦିକ କଲ୍ୟାଣ ପାଣ୍ଠି ଗଠନ କରାଯାଇ ଦୁସ୍ଥ ସାମ୍ବାଦିକମାନଙ୍କୁ ସହାୟତା ପ୍ରଦାନ କରାଯିବା, ବିଜ୍ଞାପନ ଫିକ୍ସିଂ ପ୍ରତି ସତର୍କ ରହିବା ବିଜ୍ଞାପନ ନୀତିରେ ଆବଶ୍ୟକ ସଂଶୋଧନ କରାଯିବା ନେଇ ସରକାର ପଦକ୍ଷେପ ନେବାକୁ ପ୍ରତିନିଧି ଦଳ ଦୃଷ୍ଟି ଆକର୍ଷଣ କରିଥିଲେ । ଉପରୋକ୍ତ ସମସ୍ୟାଗୁଡ଼ିକ ସଂପର୍କରେ ସରକାର ଅବଗତ ଅଛନ୍ତି ଏବଂ ସେଥିନେଇ ଆବଶ୍ୟକ କାର୍ଯ୍ୟ ଗ୍ରହଣ କରାଯାଇଛି ବୋଲି ମନ୍ତ୍ରୀ ଶ୍ରୀ ନାୟକ ପ୍ରକାଶ କରିଥିଲେ ।

ଖବରକାଗଜଗୁଡ଼ିକୁ ନିୟମାନୁଯାୟୀ ବିଜ୍ଞାପନ ପ୍ରଦାନ କରାଯାଉଛି ଏବଂ ଆବଶ୍ୟକ ପଡ଼ିଲେ ଆହୁରି କଡ଼ାକଡ଼ି ପଦକ୍ଷେପ ନିଆଯିବ ବୋଲି ବିଭାଗୀୟ ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି ଏବଂ ଉପନିର୍ଦ୍ଦେଶକ ଶ୍ରୀ ତାରାକାନ୍ତ ମହାନ୍ତି କହିଥିଲେ ।

ଆଲୋଚନା ବେଳେ ଅନ୍ୟମାନଙ୍କ ମଧ୍ୟରେ ଫେଡେରେସନର ଓଡ଼ିଶା ଶାଖା କର୍ମକର୍ତ୍ତା ଶ୍ରୀ ଅଭୟ ସ୍ୱାଇଁ, ଶ୍ରୀ ବିମଳ ଭଂଜଦେଓ, ଶ୍ରୀ ଭାଗୀରଥି ପାଟଯୋଶୀ, ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାମଲ ଓ ଶ୍ରୀମତୀ ରୀନା ଗଡ଼ନାୟକ ଉପସ୍ଥିତ ଥିଲେ ।



# ଓଡ଼ିଶାର ପର୍ଯ୍ୟଟନ

କୃଷ୍ଣଚନ୍ଦ୍ର ସୁଆର

ଓଡ଼ିଶାର ପର୍ଯ୍ୟଟନ ଆକର୍ଷଣ ଯେପରି ବହୁମୁଖୀ ସେପରି ମଧ୍ୟ ବିଶ୍ୱ ବିଚିତ୍ର । ଅତି ପ୍ରାଚୀନ କାଳରୁ ଏହା ପର୍ଯ୍ୟଟକମାନଙ୍କର ଏକ ବେଳାଭୂମି ରୂପେ ସୁପରିଚିତ ।

କାହିଁ କେଉଁ ବୈଦିକ ଯୁଗରୁ ବହୁ ଜ୍ଞାନୀ, ଗୁଣୀ, ସିଦ୍ଧସାଧକ, ମୁନି ଓ ତପସ୍ୱୀ ଓଡ଼ିଶାକୁ ମୁକ୍ତି କ୍ଷେତ୍ର ରୂପେ ସ୍ୱୀକାର କରି ଆସିଛନ୍ତି । ପୁରୁଷୋତ୍ତମ ପ୍ରଭୁ ରାମଚନ୍ଦ୍ର, ଭାଇ ଲକ୍ଷ୍ମଣ ଓ ପ୍ରାଣପ୍ରିୟା ସତୀ ସାଧ୍ୱୀ ସୀତାଙ୍କ ସହିତ ବନବାସ ସମୟରେ ପଞ୍ଚବଟୀ, ଦଣ୍ଡକାରଣ୍ୟ, ରାମଗିରି ଓ କଟିଙ୍ଗାଠାରେ କେତେକ ସମୟ ଅତିବାହିତ କରିଥିବାର ପ୍ରମାଣ ମିଳେ । ଧର୍ମ ଯୁଧିଷ୍ଠିର ଲୋମଶ ଋଷିଙ୍କ ନିର୍ଦ୍ଦେଶରେ ବୈତରଣୀ ତୀର୍ଥରେ ଅବଗାହନ କରି ମହେନ୍ଦ୍ର ଗିରି ପର୍ବତରେ ଅବସ୍ଥାନ କରିଥିବାର ସୂଚନା ମିଳେ । ମହାକବି କାଳିଦାସ ନନ୍ଦପୁର ଗ୍ରାମରେ ଅବସ୍ଥାନ କରି ରାମଗିରି ପର୍ବତରେ ତାଙ୍କର ବିଶ୍ୱବିଖ୍ୟାତ ସଂସ୍କୃତ କାବ୍ୟ 'ରଘୁବଂଶ' ରଚନା କରିଥିବାର ଜଣାଯାଏ । ଏତଦ୍‌ବ୍ୟତୀତ ଚୀନ ପରିବ୍ରାଜକ ହୁଏନ୍‌ସାଂ ମଧ୍ୟ ଯୋଗ ଶିକ୍ଷା କରିବା ପାଇଁ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ କଟକର ପୁଷ୍ପଗିରି ବିହାର ଓ ପରିମଳ ଗିରି ବିହାର ଆସିଥିଲେ ।

ପର୍ଯ୍ୟଟନ କ୍ଷେତ୍ରରେ ଭୁବନେଶ୍ୱର, ପୁରୀ ଏବଂ କୋଣାର୍କ 'ସୁବର୍ଣ୍ଣ ତ୍ରିଭୁଜ' ନାମରେ ଭାରତ ପ୍ରସିଦ୍ଧ । ମନ୍ଦିରମାଳିନୀ ରାଜଧାନୀ ଭୁବନେଶ୍ୱରର ଆକର୍ଷଣ ବିଶ୍ୱବିଦିତ । ଦେଶ ବିଦେଶରୁ ପ୍ରକାଶିତ ପର୍ଯ୍ୟଟନ ପୁସ୍ତକମାନଙ୍କ ପ୍ରଚ୍ଛଦପଟ୍ଟରେ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟ ମନ୍ଦିରର ମନୋରମ ଆଲୋକଚିତ୍ର ବେଶ୍ ପ୍ରସ୍ଫୁଟିତ । ଏକାଦଶ ଶତାବ୍ଦୀରେ ନିର୍ମିତ ଲିଙ୍ଗରାଜ ମନ୍ଦିର ବ୍ୟତୀତ ପରଶୁରାମେଶ୍ୱର ମନ୍ଦିର, ମୁକ୍ତେଶ୍ୱର ମନ୍ଦିର, ବୈତାଳ ମନ୍ଦିର, ରାଜରାଣୀ ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର ଏବଂ ଅନନ୍ତ ବାସୁଦେବ ମନ୍ଦିର ଏହାର କାରୁକାର୍ଯ୍ୟ ପାଇଁ ଦର୍ଶକମାନଙ୍କୁ ବିସ୍ମିତ କରିଥାଏ ।

ଢେଙ୍କାନାଳର 'ଟିକରପଡ଼ା' ଏକ ରମଣୀୟ ପର୍ଯ୍ୟଟନ ଦୃଶ୍ୟ । ମହାନଦୀ ଏଠାରେ ୨୦ କିଲୋମିଟର ବିସ୍ତୃତିରେ ମନୋହର ନଦୀ ଗଣ୍ଡ ଉତ୍‌ସାରିତ କରିଛି । ଏହା ସାତକୋଶିଆ, କୁମ୍ଭୀରମାନଙ୍କର ଜନ୍ମ, ଲାଳନପାଳନ ତଥା ବଂଶ ବୃଦ୍ଧିର ସ୍ଥାନ, ଘଡିଆଳ କୁମ୍ଭୀରକ୍ରମେ ଲୋପ ପାଇ ଯାଉଥିବାରୁ ଏଠାରେ ସେମାନଙ୍କର ଜନ୍ମ ଓ ସଂରକ୍ଷଣ ପାଇଁ ଆଧୁନିକ ବୈଷୟିକ କୌଶଳରେ କାର୍ଯ୍ୟ କରାଯାଇଛି । ମଳୟଗିରି ରାଜ୍ୟର ଏକ ଉଚ୍ଚତମ ଶୈଳ ଶୀର୍ଷ । ପ୍ରତିବର୍ଷ ଏଠାକୁ ବହୁ ପର୍ଯ୍ୟଟକ ଆସନ୍ତି । ଏତଦ୍‌ବ୍ୟତୀତ କପିଳାସ, ଯୋରନ୍ଦା, ସାରଙ୍ଗ, ଭୀମ କୁଣ୍ଡ ଏ ଜିଲ୍ଲାର ଅଭିନବ ପର୍ଯ୍ୟଟନ କେନ୍ଦ୍ର । ବଳଭଦ୍ର ଶମ୍ଭୁ ଗୋପାଳ ରଘୁନାଥ, କୁଂଜକାନ୍ତ ମନ୍ଦିର ଧାର୍ମିକ ପୀଠ ପ୍ରଭୃତି ଦର୍ଶକମାନଙ୍କ ଦୃଷ୍ଟି ଆକର୍ଷଣ କରେ ।

ବହୁ ରାଜନୈତିକ, ସାଂସ୍କୃତିକ ଓ ଧର୍ମୀୟ ଆନ୍ଦୋଳନ ଓ ସଂଘର୍ଷର ଭୂମି ହେଉଛି ବାଲେଶ୍ୱର । ଚାନ୍ଦିପୁରର ସୁନ୍ଦର ବେଳାଭୂମି, ରେମୁଣା, ଚନ୍ଦନେଶ୍ୱର, ପଞ୍ଚଲିଙ୍ଗେଶ୍ୱର, କ୍ଷୀରଚୋରା ଗୋପୀନାଥ ମନ୍ଦିର ଯୁଗେ ଯୁଗେ ଭକ୍ତମାନଙ୍କୁ ଆକର୍ଷଣ କରି ଆସିଛି । ଚନ୍ଦନେଶ୍ୱରର ବେଳାଭୂମି ଓ ମନ୍ଦିର ସର୍ବାପେକ୍ଷା ବାଲେଶ୍ୱରର ଏକ ଆକର୍ଷଣ ପର୍ଯ୍ୟଟନ ପୀଠ । ଏପ୍ରିଲ ମାସରେ ଏଠାରେ 'ନୀଳପର୍ବ' ଅନୁଷ୍ଠିତ ହୁଏ । ବହୁ ଲୋକ ସମବେତ ହୁଅନ୍ତି । ପଞ୍ଚଲିଙ୍ଗ ଉପରେ ପ୍ରବାହିତ ଜଳଧାରା ଏବଂ ଚତୁର୍ଦ୍ଦିଗ ଟୁଙ୍କାଳିଆ ଗଛ ପତ୍ର ଶ୍ୟାମଳ ସବୁଜିମାର ବିସ୍ତୃତି ରାଜା ବାଣାସୁରର କୀର୍ତ୍ତି ।

କେଉଁଝରର ଖଣିଜ ସଂପଦରେ ପରିପୂର୍ଣ୍ଣ । ଏଠାରେ ଥିବା ସୀତାବଞ୍ଜୀ, ରାବଣଛାୟା, ଖଣ୍ଡାଧାର, ଗୋନାସିକା ପ୍ରଭୃତିର ଶୋଭା ଅତି ହୃଦୟସ୍ପର୍ଶୀ । ମା' ତାରିଣୀ ଦେବୀଙ୍କର ପୀଠସ୍ଥଳୀ 'ଘଟଗାଁ' ଏକ ପ୍ରସିଦ୍ଧ ଦେବୀ ପୀଠ । ବିପଦ ଆପଦରେ ମା'ଙ୍କୁ ସମସ୍ତେ ଡାକନ୍ତି । ପ୍ରତ୍ୟେକ ଯାତ୍ରୀ ନତମସ୍ତକ ହୁଏ, ନିର୍ବିଘ୍ନ ଶୁଭ ଯାତ୍ରା ପାଇଁ । ନଡ଼ିଆ ହେଉଛି ମା'ଙ୍କର ଅତ୍ୟନ୍ତ ପ୍ରିୟ । ଦୂରଦୂରାନ୍ତରୁ ହଜାର ହଜାର ଭକ୍ତ ମା'ଙ୍କ ନିକଟକୁ ମାନସିକ ରଖି ଗାଡ଼ିରେ ନଡ଼ିଆ ପଠାଇଥାନ୍ତି । କେଉଁଝର ଗଡ଼ରେ ଥିବା ସିଦ୍ଧ ଜଗନ୍ନାଥ, ସିଦ୍ଧକାଳୀ ଓ ପଞ୍ଚବଟୀ ପ୍ରଭୃତି ଅନିନ୍ଦ୍ୟ ପ୍ରାକୃତିକ ପରିବେଶ ଭିତରେ ପରିଶୋଭିତ ।

ପଶ୍ଚିମ ଓଡ଼ିଶାର ସମଲେଶ୍ୱରୀ ଓ ପାଟଣେଶ୍ୱରୀଙ୍କ ମନ୍ଦିରର ସ୍ଥାପତ୍ୟ ଓ ନିର୍ମାଣ ପରିପାଟୀ ଦର୍ଶକଙ୍କୁ ଆକର୍ଷଣ କରିଥାଏ । ଏଠାକାର

ଗୋପାଳଜୀମଠ ଚୌହାନ ରାଜାମାନଙ୍କ ଏକ ଉଲ୍ଲେଖନୀୟ ସୃଷ୍ଟି । ସମ୍ବଲପୁରରେ ମହାନଦୀର ଦୃଶ୍ୟ ଦର୍ଶକର ଚିତ୍ତ ଆକର୍ଷଣ କରିଥାଏ । 'ହୀରାକୁଦ ଜଳ ଭଣ୍ଡାର' ଏସିଆ ମହାଦେଶର ବୃହତ୍ତମ କୃତ୍ରିମ ହ୍ରଦ ରୂପେ ଅଜସ୍ର ଖ୍ୟାତିର ଅଧିକାରୀ । ଏହି ବନ୍ଧ ନିର୍ମାଣ ହେବା ପରେ ବନ୍ୟା ଜଳର ବିଭୀଷିକାକୁ ବହୁ ପରିମାଣରେ ଆୟତ୍ତ କରାଯାଇପାରିଛି । ଏହା ନୌକା ବିହାରର ଏକ ପ୍ରଶସ୍ତ କ୍ଷେତ୍ର ଓ ମତ୍ସ୍ୟ ବ୍ୟବସାୟର କେନ୍ଦ୍ରସ୍ଥଳୀ ହେବା ସଂଗେସଂଗେ ଏହାର ଚିତ୍ତାକର୍ଷକ ଦୃଶ୍ୟ ବହୁ ବୈଦେଶିକ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରି ଆସିଛି । ସମ୍ବଲପୁରର ଅନ୍ୟ ଏକ ଆକର୍ଷଣୀୟ ସ୍ଥାନ ହେଉଛି ନୃସିଂହନାଥ ଏବଂ ବଲାଙ୍ଗୀରର ହରିଶଙ୍କର । ଉଭୟ ଗନ୍ଧମାର୍ଦ୍ଦନ ପର୍ବତର ଦୁଇଟି ପ୍ରସିଦ୍ଧ ଶୃଙ୍ଗ ଯଥାକ୍ରମେ ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ସୀମା ନିର୍ଦ୍ଦେଶ କରେ । ବହୁ ବନୌଷଧିରେ ଭରପୂର ଏଠାର ଉଦ୍ୟାନରେ ନାନା ଜାତିର ଆବଶ୍ୟକୀୟ ଦୁର୍ଲଭ ତଥା ଔଷଧୀୟ ଚେରମୂଳିମାନ ମିଳେ । ହରିଶଙ୍କର ନିକଟରେ ଥିବା 'ମୃଗ ବିହାର' ଅତି ଚିତ୍ତାକର୍ଷକ ଓ ଉପଭୋଗ୍ୟ । ସମ୍ବଲପୁର ନିକଟସ୍ଥ ମହାନଦୀ କୂଳସ୍ଥ ହୁମା ଗ୍ରାମରେ ବିମଳେଶ୍ୱର ଶିବଙ୍କ ବକ୍ର ମନ୍ଦିର ଏକ ଅଦ୍‌ଭୁତ ସ୍ଥାପତ୍ୟ ଶୈଳୀରେ ନିର୍ମିତ । ବଲାଙ୍ଗୀରର ରାଣୀପୁର ଝରିଆଲର ପ୍ରତ୍ନତାତ୍ତ୍ୱିକ ବିଭବ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଥାଏ । ଏଠାରେ ଯେଉଁ ବିଶାଳ ଶିଳାଖଣ୍ଡ ପାହାଡ଼ ଭଳି ଉଚ୍ଚ ମଥା କରିଛି, ତାହା ସମଗ୍ର ଏସିଆ ମହାଦେଶର ବୃହତ୍ତମ ଶିଳାଖଣ୍ଡ ରୂପେ ସୁବିଦିତ । ଶିଳାଖଣ୍ଡର ଶୀର୍ଷ ଦେଶରେ 'ଚଉଷଠୀ ଯୋଗିନୀ' ମନ୍ଦିର ବୃତ୍ତାକାରରେ ନିର୍ମିତ । ଏହା ଅଷ୍ଟମ-ନବମ ଶତାବ୍ଦୀର କୀର୍ତ୍ତି ହୋଇଥିବାର ଜଣାପଡ଼େ ।

ସୋନପୁର ମଧ୍ୟ ଏକ ମନ୍ଦିରମାଳିନୀ ସ୍ଥାନ ରୂପେ ବହୁ ପର୍ଯ୍ୟଟକଙ୍କୁ ଆକର୍ଷଣ କରିଥାଏ । ମହାନଦୀ ଓ ତେଲନଦୀର ମିଳନ ସ୍ଥଳୀରେ ଏହା ଅବସ୍ଥିତି ହେତୁ ଏହି ସ୍ଥଳର ସୁନ୍ଦର ଦୃଶ୍ୟ ଚିତ୍ତାକର୍ଷକ । ରାମେଶ୍ୱରର ଶିବମନ୍ଦିର, ସୁବର୍ଣ୍ଣପୁର, ସୁରେଶ୍ୱରୀ ଏବଂ ଉଚ୍ଚତମ ପ୍ରସିଦ୍ଧ ନୃସିଂହ ମନ୍ଦିର ଏଠାରେ ନିର୍ମିତ । ପ୍ରାଚୀନ କାଳରେ ଏହା ଏକ ତନ୍ତ୍ରପୀଠ ଏବଂ ବୟନ କଳାରେ ବିଶ୍ୱଖ୍ୟାତି ଲାଭ କରିଥିଲା ।

ମହାନଦୀ କୂଳସ୍ଥ 'ବୌଦ' ନଗରୀ ଏକ ଦର୍ଶନୀୟ ସ୍ଥାନ ରୂପେ ସୁପରିଚିତ । ଏହାର ପ୍ରାଚୀନ ନାମ 'ଧୃତିପୁର' ଏବଂ ଏହା ଭଂଜରାଜ୍ୟ ଖିଞ୍ଜାଳି ମଣ୍ଡଳର ରାଜଧାନୀ ରୂପେ ଖ୍ୟାତି ଲାଭ କରିଥିଲା । ବୌଦ ଅଂଚଳର 'ଚନ୍ଦ୍ରଚୂଡ଼ ମନ୍ଦିର', ମାତଙ୍ଗେଶ୍ୱର ମହାଦେବ, ଦେବୀ ଭୈରବୀ, ସାତକୋଶିଆ ଗଣ୍ଡ, ରାଜପ୍ରାସାଦ, ଗୁପ୍ତେଶ୍ୱର ମହାଦେବ, ରଘୁନାଥ, ଜଗନ୍ନାଥ ଓ ହନୁମାନ ମନ୍ଦିର ପ୍ରଭୃତି ଦର୍ଶନୀୟ ସ୍ଥାନ । ମହାନଦୀ କୂଳରେ ସ୍ଥାପିତ ଚନ୍ଦ୍ରଚୂଡ଼ ମନ୍ଦିର ଅତ୍ୟନ୍ତ ଚିତ୍ତାକର୍ଷକ । ଏହାର ବେଢ଼ା ଭିତରେ ଥିବା ସୁନ୍ଦର ଫୁଲ ବଗିଚା ମନ ଲୋଭା । ଏଠାରେ ଥିବା 'ନାଗଲିଙ୍ଗ' ଫୁଲ ଶ୍ରଦ୍ଧାଳୁ ଭକ୍ତମାନେ ଚନ୍ଦ୍ରଚୂଡ଼ଙ୍କ ମସ୍ତକରେ ଲାଗି କରିଥାନ୍ତି । ଶ୍ରାବଣ ମାସରେ 'ବୋଲବମ୍' ଭକ୍ତମାନେ ମହାନଦୀରେ ପବିତ୍ର ସ୍ନାନ କରି ଜଳ ଲାଗି କରନ୍ତି ।

ମହାଭାରତର ରଚୟିତା ବ୍ୟାସଦେବଙ୍କ ଜନ୍ମପୀଠ ରୂପେ ପରିଚିତ ରାଉରକେଲା ନିକଟସ୍ଥ 'ବେଦବ୍ୟାସ' କେବଳ ଏକ ପବିତ୍ରପୀଠ ନୁହେଁ, ଏହାର ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିଥାଏ । ବେଦବ୍ୟାସ ଓ ପରିସରମୁଣ୍ଡା ପାହାଡ଼ ମଧ୍ୟ ଦେଇ ତ୍ରିବେଣୀ ସଂଗମରୁ ଜାତ ବ୍ରହ୍ମଣୀ ନଦୀ ବହିଯାଇଛି । ଚନ୍ଦ୍ରଶେଖର - ବାଲୁକେଶ୍ୱର ମନ୍ଦିର ପାର୍ଶ୍ୱରେ ଥିବା ସରସ୍ୱତୀ କୁଣ୍ଡରୁ ବର୍ଷକୁ ବାରମାସ କୁହୁଡ଼ି ବାହାରି ସମଗ୍ର ଅଂଚଳକୁ ଆଚ୍ଛାଦିତ କରି ରଖିଥାଏ । ଏହି କୁହୁଡ଼ି ସଂପର୍କରେ ଏଠାରେ ଏକ କିମ୍ବଦନ୍ତୀ ଶୁଣିବାକୁ ମିଳେ । ଗୁରୁକୁଳ ବୈଦିକ ଆଶ୍ରମର ବ୍ରହ୍ମଚାରୀଙ୍କ ସଂସ୍କୃତି ମନ୍ତ୍ରୋଚାରଣ ପ୍ରତ୍ୟହ ସକାଳେ ଏହି କୁହୁଡ଼ିଆ ପରିବେଶକୁ ଅଧିକ ଆକର୍ଷଣୀୟ କରିଦିଏ । ବ୍ରାହ୍ମଣୀ ନଦୀ ତଟରେ ଥିବା ଶ୍ମଶାନରେ ଶବଦାହ କରି ପୁଣ୍ୟାର୍ଜନ କରିବାକୁ ପ୍ରତିବର୍ଷ ବହୁ ଲୋକ ଏଠାକୁ ଆସିଥାନ୍ତି । ସ୍ଥାନୀୟ ଅଧିବାସୀମାନେ ମଧ୍ୟ ତିନି ବର୍ଷକୁ ଥରେ ବେଦବ୍ୟାସରେ ହାଡ଼ପକା କରନ୍ତି । ଭାରତର ୧୪ଟି ସ୍ଥାନରେ ତ୍ରିବେଣୀ ସଂଗମ ରହିଛି । ୧୩ଟି ସ୍ଥାନରେ ସରସ୍ୱତୀ ନଦୀ ଅନ୍ତଃସଲିଳା । କେବଳ ବେଦବ୍ୟାସରେ ହିଁ ଏହା ଚିରସ୍ରୋତା ଏବଂ ଦୃଶ୍ୟ ବୋଲି କେତେକ ପଣ୍ଡିତ ମତ ଦିଅନ୍ତି ।

କଳାହାଣ୍ଡି ଜିଲ୍ଲାର ତେଲ ଓ ରାହୁଳ ନଦୀର ସଂଗମ ସ୍ଥାନରେ ଅବସ୍ଥିତ ବେଲଖଣ୍ଡି ଏକ ରମଣୀୟ ତୀର୍ଥ ସ୍ଥାନ । ଶିବରାତ୍ରି ଦିନ ଏଠାରେ ଏକ ମେଳା ଅନୁଷ୍ଠିତ ହୋଇଥାଏ । ଶ୍ରଦ୍ଧାଳୁ ଭକ୍ତମାନେ ଆସି ରୁଣ୍ଡ ହୋଇଥାନ୍ତି । ପ୍ରାଚୀନ କାଳର ମନ୍ଦିର ଦେବାଦେବୀଙ୍କର ବିଗ୍ରହ ଦେଖିବାକୁ ମିଳେ । କଳାହାଣ୍ଡି ରାଜାଙ୍କର ପ୍ରାଚୀନ ରାଜଧାନୀ ଜୁନାଗଡ଼ ଅତୀତରେ ଏକ ସମୃଦ୍ଧଶାଳୀ ନଗରୀ ରୂପେ ଖ୍ୟାତିଲାଭ କରିଥିଲା । ଏଠାରେ ଥିବା ଲଙ୍କେଶ୍ୱରୀଙ୍କ ମନ୍ଦିର, କନକ ଦୁର୍ଗାଙ୍କ ମନ୍ଦିର ଓ ଦଧିବାମନ ମନ୍ଦିର ଦର୍ଶନୀୟ ।

ଭାରତବର୍ଷର ବ୍ୟାଘ୍ର ସଂରକ୍ଷଣ ଯୋଜନା ମଧ୍ୟରେ 'ଶିମିଳିପାଳ' ହେଉଛି ଅନ୍ୟତମ । ଏହା ଜାତୀୟ ପାର୍କ ଭାବରେ ସୁପ୍ରସିଦ୍ଧ । ଖଇରୀ ବାଘ ପାଇଁ ଏ ଶ୍ୟାମଳ ଅରଣ୍ୟାନୀ ଏକଦା ଆନ୍ତର୍ଜାତିକ ପ୍ରଶସ୍ତିଲାଭ କରିଥିଲା । ଏ ଅଭୟାରଣ୍ୟରେ ବାଘ, ହାତୀ, ସମ୍ବର, ବାରହା, ହରିଣ, କୁଟ୍‌ରା, ଝିଙ୍କ, ସାପ ଇତ୍ୟାଦି ନାନାଜାତି ଓ କିସମର ଜୀବଜନ୍ତୁ ଦେଖାଯାନ୍ତି । ଏହା ପ୍ରାୟ ୩୦୦୦ ବର୍ଗ କିଲୋମିଟର ପରିମିତ ବିଶାଳ ଅଂଚଳ । ବହୁ ଦୁଷ୍ପ୍ରାପ୍ୟ ଉଦ୍ଭିଦ ଏଠାରେ ରହିଛି । ଏହା ମଧ୍ୟରେ ମୁଣ୍ଡ ଟେକିଛି ବିଶାଳ ବିଶାଳ ପାହାଡ଼ । ଗଛପତ୍ର ଭରା ସବୁଜ ପାହାଡ଼ କୋଳରେ ଭାସି ବୁଲେ ସଫେଦ ବାଦଲ । ଏଠାକାର ସର୍ବୋଚ୍ଚ ପାହାଡ଼ଟିର ନାଁ ମେଘାସନୀ । ବହି ଆସୁଥିବା ତରଙ୍ଗାୟିତ ଝରଣା, ଶବ୍ଦାୟିତ ଜଳପ୍ରପାତ ପ୍ରାୟ ୧୩୦୮ ଫୁଟ ଉଚ୍ଚ ପାହାଡ଼ ଶିଖରୁ ପାହାଚ ଭଳି ଥାକ ଥାକ ହୋଇ ଓହ୍ଲେଇ ଆସିଛି ବରେହିପାଣି ଜଳପ୍ରପାତ । ଘଞ୍ଚ ଶାଳବଣ, ବିଭିନ୍ନ ଜୀବଜନ୍ତୁ ଓ

ଜଳପ୍ରପାତରେ ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନଲୋଭା ଲାଗେ । ଅକ୍ଟୋବର ମାସଠାରୁ ଜୁନ୍‌ମାସର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ପର୍ଯ୍ୟଟକମାନଙ୍କ ପାଇଁ ଶିମିଳିପାଳ ହେଉଛି ପ୍ରକୃଷ୍ଟ ପରିଦର୍ଶନର ଉପଯୁକ୍ତ ସମୟ ।

କଳାମୁଗୁନି ପଥରରେ ନିର୍ମିତ ଉନ୍ନତ କଳା ନୈପୁଣ୍ୟ ଅତୁଳନୀୟ । ଭାସ୍କର୍ଯ୍ୟର ଗୌରବମୟ ଐତିହ୍ୟ ମୟୂରଭଂଜର 'ଖିଚିଂ' ଭାରତର ଏକ ବିଶିଷ୍ଟ ସ୍ଥାନ ରୂପେ ମର୍ଯ୍ୟାଦା ହାସଲ କରିଛି । ଏହାର ସୌନ୍ଦର୍ଯ୍ୟ ଦର୍ଶକମାନଙ୍କ ମନକୁ ଅଭିଭୂତ କରେ । ଦଶମ-ଏକାଦଶ ଶତାବ୍ଦୀ କୀର୍ତ୍ତି ବୋଲି ମନ୍ଦିର ସ୍ଥାପତ୍ୟରୁ ପ୍ରମାଣିତ । ମୟୂରଭଂଜ ରାଜବଂଶର ଶ୍ରୀଧରଣୀ ବରାହ ବୌଦ୍ଧଧର୍ମୀ ଥିବାରୁ ବୌଦ୍ଧ ଦେବତା ଅବଲୋକିତେଶ୍ୱର ମୂର୍ତ୍ତିଟି ରାଣା ଭଂଜଙ୍କ ରାଜତ୍ୱ ସମୟରେ ନିର୍ମାଣ ହୋଇଥିଲା । ରାଣାଭଂଜ ହେଉଛନ୍ତି କୋଟା ଭଂଜଙ୍କ ପୌତ୍ର ଏବଂ ଦିଗଭଂଜଙ୍କ ପୁତ୍ର । ଏଣୁ କୋଟା ଭଂଜ, ଦିଗ ଭଂଜ, ରାଣା ଭଂଜ ଆଦି ପ୍ରାଚୀନ ଭଂଜ ରାଜାଙ୍କ ରାଜତ୍ୱ କାଳରେ ଖିଚିଂର ମନ୍ଦିର ଓ ମୂର୍ତ୍ତି ନିର୍ମିତ । ଭଂଜ ବଂଶର ଗୌରବମୟ ରାଜଧାନୀ ଖିଚିଂ ଥିବାରୁ କୀଚକଗଡ଼ ଓ ବିରାଟଗଡ଼ ରାଜନଗର ଦ୍ୱୟର ଭଗ୍ନାବଶେଷ ଦେଖିବାକୁ ମିଳିଥାଏ । ମୟୂରଭଂଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଂଜ ଦେଓଙ୍କ ରାଜତ୍ୱ କାଳରେ ଶ୍ରୀ ନରେନ୍ଦ୍ର ନାଥ ବସୁ ପ୍ରାଚ୍ୟ ବିଦ୍ୟା ମହାର୍ଣ୍ଣବଙ୍କୁ କଲିକତାରୁ ପ୍ରତ୍ନତାତ୍ତ୍ୱିକ ଗବେଷଣା ଉଦ୍ଦେଶ୍ୟରେ ମୟୂରଭଂଜକୁ ଆଣି ଅନ୍ୟାନ୍ୟ ସ୍ଥାନ ସହ ଖିଚିଂ ପରିଦର୍ଶନ କରାଇ ସହସ୍ର ବର୍ଷର ପୁରାତନ ଧ୍ୱଂସ ସ୍ତୂପ ମଧ୍ୟରୁ କେତେକ କୀର୍ତ୍ତି ଉଦ୍ଧାର କରାଇଥିଲେ । ବହୁ ପ୍ରାଚୀନ ମୂର୍ତ୍ତି ଧ୍ୱଂସ ପ୍ରାପ୍ତ ଭଗ୍ନାଂଶ ଉଦ୍ଧାର କରାଯାଇ ସଂରକ୍ଷଣ ନିମନ୍ତେ ଏକ ଛୋଟ ସଂଗ୍ରହଶାଳା ନିର୍ମାଣ କରାଯାଇଛି । ସେହି ବଂଶର ରାଜା ପ୍ରତାପ ଚନ୍ଦ୍ର ଭଂଜଦେଓ ବର୍ତ୍ତମାନର ଠାକୁରାଣୀ ମନ୍ଦିର ପୁନଃନିର୍ମାଣ କରାଇଥିଲେ । ଖିଚିଂର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଖିଚିଂଙ୍ଗେଶ୍ୱରୀ । ଏହି ମନ୍ଦିରର ଉଚ୍ଚତା ପ୍ରାୟ ୭୫ ଫୁଟ । ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିରର ସ୍ଥାପତ୍ୟ ମୂର୍ତ୍ତି ଏବଂ ମଣ୍ଡନ କଳା ମଧ୍ୟରେ ଏହାର ବହୁ ସାଦୃଶ୍ୟ ଥିବାର ଜଣାଯାଏ । ଏଠାରେ ଅନେକ ବିରଳ କଳାତ୍ମକ କୀର୍ତ୍ତିମାନ ସଂଗୃହୀତ ହୋଇ ରହିଛି । ତନ୍ମଧ୍ୟରେ ଶିବ, ନୃତ୍ୟରତ ଗଣେଶ, ଅଷ୍ଟଭୁଜା ଦୁର୍ଗା, ଅର୍ଦ୍ଧନାରୀଶ୍ୱର, ବ୍ରହ୍ମଣୀ, ଉର୍ଦ୍ଧ୍ୱ ଲିଙ୍ଗେଶ୍ୱର ଓ ଅନ୍ୟାନ୍ୟ ଦେବାଦେବୀ ଏବଂ ଅପସରାମାନଙ୍କ ମୂର୍ତ୍ତିଗୁଡ଼ିକ ବହୁ ଆକର୍ଷଣୀୟ ଓ ଅତ୍ୟନ୍ତ ମନଲୋଭା । ଏଠାରେ ଆବିଷ୍କୃତ ହୋଇଥିବା ବୌଦ୍ଧ, ଜୈନ, ଅନେକ ମୂର୍ତ୍ତି ମଧ୍ୟରେ ମନ୍ଦିର ପୂଜାରେ ବ୍ରାହ୍ମଣ, ହରିଜନ, ଆଦିବାସୀଙ୍କର ବର୍ଣ୍ଣ ବୈଷମ୍ୟତା ନଥିବାରୁ ଏହି ଶାକ୍ତପୀଠକୁ ହିନ୍ଦୁ, ବୌଦ୍ଧ ଓ ଜୈନ ଧର୍ମର ଏକ ମିଳନସ୍ଥଳୀ କହିଲେ ଅତ୍ୟୁକ୍ତି ହେବନାହିଁ । ଚାରୁକଳାର ଅପୂର୍ବ ସମନ୍ୱୟ ଖିଚିଂରେ ଦେଖିବା ସଂଗେସଂଗେ ବାସ୍ତବରେ ଏହା ଏକ ସୁନ୍ଦର ପର୍ଯ୍ୟଟନସ୍ଥଳୀ । ଦେବୀପୂଜା ଉଦ୍ଦେଶ୍ୟରେ ଭକ୍ତମାନେ ବର୍ଷସାରା ସେଠାକୁ ଯାଆନ୍ତି ।

ତପ୍ତପାଣି, ନାରାୟଣୀ, ଗୋପାଳପୁର, ଚିଲିକା, ନିର୍ମଳଝର, ତାରାତାରିଣୀ, ମହେନ୍ଦ୍ରଗିରି, ଜଉଗଡ଼ର ବିସ୍ତୃତି ଓ ସୌନ୍ଦର୍ଯ୍ୟ ଘେନି ଗଂଜାମ ଧନ୍ୟ । ପ୍ରାଚୀନଯୁଗରେ ମହେନ୍ଦ୍ରଗିରିରେ କଳିଙ୍ଗର ଗଙ୍ଗବଂଶୀୟ ରାଜାମାନେ ତାଙ୍କ ଇଷ୍ଟଦେବତା ଗୋକର୍ଣ୍ଣେଶ୍ୱରଙ୍କୁ ପ୍ରତିଷ୍ଠା କରିଥିଲେ । ପୌରାଣିକ ଆଖ୍ୟାନମାନଙ୍କରୁ ଜଣାଯାଏ ଯେ, ପାଣ୍ଡବମାନେ ଏହି ଗିରିଶୃଙ୍ଗରେ ତାଙ୍କ ବନବାସ ସମୟରେ କିଛି କାଳ ଅବସ୍ଥାନ କରିଥିଲେ । ଏଠାରେ ପର୍ଶୁରାମ ଆଶ୍ରମ ନିର୍ମାଣ କରି ତପସ୍ୟା କରୁଥିବାରୁ ଏହାକୁ ପର୍ଶୁରାମ କ୍ଷେତ୍ର ବୋଲି କେତେକ କହନ୍ତି । ତାରାତାରିଣୀ ପାହାଡ଼ଠାରୁ ଅଳ୍ପଦୂରରେ ଜଉଗଡ଼ଠାରେ ଅଶୋକଙ୍କ ପ୍ରଚାରିତ ଧର୍ମଲିପି ବିଦ୍ୟମାନ । ଏଣୁ ଏହା ପର୍ଯ୍ୟଟକମାନଙ୍କ ପକ୍ଷରେ ଏକ ଦର୍ଶନୀୟ ସ୍ଥାନ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଭଂଜ ବିହାରଠାରୁ ମାତ୍ର ୫ କିଲୋମିଟର ଦୂରରେ ଅବସ୍ଥିତ ଗୋପାଳପୁର ବନ୍ଦର ଓ ଏହାର ବେଳାଭୂମି ଅତ୍ୟନ୍ତ ମନଲୋଭା । ଗ୍ରୀଷ୍ମ ଋତୁରେ ବହୁ ବିଦେଶୀ ପର୍ଯ୍ୟଟକ ଏଠାକୁ ଆସି କିଛି ଦିନ ଅତିବାହିତ କରିଯାଆନ୍ତି । ସାଂପ୍ରତିକ କାଳରେ ଓଡ଼ିଶାରେ ବିକାଶଲାଭ କରିଥିବା ପାରାଦ୍ୱୀପ ପରି ଗୋପାଳପୁର ବନ୍ଦରର ନାମ ଉଲ୍ଲେଖଯୋଗ୍ୟ । ପାରାଦ୍ୱୀପ ଦେଶର ଗଭୀରତମ ପ୍ରାକୃତିକ ପୋତାଶ୍ରୟ ହୋଇଥିବାବେଳେ ୧୯୮୯ ମସିହାରୁ ଗୋପାଳପୁର ବନ୍ଦର ଦେଶର ବାଣିଜ୍ୟିକ ବନ୍ଦର ଭାବେ ସର୍ବଭାରତୀୟ ବନ୍ଦର ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ପଣ୍ୟ ସାମଗ୍ରୀ ସରବରାହ କ୍ଷେତ୍ରରେ ନିଜର ସ୍ଥିତିକୁ ସୁଦୃଢ଼ କରି ସର୍ବଭାରତୀୟ ଦୃଷ୍ଟି ଆକର୍ଷଣ କରିପାରିଛି ଏହି ଗୋପାଳପୁର । ତପ୍ତପାଣିର ଉଷ୍ଣପ୍ରସବଣ ଗଂଜାମର ବଡ଼ଖେମୁଣ୍ଡି ତାଲୁକାରେ ଅବସ୍ଥିତ । ଏଠାରେ ସ୍ନାନ କଲେ ଯାବତୀୟ ଚର୍ମରୋଗରୁ ଲୋକେ ମୁକ୍ତ ହୁଅନ୍ତି ବୋଲି ବିଶ୍ୱାସ ହେତୁ ପ୍ରତ୍ୟହ ସେଠାରେ ଜନସମାଗମ ହୁଏ ।

ଦିଗନ୍ତ ବିସ୍ତାରୀ ଚିରହରିତ ଅରଣ୍ୟ, ବିସ୍ତୀର୍ଣ୍ଣ ଉପତ୍ୟକା, ଗିରିଶୃଙ୍ଗ ଓ ଚିରସ୍ରୋତା ଝରଣା ସହ ପ୍ରାକୃତିକ ବିଭବରେ ଭରପୂର 'କୋରାପୁଟ' । ସ୍ୱାଧୀନତା ପ୍ରାପ୍ତି ପରେ ରାଜ୍ୟର ଅନ୍ୟାନ୍ୟ ଅଂଚଳ ପରି ଏ ଜିଲ୍ଲାରେ ଗମନାଗମନର ବିକାଶ ହୋଇ ଥିବାରୁ ଏହାର ମନୋରମ ପ୍ରାକୃତିକ ପରିବେଶ ଦର୍ଶକମାନଙ୍କର ମନଛୁଏଁ । ବଂଶଧାରା, ନାଗାବଳୀ, ଇନ୍ଦ୍ରାବତୀ, ଝୁଞ୍ଜାବତୀ ଓ ଚମ୍ପାବତୀ ପ୍ରଭୃତି ନଦୀ ଏଠାରେ ପ୍ରବାହିତ । ଏମାନଙ୍କ ଭୌଗଳିକ ଅବସ୍ଥିତି ଯୋଗୁଁ ଅନେକ କଲ୍ୟାଣକର ଯୋଜନା ପରିକଳ୍ପିତ । ମାଛକୁଣ୍ଡ ଓ ବାଲିମେଳା ନିକଟସ୍ଥ ଚିତ୍ରକୋଣ୍ଡାରୁ ବିଦ୍ୟୁତ ଶକ୍ତି ଉତ୍ପନ୍ନ ଓ ଦାମନଯୋଡ଼ିରେ ଶିଳ୍ପ ସୌଧ ନିର୍ମାଣ ଦର୍ଶକମାନଙ୍କ ମନକୁ ଆକୃଷ୍ଟ କରେ । ଐତିହାସିକ ନନ୍ଦପୁରର ପୂର୍ବରେ ଅବସ୍ଥିତ ଦେଓମାଳୀ ଓ କନ୍ଧିଆମାଳୀ ପ୍ରଭୃତି ପର୍ବତମାଳାର ଦୃଶ୍ୟ ଅତ୍ୟନ୍ତ ମନମୁଗ୍ଧକର । ଜୟପୁରର ଦକ୍ଷିଣ-ପଶ୍ଚିମ କୋଣରେ ପ୍ରାୟ ୬ ମାଇଲ ଦୂରରେ ବୃକ୍ଷରାଜି ଓ ସୁଉଚ୍ଚ ପାର୍ବତ୍ୟ କନ୍ଦର ଘେରରେ

ଅବସ୍ଥିତ ଦେବପୀଠ । ଗୁପ୍ତେଶ୍ୱରର ଶୋଭା ଅତ୍ୟନ୍ତ ମନଲୋଭା । ଲୋକାରଣ୍ୟରୁ ଦୂରରେ ଗୁପ୍ତ ଭାବେ ରହୁଥିବାରୁ ଠାକୁର ହେଉଛନ୍ତି ଗୁପ୍ତେଶ୍ୱର । ପାହାଡ଼ ଏପାରି ଓଡ଼ିଶା, ଆରପାରି ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ । ଦୁର୍ଗମଗିରି ଜଙ୍ଗଲ ରାସ୍ତା ଦେଇ ତିନୋଟି ରାଜ୍ୟରୁ ଲକ୍ଷାଧିକ ଭକ୍ତ ଆସି ଠୁଳ ହୁଅନ୍ତି । ବଡ଼ ପ୍ରତ୍ୟକ୍ଷ ଈଶ୍ୱର, ସମସ୍ତଙ୍କ ବିଶ୍ୱାସ ମନର ଗୁପ୍ତ ଇଚ୍ଛାକୁ ପୂରଣ କରନ୍ତି ଗୁପ୍ତେଶ୍ୱର । ଏହି ପୀଠଟି ଗୋଟାଏ ଛୋଟ ବଖରା ସଦୃଶ । ବିରାଟ ଶିବଲିଙ୍ଗ । ଗୁପ୍ତେଶ୍ୱରଙ୍କୁ 'ନୀଳଶମ୍ଭୁ' ଭାବେ ଏଠାରେ ପୂଜା କରାଯାଏ । ଗୁପ୍ତେଶ୍ୱର ରହିଛନ୍ତି ରାମଗିରି ପର୍ବତର ଏକ ବିଶାଳ ଗୁମ୍ଫାରେ । କୋଲାବନଦୀ ଗୁପ୍ତେଶ୍ୱର ଗୁହାର ପାଦଧୌତ କରି ଅବିରତ ଭାବେ ବହି ଚାଲିଛି । ଗୁହାଟି ବିଶାଳ ଶାଳ, ଅନ୍ୟ ବୃକ୍ଷ ଓ ପାହାଡ଼ ଦ୍ୱାରା ବେଷ୍ଟିତ । ଭଗବାନ ଶ୍ରୀରାମ ବନବାସ କାଳରେ ଏହି ରାମଗିରି ମଧ୍ୟ ଦେଇ ଦଣ୍ଡକାରଣ୍ୟରେ କିଛି କାଳ ରହିଥିବା ପୁରାଣରୁ ଜଣାଯାଏ । ତାଙ୍କ ନାମରେ ଏହି ପର୍ବତମାଳା 'ରାମଗିରି' ନାମରେ ନାମିତ । ରାମଚନ୍ଦ୍ର ପ୍ରଥମେ ଏଠାରେ ଶିବଙ୍କ ପୂଜା କରିଥିବା ସଂପର୍କରେ ପୌରାଣିକ କିମ୍ବଦନ୍ତୀ ରହିଛି । ମହାକବି କାଳିଦାସଙ୍କ ଚରିତ ମହାକାବ୍ୟ 'ମେଘଦୂତ'ରେ ମଧ୍ୟ 'ରାମଗିରି' ସଂପର୍କରେ ବର୍ଣ୍ଣିତ ଅଛି । ଏତଦ୍‌ବ୍ୟତୀତ ପାଇକପଡ଼ାର ଶିବ ମନ୍ଦିର ବୈପାରିଗୁଡ଼ାର ବୀରଶାମ୍ଭ ମୂର୍ତ୍ତି, ରାୟଗଡ଼ାର ମଝିଘରିଆଣୀ, ମୁଦୁଲିପଡ଼ାର ସୀତାକୁଣ୍ଡ, ନନ୍ଦପୁରର ପ୍ରାଚୀନ ସିଂହାସନ ଓ କୋରାପୁଟ, ରାୟଗଡ଼ା, ଜୟପୁର, ନାରାୟଣ ପାଟଣାର ଜଗନ୍ନାଥ ମନ୍ଦିର ଦର୍ଶକ ମନକୁ ଢେର ପ୍ରଭାବିତ କରେ । ଏଠାକାର ନିଘଞ୍ଚ ପାର୍ବତ୍ୟ ଉପତ୍ୟକାରେ ବସବାସ କରି ରହିଥିବା ବିଭିନ୍ନ ଭାଷାରେ କଥା କହୁଥିବା ଡୁଙ୍ଗୁରିଆ କନ୍ଧ, ବଣ୍ଡା ପ୍ରଭୃତି ଅଧିବାସୀ ଏହି ଜିଲ୍ଲାର ଅନ୍ୟ ଏକ ବୈଶିଷ୍ଟ୍ୟ ।

ଫୁଲବାଣୀର 'ଦାରିଙ୍ଗିବାଡ଼ି' ହେଉଛି ଓଡ଼ିଶାର କାଶ୍ମୀର । ପ୍ରକୃତିର ଲୀଳାଖେଳା ସବୁ ଋତୁରେ ଆକର୍ଷଣୀୟ ଏଠାରେ । ଚକାପାଦ ବିରୁପାକ୍ଷ ମନ୍ଦିର ପାଇଁ ପ୍ରସିଦ୍ଧ । ଏଠାରେ ବୃକ୍ଷମାନେ ସବୁବେଳେ ଦକ୍ଷିଣ ଦିଗକୁ ଢଳି ରହିଥାନ୍ତି । ଏ ବିଶେଷତ୍ୱ ବାସ୍ତବରେ ଶିକ୍ଷଣୀୟ ।

ସ୍ଥାପତ୍ୟକଳାର ରାଜ୍ୟ ହେଉଛି ଓଡ଼ିଶା । ପ୍ରାଚୀନ ମହାମନା ରାଜା ମହାରାଜାମାନଙ୍କ ପୃଷ୍ଠପୋଷକତାରେ ବହୁ ଦେବ ମନ୍ଦିର ଓଡ଼ିଆ ଶିଳ୍ପୀ ନିର୍ମାଣ କରି ସେଗୁଡ଼ିକରେ ମୃତପ୍ରାୟ ପ୍ରସ୍ତର ଗାତ୍ରରେ ନିହାଣମୁନରେ କମନୀୟ ଜୀବନ୍ତ ମୂର୍ତ୍ତି ସୃଷ୍ଟି କରିପାରିଛି । ଅଶୋକଙ୍କର ଅନୁଶାସନ ଧଉଳି ଓ ଜଉଗଡ଼ରେ ଏବଂ ଖାରବେଳଙ୍କର ବିଜୟବାର୍ତ୍ତା ଉଦୟଗିରିର ହାତୀଗୁମ୍ଫାରେ ପାଲିଭାଷାରେ ଖୋଦିତ ହୋଇଥିବାର ଦେଖିବାକୁ ମିଳେ । ସୁନ୍ଦରଗଡ଼ର ଉଷାକୋଠି ଓ ମାଣିକମୁଣ୍ଡାର ଗିରିଗହ୍ୱରରେ ଖୋଦିତ ଚିତ୍ରାବଳୀ ଅଜନ୍ତାର ଚିତ୍ରକଳା ସହ ସାମଞ୍ଜସ୍ୟ ରକ୍ଷା କରିଥିବା ହେତୁ ଏହାକୁ ଉତ୍କଳର ଅଜନ୍ତା ବୋଲି କୁହାଯାଏ । ଏତଦ୍‌ବ୍ୟତୀତ ବନ୍ୟଜନ୍ତୁମାନଙ୍କୁ ପ୍ରାକୃତିକ ପରିବେଶ ମଧ୍ୟରେ 'ନନ୍ଦନକାନନ'ରେ ରଖାଯାଇଛି । ଆଦିବାସୀ ବହୁଳ ଓଡ଼ିଶାର ମାଳ ଅଂଚଳ ପର୍ଯ୍ୟଟକମାନଙ୍କର ଅତି ଆଦରଣୀୟ ସ୍ଥଳୀ । ଆଦିବାସୀମାନଙ୍କର ସମାଜ ସଂସ୍କୃତି, ଜୀବନଧାରା, ମେଳା ମହୋତ୍ସବ ଓ ପର୍ବପର୍ବାଣି ଯେକୌଣସି ପର୍ଯ୍ୟଟକଙ୍କୁ ଆନନ୍ଦ ବିଭୋର କରେ । ଓଡ଼ିଆ ଶିଳ୍ପୀ ମନ୍ଦିର ନିର୍ମାଣ କରିବା ସାଂଗକୁ ତା'ହାତର ଚକ୍ମାରେ ସୁନ୍ଦର ସୁନ୍ଦର ହସ୍ତଶିଳ୍ପ ସାମଗ୍ରୀ, ଖଡ଼ି ପଥର ମୂର୍ତ୍ତି, ଶାମୁକାର ସୁନ୍ଦର କାରୁକାର୍ଯ୍ୟ, ପଟ୍ଟଚିତ୍ର, ଚାନ୍ଦୁଆ, ଛତ୍ରି, ଡ୍ରାସ, ତାରକସି କାମ, ଶିଙ୍ଗକାମ ଓ ମନଲାଖି ପାଟମଠା, ଶାଢ଼ୀ ପ୍ରଭୃତି କରିପାରୁଛି । ଏ ସମସ୍ତର ସ୍ୱତନ୍ତ୍ର ତିଆରି ଶୈଳୀ ଓ ଅମୃତହସ୍ତା ଓଡ଼ିଆର ଉତ୍କର୍ଷତାରେ କିଏ ବା ଆତ୍ମବିଭୋର ନହେବ ? ବାସ୍ତବରେ ଏ ପବିତ୍ର ଭୂମିର ନାମ ଉତ୍କର୍ଷତା ଯୋଗୁଁ ଯେ ଉତ୍କଳ, ଏହା ନିଃସନ୍ଦେହ ।

ଓଡ଼ିଶାରେ ପର୍ଯ୍ୟଟନର ସମୟ ହେଲା ଅକ୍ଟୋବର ମାସଠାରୁ ମାର୍ଚ୍ଚ ମାସ ଶେଷ ପର୍ଯ୍ୟନ୍ତ, ମୋଟାମୋଟି ଛଅ ମାସ । ଏହି ମହାର୍ଘ ପର୍ଯ୍ୟଟନ ସଂପଦର ଉପଯୁକ୍ତ ବିନିଯୋଗ ପାଇଁ ରାଜ୍ୟ ପର୍ଯ୍ୟଟନ ବିଭାଗ ପକ୍ଷରୁ ବିଭିନ୍ନ ସ୍ଥାନରେ ପର୍ଯ୍ୟଟନ କାର୍ଯ୍ୟାଳୟମାନ ରହିଛି । ପର୍ଯ୍ୟଟକମାନଙ୍କର ରହିବା ନିମିତ୍ତ ବହୁ ପର୍ଯ୍ୟଟନସ୍ଥଳୀରେ ବଙ୍ଗଳାମାନ ମଧ୍ୟ ରହିଛି । ପର୍ଯ୍ୟଟନ ଶିଳ୍ପର ଭୂୟୋବିକାଶ ନିମିତ୍ତ ରାଜ୍ୟ ସରକାରଙ୍କ ପକ୍ଷରୁ ଦୃଢ଼ ପଦକ୍ଷେପମାନ ନିଆଯାଉଛି । ଓଡ଼ିଆ ରାଜ୍ୟ ପର୍ଯ୍ୟଟନ ନିଗମ ରାଜ୍ୟ ସରକାରଙ୍କ ସହାୟତାରେ ଗଠନ କରାଯାଇଛି । ପର୍ଯ୍ୟଟନର ଉନ୍ନତି ନିମନ୍ତେ ସରକାର ଯତ୍‌ପରୋନାସ୍ତି ଚେଷ୍ଟା କରୁଥିବାବେଳେ ସମସ୍ତ ଭ୍ରମଣ ବ୍ୟବସାୟ ସଂସ୍ଥା, ହୋଟେଲ, ଟ୍ରାଭେଲ ଏଜେଣ୍ଟ, ଟୁର୍ ଅପରେଟର, ପରିବହନ ସଂସ୍ଥା, ହସ୍ତଶିଳ୍ପ ବ୍ୟବସାୟୀ ପ୍ରଭୃତିଙ୍କ ମଧ୍ୟ ପର୍ଯ୍ୟଟନ ଉନ୍ନତିରେ ଦାୟିତ୍ୱ ରହିଛି । ଏତଦ୍‌ବ୍ୟତୀତ ପର୍ଯ୍ୟଟନ ବିଭାଗ ସମେତ ସାଂସ୍କୃତିକ, ପ୍ରତ୍ନତତ୍ତ୍ୱ, ସଡ଼କ, ପରିବହନ, ନିର୍ମାଣ, ଜଙ୍ଗଲ ସଂପୃକ୍ତ ଘରୋଇ ସଂସ୍ଥା, ବ୍ୟକ୍ତି ଓ ଅନୁଷ୍ଠାନ ସହାୟତାରେ ଲୋକମାନଙ୍କର ପର୍ଯ୍ୟଟନ ସଚେତନତା, ସର୍ବୋପରି ଉତ୍ତମ ବ୍ୟବହାରିକ ଜ୍ଞାନ ଓ ସେବା ମନୋଭାବ ବଢ଼ାଇ ପାରିଲେ ଓଡ଼ିଶାକୁ ଅଧିକ ସଂଖ୍ୟକ ବିଦେଶୀ ପର୍ଯ୍ୟଟକ ଆସିପାରିବେ । ସହଯୋଗର ହାତ ବଢ଼ାଇଲେ ସତରେ ପର୍ଯ୍ୟଟନ କ୍ଷେତ୍ରରେ ଆମ ଓଡ଼ିଶା ଯେ ଏକ ନୂତନ ଦିଗନ୍ତ ଉନ୍ମୋଚିତ କରିବ ଏହା ନିଃସନ୍ଦେହ ।

ଏମ୍.ଆଇ.ଜି. ଡ୍ୱାନ୍-୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ଼ କଲୋନୀ
ଭୁବନେଶ୍ୱର - ୧୬

■ ■ ■

# ଶିମିଳିପାଳର ବାଘରାଣୀ ଖଇରୀ

ନିର୍ମଳା କୁମାରୀ ମହାପାତ୍ର

ଶିମିଳିପାଳ ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାର ଏକ ବିଶାଳ ବନଭୂଖଣ୍ଡ । କ୍ଷେତ୍ରଫଳ ତିନିହଜାର ବର୍ଗ କିଲୋମିଟରରୁ ଅଧିକ । ଶିମିଳିପାଳ ଜାତୀୟ ଉଦ୍ୟାନ (ମୟୂରଭଞ୍ଜ ଜିଲ୍ଲା)ର ଆୟତନ ୮୪୫.୭୦ କି.ମି. ଏହା ଚିଠି ସଂଖ୍ୟା ୧୮୭୦୩୮ FFAH /ତା.୬.୮.୮୦ ଓ ଚିଠି ସଂଖ୍ୟା ୧୯୫୨/FFAH, ତା.୧୧.୬.୮୬ ଦ୍ୱାରା ବିଜ୍ଞାପିତ । ଶିମିଳିପାଳ ଅଭୟାରଣ୍ୟ (ମୟୂରଭଞ୍ଜ ଜିଲ୍ଲା)ର ଆୟତନ ୨୨୦୦ ବର୍ଗ କିଲୋମିଟର । ଏହା ଚିଠି ସଂଖ୍ୟା ୩୦୪୬୭/AH, ତା.୩.୧୨.୭୯ ଦ୍ୱାରା ବିଜ୍ଞାପିତ । ଶିମିଳିପାଳ ଅଭୟାରଣ୍ୟ ବା ଜାତୀୟ ଉଦ୍ୟାନର ମାନ୍ୟତା ପାଇବା ପୂର୍ବରୁ ଥିଲା ଏକ ବିସ୍ତୀର୍ଣ୍ଣ ଜଙ୍ଗଲମୁଲକ, ବନ ବିଭାଗୀୟ ଅଧିକାରୀଙ୍କ ଦ୍ୱାରା ପ୍ରଶାସିତ, ସୁରକ୍ଷିତ । ଏହା ଭିନ୍ନ ଭିନ୍ନ ବୃକ୍ଷଲତାରେ ଭରପୂର । ମୁଖ୍ୟତଃ ଏଠାରେ ଶାଳବୃକ୍ଷ ଅଧିକ, କେଉଁଠି ଘଞ୍ଚ ଶାଳ ଜଙ୍ଗଲ ତ କେଉଁଠି ଜଙ୍ଗଲର ସାନ୍ଦ୍ରତା ଟିକିଏ କମ୍ । ତା' ସାଙ୍ଗକୁ ପ୍ରତିଯୋଗିତା କରି ରହିଛି ଶିମିଳିଗଛର ଘନ ଆଚ୍ଛାଦନ । ଶିମିଳିଗଛ, ଶାଳ୍ମଳୀତରୁ, ମହାମହା ଦ୍ରୁମ । ପ୍ରାକ୍ ବସନ୍ତରେ ଲାଲ ଟକ୍ ଟକ୍ ଫୁଲରେ ସଜ୍ଜିତ ହୋଇ ବନରାଜ୍ୟରେ ଫୁଲର ମହୋତ୍ସବ ସୃଷ୍ଟି କରେ । ସତେ ଅବା ବନରାଜାର ଲାଲମୁକୁଟ । ଶିମିଳିଗଛର ଉପସ୍ଥିତିରୁ ପାହାଡ଼ର ନାଆଁ ଶିମିଳିପାହାଡ଼ । ଅଦୂରରେ ବରେହିପାଣି । ଶିମିଳିପାହାଡ଼ ଶବ୍ଦ ଅପଭ୍ରଂଶ ହୋଇ କ୍ରମେ ହୋଇଛି ଶିମୁଳିପାଳ, ଶିମିଳିପାଳ, ଇଂରାଜୀରେ ଉଚ୍ଚାରଣ ଶିମିଲ୍‌ପାଲ୍ (Similpal) ।

ଏଇଠିକାର ମାଟି ଉର୍ବର, ଆଠକାଳି ବାରମାସି ପାଣି, ଝରଣା ଓ ଜଳପ୍ରପାତରେ ସୁନ୍ଦର ଏ ବନଭୂଇଁ । ବନ ପରିବେଶ ପାଇଁ ଅନୁକୂଳ ବାତାବରଣ । ଅଗଣନ ବୃକ୍ଷଲତା, ଅସଂଖ୍ୟ ପ୍ରକାରର ଅର୍କିଡ୍ । ଅନେକ ପ୍ରକାରର ପଶୁପକ୍ଷୀ, ଛୋଟରୁ ବଡ଼ଯାଏ । ହାତୀ, ମୃଗ, ସିଂହ, ବାଘ, ଭାଲୁ, ବାର୍‌ହା, ସମ୍ବର, କୁତ୍ରା, ସାପ, ଗୋଧି ଆଦି । ତା' ସହିତ ପାରା, ଚିଲ, କାପ୍ତା ଆଦି ହରେକ ରକମର ପକ୍ଷୀ ସଂପଦ । ତେବେ ମୁଖ୍ୟ ଅଧିବାସୀ ପଶୁ ହେଲେ ବାଘ ଆଉ ହାତୀ । ମହାବଳ ବାଘ, ଚିତାବାଘ, ଗଧିଆ (ହାଏନା) ଆଉ ହାତୀମାନଙ୍କର ପେଣ୍ଠ ଜାଗା ହେଲା ଏଇ ଶିମିଳିପାଳ ।



ବାଘରାଣୀ ଖଇରୀ

ଶିମିଳିପାଳର କଟିମେଖଳା ପରି ବହିଯାଇଛି ଏକ ପାହାଡ଼ି ଝର ନଈ । ନାଁ ତା'ର ଖଇରୀ । ଏଇ ନଦୀର ଉତ୍ପତ୍ତି ହୋଇଛି ଶିମିଳିପାଳ ପାହାଡ଼ର ମଝାମଝି ଅଂଶରୁ । ମୟୂରଭଂଜ ଜିଲ୍ଲାର ଯଶିପୁରସ୍ଥ ଜଙ୍ଗଲ ବିଭାଗର ଡାକବଙ୍ଗଳା ପାଖ ଦେଇ ଯାଇ ଛଅ ନମ୍ବର ଜାତୀୟ ରାଜପଥ (ଏନ୍.ଏଚ୍.ନଂ-୬) ଏହା ଯୋଗ କରିଛି କଲିକତାକୁ ବମ୍ବେ ସହିତ । ଏଇ ପାଖରେ ଖଇରୀ ନଦୀ ଭଣ୍ଡନ ନଦୀ ସହ ମିଶିଛି । ଖଇରୀ ନଦୀ ଆସିଛି ନୈରତ କୋଣରୁ, ଭଣ୍ଡନ ନଦୀ ଆସିଛି ପୂର୍ବ ଦିଗରୁ । ଦୁଇ ନଦୀର ସମ୍ମିଶ୍ରଣରୁ ଉତ୍ପନ୍ନ ନଦୀର ନାମ ହେଲା - 'ଖଇରୀ-ଭଣ୍ଡନ ନଦୀ' । ପାଖରେ ବହିଯାଉଛି ଆଉ ଏକ ନଦୀ, ନାମ ହେଲା ସାଞ୍ଜୋ । ଏହାର ମୁହଁ ପୂର୍ବଦିଗକୁ, ବଙ୍ଗୋପସାଗର ଆଡ଼କୁ । ମାତ୍ର ଖଇରୀ ନଦୀର ମୁହଁ ପଶ୍ଚିମ ଦିଗକୁ । ଏଇ ଖଇରୀ ନଦୀକୂଳର ଏକ ପଥରଗୁମ୍ଫାରୁ ଖଡ଼ିଆ ଜାତିର ଲୋକେ ପାଇଥିଲେ ମହାବଳବାଘ (Royal Bengal Tiger) ଶିଶୁଟିଏ, ଏକ ମାଈଛୁଆ । ଖଇରୀ ନଦୀତୀରରୁ ପ୍ରାପ୍ତ ହୋଇଥିବାରୁ ବାଘଶିଶୁର ନାମ ରଖାଯାଇଥିଲା ଖଇରୀ । ତାକୁ ପାଳି ଥିଲେ ବନବିଭାଗର ଅଧିକାରୀ ସରୋଜ ରାୟ ଚୌଧୁରୀ ଆଉ ନିହାରନଳିନୀ ଦେବୀ । ସେଦିନର ଟିକି ବାଘଶିଶୁ ପରବର୍ତ୍ତୀ କାଳରେ ହେଲା ବାଘରାଣୀ ଖଇରୀ, ଶିମିଳିପାଳର ସର୍ବଶ୍ରେଷ୍ଠ ଆକର୍ଷଣ ।

ଏବେ ପ୍ରଶ୍ନଟିଏ ମହାବଳ ବାଘଛୁଆ ମଣିଷ ହାତକୁ ଆସିଲା କିପରି ? ୧୯୭୪ ମସିହା ଅକ୍ଟୋବର ମାସର କଥା । ଖଇରୀ ନଦୀତଟର ପାଖାପାଖି ଥିବା ଜେନାବିଲ ଗାଁରେ ଅଧିକାଂଶ ଆଦିବାସୀ, କେତେଜଣ ଗ୍ରାମବାସୀ ସେମାନଙ୍କର ଜୀବିକା ଅନ୍ୱେଷଣରେ ସକାଳୁ ବାହାରି ଯାଇଥିଲେ ଜଙ୍ଗଲକୁ । ଆଳୁ, କନ୍ଦା, ଝୁଣା, ମହୁ ଆଦି ଖୋଜିବା ଉଦ୍ଦେଶ୍ୟରେ ସେମାନଙ୍କର ଅଭିଯାନ । ସେମାନଙ୍କ ମଧ୍ୟରୁ ଚାରିଜଣଙ୍କର ନାମ ଉଲ୍ଲେଖଯୋଗ୍ୟ, ସେମାନେ ହେଲେ - ବିଦିଆ, ବିଲନ୍ଦା, ଗୌର ଆଉ କଳାକାର । ବୁଲୁବୁଲୁ ସେମାନେ ଲକ୍ଷ୍ୟ କଲେ ମହାବଳ ବାଘୁଣୀ ଛୁଆଟିକୁ ଗୁମ୍ଫାରେ ଛାଡ଼ି ଶିକାର ପାଇଁ ବାହାରିଗଲା । ଓର ଉଣ୍ଡି ବିଲନ୍ଦା ଓ ଗୌର ଝପଟି ଯାଇ ଛିଣ୍ଡାକନା ପକାଇ ବାଘଛୁଆଟିକୁ ପଥର ସନ୍ଧିରୁ ଉଠାଇ ଆଣି ପ୍ରାଣ ବିକଳରେ ଗାଁକୁ ଧାଇଁଲେ । ରାତିଟା କୌଣସି ପ୍ରକାର ଛେଳି ଦୁଧ ପିଆଇ ରଖିଲେ । ସକାଳୁ ସକାଳୁ କୁଅ ଦଉଡ଼ିରେ ବାନ୍ଧି ଜେନାବିଲ ଗାଁରୁ ବାହାରିଲେ ଯଶିପୁର ଉଦ୍ଦେଶ୍ୟରେ । ଦେଢ଼ଦିନ ଚାଲି ଚାଲି ବାଘପିଲାକୁ ନେଇ ଯଶିପୁର ଡାକବଙ୍ଗଳାରେ ଦାଖଲ କରିଥିଲେ ସେମାନେ । ସେଇ ଛୁଆ ସେତେବେଳେ ଭୁଆ ବିରାଡ଼ି ପରି ଦିଶୁଥିଲା । ଦେହରେ ତା'ର କୃମି ହୋଇଥିଲା, ମାଆ (ବାଘୁଣୀ ମାଆ) ପାଖରେ ଥିଲେ ବଞ୍ଚି ଥାଆନ୍ତା କି ନାହିଁ ସନ୍ଦେହ । ତେବେ ସେ ଛୁଆ ବନ ବିଭାଗୀୟ ଅଧିକାରୀ ସରୋଜ ରାୟଚୌଧୁରୀ ଓ ନିହାର ନଳିନୀ ଦେବୀଙ୍କର ଅତି ଯତ୍ନରେ ଘରର ଝିଅପରି ବଢ଼ିଲା, ମଣିଷ ପରିବାରରେ ବାଘୁଣୀ ହେଲା ଶ୍ରଦ୍ଧେୟା ଆଦରଣୀୟ କନ୍ୟା ।

ମଣିଷ ହାତକୁ ଆସିଲା ବେଳକୁ ବାଘଛୁଆ (ଖଇରୀ)ର ଓଜନ ଥିଲା ୬ କିଲୋଗ୍ରାମ ୨୦୦ ଗ୍ରାମ (୬.୨ କି.ଗ୍ରା) । ଆଉ ନାକଟିପରୁ ଲାଙ୍ଗୁଳ ପର୍ଯ୍ୟନ୍ତ ଦୈର୍ଘ୍ୟ ଥିଲା ୮୮ ସେଣ୍ଟିମିଟର, ଅର୍ଥାତ୍ ୦.୮୮ ମିଟର ଏକ ଗୁଲଗୁଲିଆ କୁନି ବାଘୁଣୀଟିଏ । ସେତେବେଳକୁ ତା'ର ବୟସ ହୋଇଥିଲା ଆନୁମାନିକ ତିନିମାସ । ତିନିବର୍ଷ ପୂରିଲା ବେଳକୁ ତା' ଦେହରେ ଯୌବନର ପ୍ରଭାବ । ଦୈର୍ଘ୍ୟ ହୋଇଥିଲା ୨୭୨ ସେ.ମି. (୨.୭୨ ମିଟର), ଉଚ୍ଚତା ୯୧ ସେ.ମି. (୦.୯୧ ମିଟର) ଆଉ ଓଜନ ହୋଇଥିଲା ୨୦୦ କି.ଗ୍ରା (ଦୁଇ କୁଇଣ୍ଟାଲ) । ଏଥିରୁ ଖଇରୀ ପ୍ରତି ଶ୍ରୀ ରାୟଚୌଧୁରୀ ଓ ନିହାରନଳିନୀ ଦେବୀଙ୍କର ପ୍ରଯତ୍ନର ମାତ୍ରା ଅବଧାରଣା କରାଯାଇପାରେ ।

ମାନବ ସ୍ନେହରେ ପରିବର୍ଦ୍ଧିତ ଖଇରୀ ନିହାରନଳିନୀ ଦେବୀଙ୍କୁ ତା'ର ମାଆ ଭାବି ନେଇଥିଲା । ବନ୍ୟଜନ୍ତୁ ଗବେଷକ ଶ୍ରୀ ରାୟଚୌଧୁରୀଙ୍କୁ ବାପା ଭାବିଥିଲା । ମାଆଶାଢ଼ୀର ମୁଚୁଳା ଉପରେ ମୁଣ୍ଡରଖି ଶୋଉଥିଲା । ମାଆ ସହ ସମାନ ଶେଯରେ ମାଆ ଛାତି ଉପରେ ଆଗଗୋଡ଼ର ପଞ୍ଝା ପକାଇ ନିଦ ପରେ ନିଦ ଯାଉଥିଲା । ଖାଉଥିଲା ମାଆ/ବାପାଙ୍କ ହାତରୁ । ଭୋକ ହେଲେ ଖଇରୀ କୁଁ କୁଁ, ୟାଉଁ କ୍ୟାଉଁ ଶବ୍ଦ କରି ଖାଇବାକୁ ମାଗେ । ମାଙ୍କଡ଼ର ମାଂସ ଓ ଅଣ୍ଡାର କେଶର ଥିଲା ତା'ର ଅତିପ୍ରିୟ ଖାଦ୍ୟ । ମାଙ୍କଡ଼ର ଫଡ଼ିଆ ଧରି ସେ ଅନେକ ସମୟ ରକଟୁଥାଏ । ପ୍ରାତଃ ଭୋଜନରେ ଖଇରୀକୁ ଦିଆଯାଉଥିଲା - ଦୁଇଟି ଚେମେଣି ଚଡ଼େଇ, ଦି'ଟା କାପ୍ତା, ଗୋଟିଏ ପାରାମାଂସର କିମା, ଗୋଟିଏ କଜଳପାତିର କଳିଜା । ସେ ପିଉଥିଲା କ୍ଷୀର ବା ଅମୂଲକ୍ଷୀର । ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଅମୂଲ କ୍ଷୀର ସହ Protinex ମିଶାଯାଉଥିଲା ।

ଦିନ ଦି' ପହରରେ ଖଇରୀକୁ ଅଲଗା ମାଂସ ଦିଆଯାଉଥିଲା ଯଥା- ଖାସି ମାଂସ, ଛେଳି, ହରିଣ, ବାର୍‌ହା, କୁଟ୍ରା, ଚଉଶିଙ୍ଘା, ଠେକୁଆ, ମାଙ୍କଡ଼- ଯାହା ଯେତେବେଳେ ମିଳିଲା, ତା'ର ମାଂସ ଖଇରୀକୁ ଦିଆଯାଉଥିଲା । ବଗର ମାଂସ ସେ ଅତି ଆଦରରେ ଖାଉଥିଲା, ମାତ୍ର କାଉ, ବିଲୁଆ ବା ଶିଆଳପତିନୀର ମାଂସ ଛୁଉଁ ନଥିଲା । ତା'ପାଇଁ ଦି'ଟା ପକ୍ଷୀ ଶିକାର କରାଗଲେ ସେ ଅସନ୍ତୋଷ ପ୍ରକାଶ କରେ । ଆହୁରି ଅଧିକ ଶିକାର କରିବା ପାଇଁ ତା'ର ପାଳକପିତାଙ୍କୁ ସେ ପ୍ରବର୍ତ୍ତାଏ । ତା'ର ଖାଦ୍ୟ ପାଇଁ ଅଧିକ ସଂଖ୍ୟକ ପାରା ବା ଅନ୍ୟ କିଛି ପକ୍ଷୀ ଦେଖାଇଲେ ସେ ଭାରି ଖୁସି ହୋଇ ବଙ୍ଗଳା ସାରା ଘୁରିବୁଲେ ଯେମିତି ଆମ ଘରର ପିଲାଏ ପିଠାପଣା ଦେଖିଲେ ଖୁସି ହୁଅନ୍ତି । ଖଇରୀର ପେଟ ଫାମ୍ପିଲେ ବା ଖାଦ୍ୟ ଯୋଗୁଁ ଅନିୟମିତତା ଦେଖାଗଲେ ତାକୁ ଭାସ୍କରଲବଣ ଦିଆଯାଉଥିଲା । ଥଣ୍ଡା ଧରିଲେ ତାକୁ ଔଷଧ ଓ ସିରାପ୍ ମଧ୍ୟ ଦେଉଥିଲେ ତା'ର ପାଳକ ପିତା/ମାତା ।

ଖଇରୀ ଛୋଟ ବେଳେ ଡବ୍‌ରେ ଗାଧୋଉଥିଲା । ବଡ଼ ହେଲାରୁ ସେ ନିଜେ ଯାଇ ବାସଗୃହ ପାଖର ଚମ୍ପାନଳା ଝରଣାର ସ୍ୱଚ୍ଛଜଳରେ ଡିଆଁ ଡିଇଁ କରି ଗାଧୋଉ ଥିଲା । କରାଇକଟା ନଦୀଟି ତାଙ୍କର ବଙ୍ଗଳାଠାରୁ ଅତି ଅଳ୍ପ ଦୂରତାରେ ବହି ଯାଉଥାଏ । ଖଇରୀ ସେଥିରେ ସ୍ନାନ କରୁଥିଲା । ବେଳେ ବେଳେ ଧାନବିଲରେ ଥିବା ପାଣିକୁ ଡେଇଁ ପେଟ ଲାଙ୍ଗୁଳ ବୁଡ଼ାଇ ବେଶ୍ ଭଲ ଭାବରେ ସେ ସ୍ନାନ କରୁଥିଲା । ଦେହର ପାଣି ନିଗିଡ଼ିବା ପର୍ଯ୍ୟନ୍ତ ସେ ଖରାରେ ଠିଆ ହୋଇ ଦେହକୁ ଶୁଖାଉଥିଲା । କୁକୁର ସହ ସାଙ୍ଗ ହେଲେ ମଧ୍ୟ କୁକୁରଙ୍କ ପରି ଧୂଳି ଦେହରେ ପକାଉ ନଥିଲା କି ଧୂଳିଧୂସର ହେଉ ନଥିଲା । ସେ ଝାଳଗନ୍ଧ ଆଦୌ ସହୁ ନଥିଲା, ଅତି ପରିଷ୍କାର - ପରିଚ୍ଛନ୍ନ ପ୍ରିୟ ଥିଲା । ଗାଧୁଆ ଘରେପରିସ୍ରା କରୁଥିଲା ଓ ପାଇଖାନାରେ ଝାଡ଼ା ଯାଉଥିଲା ।

ଖଇରୀ ପାଇଁ ୨୪ ଘଣ୍ଟିଆ ପ୍ରହରୀ ବ୍ୟବସ୍ଥା ଥିଲା । ହରିଶ୍ ତାକୁ ଜଗୁଥିଲା । ଖଇରୀ ମୁକ୍ତ ଭାବେ ଥିବାରୁ ଜଙ୍ଗଲକୁ ବୁଲି ଯାଉଥିଲା ଘରକୁ ନ ଫେରିଲେ ତା'ର ପାଳକପିତା ଶ୍ରୀ ରାୟଚୌଧୁରୀ ଫ୍ଲାସ୍ ଲାଇଟ୍ ଓ ଜିପ୍ ଧରି ତାକୁ ଖୋଜୁଥିଲେ । ଅନ୍ୟ ବାଘଠାରୁ ସେ ଅଲଗା ବା ସ୍ୱତନ୍ତ୍ର ଥିଲା ତା'ର ଆଚରଣ ଓ ସଂସ୍କାର । ଚିହ୍ନଟ କରିବା ପାଇଁ ତା' ବେକରେ ଗୋଟିଏ ବେଲ୍ଟ ବାନ୍ଧି ଦିଆଯାଇଥିଲା । ସେ ବଙ୍ଗଳାର ବଗିଚାରେ ବାଘା ନାମକ ଏକ କୁକୁର ସହ ଖେଳୁଥିଲା । ବାଘା (କୁକୁର) ଓ ଖଇରୀ ଦୁହେଁ ଏକାଠି ହେଲେ ଶିମିଳିପାଳର ଘଞ୍ଚ ଜଙ୍ଗଲର ଅନ୍ଧିସନ୍ଧି ଭିତରେ ବି ସେମାନଙ୍କଠାରୁ କେହି ଲୁଚି ରହିପାରିବ ନାହିଁ । ବାଘାର ମାଆ ବ୍ଲାକି ସହ ମଧ୍ୟ ଖଇରୀର ବନ୍ଧୁତା

ଥିଲା । ବାଘା ମରିଯିବା ପରେ ଜମ୍ବୁ ନାମକ ଆଉ ଏକ କୁକୁର ସହ ସେ ଖେଳକୁଦ କରୁଥିଲା ।

ସବୁଠୁଁ ବେଶୀ ସମୟ ସେ କାଟୁଥିଲା ତା'ର ପାଳିକା ମାଆ ନିହାରନଳିନୀ ଦେବୀଙ୍କ ସହ । ତାଙ୍କ ସହ ଖେଳୁଥିଲା, ତାଙ୍କ ପାଖରେ ଗେଲ ହେଉଥିଲା । ମାନ-ଅଭିମାନ ବି କରୁଥିଲା । ଜାଣିଶୁଣି ଲୁଚି ମାଆକୁ ଖୋଜଉଥିଲା । ମାଆର ଖଇରୀ ଡାକରେ ଉହୁଁ ଉହୁଁ କରି ଜବାବ ଦେଇ ପାଖକୁ ଆସି ଦେହରେ ଘଷି ହୋଇ ସ୍ନେହ ନିବେଦନ କରୁଥିଲା । ଭୁଲ୍ କରୁଥିଲେ ଗୋଡ଼ରେ ନେସି ହୋଇ କ୍ଷମା ପ୍ରାର୍ଥନା କରୁଥିଲା ।

ଖଇରୀର ପାଳକପିତା ତଥା ବନଜନ୍ତୁ ଗବେଷକ ଶ୍ରୀ ରାୟଚୌଧୁରୀ ତାକୁ ଅନେକ ଜାଗା ବୁଲେଇ ନେଉଥିଲେ । ଦୁଷ୍ଟ ହେଲେ ଶାସନ କରୁଥିଲେ । ଖଇରୀ ତାଙ୍କ ପାଖରେ ଆଦର ପାଇଁ ଅଳି କରୁଥିଲା ତା'ର ବାଘ ଭାଷାରେ ଗାଉଁ ଗାଉଁ ହୋଇ ।

ଖଇରୀର ଚରାଭୂଇଁ ଥିଲା ଶିମିଳିପାଳ ଜଙ୍ଗଲ । ବିଶେଷତଃ ଯଶିପୁର ଡାକବଙ୍ଗଳା । ପାଖାପାଖି ଚହଲା ଜଙ୍ଗଲ, ଭଞ୍ଜବସା ଜଙ୍ଗଲ, ମେଘାସନୀ ଜଙ୍ଗଲ, ବାର୍ହା କାମୁଡ଼ା ଜଙ୍ଗଲ, ନଅଣା ଜଙ୍ଗଲ ଆଦି ସେ ବୁଲି ଯାଉଥିଲା । କଇରାକଚା ପାହାଡ଼ରୁ ଗିଲାବେଡ଼ା ପାହାଡ଼ ପର୍ଯ୍ୟନ୍ତ ସେ ଦଉଡ଼ିଧପଡ଼ି ବ୍ୟାୟାମ କରୁଥିଲା ଯେପରି । କେବେ କେବେ ଲେମ୍ବୁଦାନା ପାହାଡ଼, ଚନ୍ଦନ ପାହାଡ଼ ବା ମେସିନ୍ ପାହାଡ଼ରୁ ଚହଲାରାସ୍ତା ଦେଇ ସେ ଘରକୁ ଫେରୁଥିଲା । ତା'ର ଘର ହେଲା ମଣିଷର ଘର, ବନ ବିଭାଗର ଅଧିକାରୀ ତଥା ବିଶିଷ୍ଟ ବନ୍ୟପଶୁ ଗବେଷକ ସରୋଜ ରାୟଚୌଧୁରୀଙ୍କର ସରକାରୀ ବଙ୍ଗଳା, ଶ୍ରୀ ରାୟଚୌଧୁରୀ ଜୁଆଡ଼େ କ୍ୟାମ୍ପ କରନ୍ତି ଖଇରୀ ସିଆଡ଼େ ଯାଏ । କ୍ୟାମ୍ପରେ ତା' ପାଇଁ ସ୍ୱତନ୍ତ୍ର ଭାଡ଼ି ସଜଡ଼ାଯାଏ ଶୋଇବା ପାଇଁ । ଘରେ ତ ସ୍ୱତନ୍ତ୍ର ଖଟ ଓ ନରମ ଗଦି ବିଛଣା ସବୁବେଳେ ସଜିଲ୍ ଥାଏ । ଖଇରୀ ଖୁବ୍ ଭୋରରୁ ଉଠେ । କିନ୍ତୁ ବିଛଣାରେ ଚେଇଁ ରହି ଅଳସେଇଙ୍କ ପରି ବହୁତ ସମୟ ଗଡ଼ପଡ଼ ହେଉଥାଏ । ରାତିରେ ଜୋତା, ବନ୍ଧୁକ ବାକ୍ସ ଆଦି କାମୁଡୁଥାଏ । ମୂନିଆଁ ଦାନ୍ତର କସରତ ପାଇଁ ସେ ଜିନିଷପତ୍ର ଧରି ଖେଳାଖେଳି କରୁଥାଏ ।

ଖଇରୀ ତା'ର ମନୁଷ୍ୟ ମାତା-ପିତା (ପାଳକ)ଙ୍କ ସହ ଯାଇଥିଲା ଟାଟାନଗର ବିଶିଷ୍ଟ ପକ୍ଷୀ ବିଶାରଦ ସାଲିମ୍ ଅଲ୍ଲୀଙ୍କୁ ଶିମିଳିପାଳ ନିମନ୍ତ୍ରଣ କରିବା ପାଇଁ । ଜିପ୍‌ଗାଡ଼ିର ଆଗ ବା ପଛସିଟ୍‌ରେ ବସି ଗସ୍ତ କରି ଯିବାଟା ତ ତା'ପକ୍ଷେ ଏକ ସାଧାରଣ କଥା । ବେଳେ ବେଳେ ସେ ଜିପ୍ ଚଳାଇବାର ଉଦ୍ୟମ କରୁଥିଲା । ଥରେ ଥରେ ସେ ସାମନା ସିଟ୍‌ରୁ ଉଠିଯାଇ ଜିପ୍‌ର ବନେଟ୍ ଉପରେ ବସେ । ଜିପ୍ ଯେଉଁଠି ରହେ, ସେଇଠି ଲୋକଙ୍କର ଭିଡ଼ ଜମେ । ଜିପ୍‌ର ବନେଟ୍ ଉପରେ ବସିଲେ ସେ ଚାରିଆଡ଼ ଅନେଇ ଦେଖିପାରେ । ସବୁଲୋକ ତାକୁ ଭଲ କରି ଦେଖିପାରନ୍ତି । ଖଇରୀ ନିଜେ ମଧ୍ୟ ନିଜକୁ ପ୍ରଦର୍ଶିତ କରି ଆତ୍ମସନ୍ତୋଷ ଲାଭ କରୁଥାଏ ।

ଥରେ ଖଇରୀ ଜିପ୍‌ରେ ଭୁବନେଶ୍ୱର ଆସୁଥାଏ । ବାଟରେ ଭଗତ୍‌ପୁର ଓ ଟାଙ୍ଗୀ ବିଦ୍ୟାପୀଠ ପାଖରେ ଗାଡ଼ି କିଛି ସମୟ ରହିଥିଲା । ଲୋକେ ମହାବାଳ ବାଘୁଣୀକୁ ଜିପ୍ ଭିତରେ ମଣିଷ ଗହଣରେ ଦେଖି ଚମତ୍କୃତ ହୋଇଥିଲେ । ଶ୍ରୀ ରାୟଚୌଧୁରୀ ଲେଖନ୍ତି ନିମ୍ନ ଭାବେ - 'ଟାଙ୍ଗୀ ବିଦ୍ୟାପୀଠର ସ୍କୁଲ ପିଲାମାନେ ଖଇରୀ ଦେହରେ ଟିକିଏ ଟିକିଏ ହାତ ଛୁଆଁଇ ଦେଇ ଯେପରି ସ୍ୱର୍ଗ ପାଇଲେ । ଏତେ ଲୋକଙ୍କର ଭିଡ଼, ଏତେ ପିଲାଙ୍କର କିଚିରିମିଚିରି ସତ୍ତ୍ୱେ ଖଇରୀ ଥିଲା ଯଥେଷ୍ଟ ଶାନ୍ତ ଓ ସୌଷ୍ଠବାନ୍ୱିତା' - ବାଘରାଣୀ ଖଇରୀ, ପୃଷ୍ଠା-୨୪ ।

ପୁନଶ୍ଚ, ସେ କହନ୍ତି ଯେ ଖଇରୀକୁ ଦେଖିବା ପାଇଁ କଟକ ନଗରର ବକ୍‌ସିବଜାର ଛକରେ ଟ୍ରାଫିକ୍ ଜାମ୍ ହୋଇଯାଇଥିଲା । ସେ ସର୍କିଟ୍ ହାଉସ୍, କଟକରେ ରହୁଥିଲା ପାଳକ ପିତା ଶ୍ରୀ ରାୟଚୌଧୁରୀଙ୍କ ସହ । କଟକର Zoological Seminarରେ ସେ ଥିଲା ପ୍ରଧାନ ଆକର୍ଷଣ ।

ଖଇରୀର ବିଭିନ୍ନ ସ୍ଥାନ ଭ୍ରମଣ ନେଇ ଶ୍ରୀ ରାୟଚୌଧୁରୀ ଲେଖନ୍ତି ନିମ୍ନ ଭାବେ - 'ବାରିପଦାରୁ କଟକ ଓ କଟକରୁ ଟାଙ୍ଗୀ । ଟାଙ୍ଗୀରେ ଖଇରୀକୁ ଦେଖିବାକୁ ଅନେକ ଲୋକ ଘେରି ଗଲେ । ଟାଙ୍ଗୀରୁ ଭୁବନେଶ୍ୱର । ଭୁବନେଶ୍ୱରରେ ଯେଉଁଠି ରହିଲୁ, ସେଠି ସେମାନଙ୍କ ପୋଷା କୁକୁର ସହିତ ଅନେକ ସମୟ ଖେଳିଲା ଖଇରୀ । ସେଦିନ ମୋର ଜଣେ ପୁରୁଣା ବନ୍ଧୁ ତାଙ୍କର ମାର୍କିନ୍ ଶାଶୁଙ୍କ ସହିତ ଆସି ପାନ୍ଥନିବାସରେ ରହୁଥା'ନ୍ତି । ମୋ' ଘରେ ମୁକ୍ତ ଭାବରେ ଗୋଟାଏ ମହାବଳ ବାଘ ଆସି ରହିଛି ଶୁଣି ମୋ' ପାଖକୁ ଫୋନ୍ କରି କହିଲେ ଯେ ଯଦି ଖଇରୀକୁ ପାନ୍ଥ ନିବାସ ଅଣାଯାଇପାରନ୍ତା, ତାହାହେଲେ ତାହା ତାଙ୍କ ସ୍ତ୍ରୀ ଓ ଶାଶୁଙ୍କ ପକ୍ଷରେ ହୁଅନ୍ତା ଗୋଟାଏ ବାସ୍ତବ ଅନୁଭୂତି (Real Experience) ।

ସନ୍ଧ୍ୟା ହୋଇ ନଥାଏ । ମୁଁ ଖଇରୀକୁ ନେଇ ମୋ' ଘରୁ ବାହାରିଲି ପାନ୍ଥନିବାସ । ମୋ' ପଛେ ପଛେ ଚାଲିଥାଏ ଖଇରୀ । ରାସ୍ତାସାରା ଜଣକ ପରେ ଜଣେ ଲୋକ ଜମି ଯାଇ ପ୍ରାୟ ଗୋଟିଏ କ୍ଷୁଦ୍ର ଜନତା ଖଇରୀର ଅନୁସରଣ କରୁଥାଆନ୍ତି । ପାନ୍ଥନିବାସରେ ପହଞ୍ଚି ଉପର ମହଲାକୁ ଗଲୁ । ଘର ଭିତରେ ମୋ' ବନ୍ଧୁଙ୍କର ମାର୍କିନ୍ ଶାଶୁ ମୁହଁ ଘୋଡ଼େଇ ଖଟ ଉପରେ ଶୋଇଥାଆନ୍ତି । ଖଇରୀ ତଳୁ ଗୋଟାଏ ଡିଆଁରେ ସିଧା ଯାଇ ବସିପଡ଼ିଲା ଭଦ୍ରମହିଳାଙ୍କ କମ୍ବଳ ଉପରେ ଯେମିତି ଲୋକେ ଘୋଡ଼ା ଉପରେ ବସନ୍ତି । କ'ଣଟାଏ ବସି ପଡ଼ିଲା ବୋଲି ଭଦ୍ରମହିଳା ମୁହଁ ଉପରୁ କମ୍ବଳ କାଢ଼ିଲା ବେଳକୁ ତାଙ୍କ ମୁହଁଠାରୁ ମାତ୍ର କେଇ ଇଞ୍ଚଛାଡ଼ି ଗୋଟାଏ ଜୀଅନ୍ତା ମହାବଳବାଘ (Royal Bengal Tiger)ର ବିରାଟ ମୁହଁ । x x x ସେମାନେ ସମସ୍ତେ ମିଶି ଖଇରୀକୁ ଅତ୍ୟନ୍ତ ଉପଭୋଗ କଲେ ଓ ମୁଁ ତାଙ୍କୁ ଏ ସୁଯୋଗ ଦେଇଥିବାରୁ ମୋତେ ପ୍ରଚୁର ଧନ୍ୟବାଦ ଦେଲେ ।

ପାନ୍ଥନିବାସର ଉପରମହଲାରୁ ଫେରୁ ଫେରୁ କୌତୁହଳୀ ହୋଇ 'ତଳେ କ'ଣ ଅଛି' - ଦେଖିବାକୁ ଯାଇ ହଠାତ୍ ଖଇରୀ

ଖସିପଡ଼ିଲା ତଳମହଲାକୁ ଯେଉଁଠାରେ ଜଣେ ସୁନ୍ଦରୀ ରିସେପ୍‌ସନିଷ୍ଟ ପ୍ରାୟତଃ ବସି ଥାଆନ୍ତି । ଖଇରୀ ପଡ଼ିଲା ପାଖର ଗୋଟାଏ କୁସନ୍ ଉପରେ ଏବଂ ଚଉକିର କାଠରେ ବାଜି ଗୋଟା ଦାନ୍ତମୂଳରୁ ବେଶ୍ କିଛି ରକ୍ତସ୍ରାବ ହେଲା । କିନ୍ତୁ ମୁଁ ଦେଖୁଛି ଖଇରୀ ଉପରୁ ପଡ଼ିଲାବେଳେ ରିସେପ୍‌ସନିଷ୍ଟଙ୍କ ମୁହଁର ସବୁତକ ରକ୍ତ ଯେମିତି କିଏ ମୁହୂର୍ତ୍ତକ ମଧ୍ୟରେ ଶୋଷି ନେଇଥିଲା । ଘରକୁ ଫେରି ଯାଉଁ ଯାଉଁ ହୋଇ ତା'ର ବାଘ ଭାଷାରେ ତା'ର ମାଆକୁ ଏ ଦୁର୍ଘଟଣା କଥା ଅନେକ ସମୟ ଧରି ବୁଝାଇଥିଲା ଖଇରୀ । (ବାଘରାଣୀ ଖଇରୀ, ପୃଷ୍ଠା-୪୬-୪୭)

ଖଇରୀ ମଣିଷ ସମାଜରେ ଅତ୍ୟଧିକ ଆଦର ଯତ୍ନରେ ରହିଥିଲା ଘରର ଝିଅପରି । ବାଘା, ବ୍ଲାକି, ଜମ୍ବୁ, ଭାଇନାଙ୍କ ପରି କୁକୁରମାନେ ଥିଲେ ତା'ର ଖେଳସାଥୀ । ହେଲେ ସେ ଅପରିଚ୍ଛନ୍ନ ବୁଲା କୁକୁର ବଙ୍ଗଳା ହତାକୁ ପଶି ଆସିବା କଥାକୁ ଆଦୌ ସହି ପାରୁ ନଥିଲା । ଥରେ ଗୋଟାଏ ବୁଲା କୁକୁରକୁ ମାରି ତା'ର ରକ୍ତନାଳ ଚାଟିଥିବାରୁ ଜଳାତଙ୍କ ରୋଗରେ ଆକ୍ରାନ୍ତ ହୋଇ ଖଇରୀ ୧୯୮୧, ମାର୍ଚ୍ଚ ୨୮ ତାରିଖ ଦିନ ୩.୨୯ ମିନିଟ୍ ସମୟରେ ପ୍ରାଣତ୍ୟାଗ କଲା । ସମଗ୍ର ଚୌଧୁରୀ ପରିବାର, ଯଶିପୁର ଡାକବଙ୍ଗଳାର ସମସ୍ତ କର୍ମଚାରୀ ତଥା ଅଗଣିତ ପଶୁପ୍ରେମୀ ଜନତାକୁ ଶୋକ ସାଗରରେ ଭସାଇ ଦେଇ ସେ ଚାଲିଗଲା ଆଉ ପାରିକୁ ।

ଶ୍ରୀ ରାୟଚୌଧୁରୀଙ୍କ ଡାଏରୀ ସୂତ୍ରରୁ ପ୍ରକାଶ ଯେ, ଖଇରୀ ତାଙ୍କ ପାଖକୁ ଆସିଥିଲା ୫ ତାରିଖ ଅକ୍ଟୋବର, ୧୯୭୪ ମସିହାରେ । ଖଇରୀର ଜନ୍ମ ସମ୍ଭବତଃ ୫ ଅଗଷ୍ଟ, ୧୯୭୪ । ତା'ର ଦେହାନ୍ତ ହେଲା ୨୮ ମାର୍ଚ୍ଚ, ୧୯୮୧ ମସିହା । ତା'ର ସମୁଦାୟ ଜୀବନ କାଳ ଥିଲା ୬ ବର୍ଷ ୭ ମାସ ୨୪ ଦିନ । ମୋଟ ୩୩୬ ସପ୍ତାହ ଆଉ ୨୩୬୨ ଦିନ । ଘଟଣାବହୁଳ ସାଢ଼େ ଛଅ ବର୍ଷର ଜୀବନକାଳ ହେଲା ବନ୍ୟଜନ୍ତୁ ଗବେଷଣାର ମୂଲ୍ୟବାନ୍ ସାମଗ୍ରୀ ।

ଖଇରୀକୁ ନେଇ ତା'ର ପାଳକ ପିତା ଓ ମାତାଙ୍କର ଅନେକ ସ୍ୱପ୍ନ ଥିଲା । ତା'ର ପାଳକ ପିତା ଶ୍ରୀ ରାୟଚୌଧୁରୀ ଭାବିଥିଲେ - ଖଇରୀର ପିଲାକୁ ସେ ପାଳିବେ, ବିଶ୍ୱ ଦରବାରରେ ପଶୁ ଓ ମନୁଷ୍ୟର ସ୍ନେହ ସଂପର୍କ ପ୍ରତିପାଦିତ କରିବେ । ତାଙ୍କର ଗବେଷଣା ବିଶ୍ୱ ବନ୍ୟପ୍ରାଣୀ ଇତିହାସରେ ଏକ ଦୃଷ୍ଟାନ୍ତ ହୋଇ ରହିବ । ମାତ୍ର ହାୟ ! ଖଇରୀକୁ ଝୁରି ଝୁରି ଶ୍ରୀ ରାୟଚୌଧୁରୀ ୧୯୮୨, ମଇ ୪ ତାରିଖରେ ପ୍ରାଣତ୍ୟାଗ କଲେ । ଖଇରୀର ସ୍ମୃତିକୁ ରୋମନ୍ଥନ କରି ସାହସିନୀ ମହିଳା ଶ୍ରୀମତୀ ନିହାରନଳିନୀ ଦେବୀ ଏବେ ରାଜ୍ୟ ସ୍କାଉଟ-ଗାଇଡ୍ ଅଫିସ୍‌ରେ ଜଣେ କର୍ମକର୍ତ୍ତା ଭାବେ କାର୍ଯ୍ୟ କରୁଛନ୍ତି ।

ଖଇରୀ ଉପରେ ଏକ ଡକ୍ୟୁମେଣ୍ଟାରୀ ଚଳଚ୍ଚିତ୍ର (Documentary Film) କରିଥିଲେ ଶ୍ରୀ ଭାସ୍କର ସାହୁ । ଖଇରୀ ଉପରେ ଇଂରାଜୀରେ ଲେଖା ବାହାରିଥିଲା The Heritage, 1987 ଜୁନ୍ ସଂଖ୍ୟାରେ । ଓଡ଼ିଆ ପତ୍ରିକା 'ସମାବେଶ'ରେ ବାଘରାଣୀ ଖଇରୀ ବିଷୟରେ ଧାରାବାହିକ ଲେଖା ପ୍ରକାଶିତ ହୋଇଥିଲା । 'ବାଘରାଣୀ ଖଇରୀ' ପୁସ୍ତକ ଲେଖକ ଅଖିଳମୋହନ ପଟ୍ଟନାୟକଙ୍କ ଦ୍ୱାରା ଶ୍ରୀ ରାୟଚୌଧୁରୀଙ୍କ ଡାଏରୀକୁ ଅବଲମ୍ବନ କରି ଲେଖାଯାଇଛି । ଏହା ସମ୍ବାଦ ପ୍ରକାଶନ - ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍ ଦ୍ୱାରା ପ୍ରକାଶିତ ହୋଇ ଅଗଣିତ ପାଠକକୁ ଖଇରୀ ବିଷୟରେ ଧାରଣା ହେଉଅଛି ।

**ସହାୟକ ପୁସ୍ତକ :** ବାଘରାଣୀ ଖଇରୀ - ପ୍ରକାଶନ-୧୯୯୨, ପ୍ରକାଶକ- ଇଷ୍ଟର୍ଣ୍ଣ ମେଡ଼ିଆ ଲିମିଟେଡ୍, ଭୁବନେଶ୍ୱର ।

ଟିଚର ଏଡୁକେଟର୍
ଡି.ଆଇ.ଇ.ଟି, ଟିକାବାଲି, କନ୍ଧମାଳ

---

## ଓଡ଼ିଶା ଅନଗ୍ରସର ବର୍ଗ ଉନ୍ନୟନ ସମବାୟ ନିଗମ ଦ୍ୱାରା ୫୯ ଜଣ ହିତାଧିକାରୀ ଉପକୃତ

ରାଜ୍ୟରେ ବସବାସ କରୁଥିବା ଅନଗ୍ରସରବର୍ଗଙ୍କ ଅର୍ଥନୈତିକ ଉନ୍ନତି ପାଇଁ ଜାତୀୟ ଅନଗ୍ରସର ବର୍ଗ ଉନ୍ନୟନ ଅର୍ଥ ନିଗମଠାରୁ ପାଣ୍ଠି ଆଣି ଓଡ଼ିଶା ଅନଗ୍ରସର ବର୍ଗ ଉନ୍ନୟନ ସମବାୟ ନିଗମ ରାଜ୍ୟରେ ବିଭିନ୍ନ ପ୍ରକାର ଯୋଜନା କାର୍ଯ୍ୟକାରୀ କରୁଅଛି ।

ଏହି ନିଗମ ଉଚ୍ଚ ମୂଲ୍ୟଯୁକ୍ତ ଆୟକାରୀ ଧନ୍ଦା ଓ ଉଦ୍ୟୋଗ ଯଥା- ବସ୍ ସର୍ଭିସ୍, କାର୍, ଟ୍ରକ୍, ଅଟୋରିକ୍ସା, ଟ୍ରାକ୍ଟର ଓ ହୋଟେଲ ଆଦି କରିବା ପାଇଁ ଅନଗସ୍ରର ବର୍ଗର ହିତାଧିକାରୀଙ୍କୁ ଋଣ ପ୍ରଦାନ କରିଥାଏ ।

୨୦୦୪-୦୫ ଆର୍ଥିକ ବର୍ଷରେ ଉକ୍ତ ଯୋଜନାରେ ନିଗମ ୧୦୭.୭୭ ଲକ୍ଷ ଟଙ୍କା ହିତାଧିକାରୀଙ୍କ ନିମନ୍ତେ ବ୍ୟୟବରାଦ ରହିଥିବା ସ୍ଥଳେ ୨୦୦୫ ମସିହା ଫେବୃଆରୀ ମାସ ସୁଦ୍ଧା ୪୦.୩୯ ଲକ୍ଷ ଟଙ୍କା ଋଣ ସହାୟତା ୫୯ ଜଣ ପଛୁଆବର୍ଗ ହିତାଧିକାରୀ ନିଗମଠାରୁ ନେଇଛନ୍ତି ବୋଲି ଓଡ଼ିଶା ଅନଗ୍ରସର ବର୍ଗ ଅର୍ଥ ଉନ୍ନୟନ ନିଗମ ସୂତ୍ରରୁ ପ୍ରକାଶ ।

# ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ଗୋପାଳପୁର

ସୁରେନ୍ଦ୍ରନାଥ ପଣ୍ଡା

ଆମ ଦେଶ ଭାରତବର୍ଷର ବିଭିନ୍ନ ରାଜ୍ୟ ମଧ୍ୟରେ ଆମ ରାଜ୍ୟ ଓଡ଼ିଶା ପର୍ଯ୍ୟଟନ ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରକୁ ଦୃଷ୍ଟିକୁ ନେଲେ ଦେଖାଯାଏ ଯେ କୋଣାର୍କ, ପୁରୀ, ଭୁବନେଶ୍ୱର, ଲଳିତଗିରି, ଉଦୟଗିରି, ରତ୍ନଗିରି ପ୍ରଭୃତି ସ୍ଥାନ ପ୍ରମୁଖ ସ୍ଥାନ ଅଧିକାର କରିଛନ୍ତି । କିନ୍ତୁ ଓଡ଼ିଶାର ଉପକୂଳ ଅଞ୍ଚଳରେ ଥିବା ବିଭିନ୍ନ ସମୁଦ୍ର ତଟବର୍ତ୍ତୀ ଅଞ୍ଚଳମାନଙ୍କ ମଧ୍ୟରୁ ଚାନ୍ଦିପୁର, ପାରାଦ୍ୱୀପ, ପୁରୀ ଏବଂ ଗୋପାଳପୁର ଅନ୍ୟତମ ।

ଆମ ଗଞ୍ଜାମ ଜିଲ୍ଲାରେ ଅନେକ ପର୍ଯ୍ୟଟନ ସ୍ଥଳୀ ରହିଅଛି । ସେମାନଙ୍କ ମଧ୍ୟରୁ ଆର୍ଯ୍ୟପଲ୍ଲୀ, ଆଠଗଡ଼ପାଟଣା, ବ୍ରହ୍ମପୁର, ବୁଗୁଡ଼ା, ରମ୍ଭା, ଗିରିସୋଲା, ହୁମା, ଗୋପାଳପୁର, ଜଉଗଡ଼, କୁଳାଡ଼, ମହୁରୀକାଳୁଆ, ମନ୍ତ୍ରିଡ଼ି, ନାରାୟଣୀ, ନିର୍ମଳଝର, ସୋନପୁର, ପୋତାଗଡ଼, ତପ୍ତପାଣି, ଆସିକା ଏବଂ ତାରାତାରିଣୀ ପ୍ରଧାନ ।

ଗଞ୍ଜାମ ଜିଲ୍ଲାର ବିଭିନ୍ନ ସ୍ଥାନ ନିର୍ଦ୍ଦିଷ୍ଟ କେତେକ ଘଟଣା ପାଇଁ ପ୍ରମୁଖ ସ୍ଥାନ ଅଧିକାର କରିଥିଲେ ମଧ୍ୟ ଗୋପାଳପୁର ସେମାନଙ୍କ ମଧ୍ୟରେ ଅନନ୍ୟ । ଗୋପାଳପୁର ଏକ ଛୋଟ ସହର । ଦକ୍ଷିଣ ଓଡ଼ିଶାର ମୁଖ୍ୟ ସହର ବ୍ରହ୍ମପୁରଠାରୁ ଏହା ଷୋହଳ କିଲୋମିଟର ଦୂରରେ ବଙ୍ଗୋପସାଗର କୂଳରେ ଅବସ୍ଥିତ । ଏହି ସହର ଇଂରେଜ ଶାସନ ଅମଳରୁ ଏକ ପ୍ରମୁଖ ବନ୍ଦର ଭାବେ ତିଷ୍ଠି ରହିଛି ।

ଗଞ୍ଜାମ ଜିଲ୍ଲାର ବନ୍ଦର କଥା ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଗୋପାଳପୁର ସହର ନିକଟରେ ଥିବା ମନସୁରକୋଟାଠାରେ ଖ୍ରୀଷ୍ଟପୂର୍ବରୁ ବନ୍ଦର ଗଢ଼ି ଉଠିଥିଲା । କିନ୍ତୁ କାଳକ୍ରମେ ବିଭିନ୍ନ ପ୍ରାକୃତିକ ତଥା ରାଜନୈତିକ ଘଟଣାକ୍ରମେ ମନସୁରକୋଟା ବନ୍ଦର ପରେ ଖ୍ରୀଷ୍ଟପର ଦ୍ୱିତୀୟ ଶତାବ୍ଦୀରେ ପାଲୁର ବନ୍ଦର ଏବଂ ସପ୍ତଦଶ ଶତାବ୍ଦୀରେ ଗଞ୍ଜାମ ବନ୍ଦର ଗଢ଼ି ଉଠିଲା । ଏହିସବୁ ବନ୍ଦର ବିଭିନ୍ନ କାରଣ ବଶତଃ ଗୁରୁତ୍ୱ ହରାଇବାରୁ ଗୋପାଳପୁର ବନ୍ଦର ଗଢ଼ି ଉଠି ବ୍ୟବସାୟିକ ଦୃଷ୍ଟିରୁ ଇଂରେଜ ସରକାରଙ୍କୁ ଶକ୍ତିଶାଳୀ କରିବାରେ ସହାୟକ ହେଲା । ଏହି ବନ୍ଦର ଦେଇ ବିଭିନ୍ନ ଜିନିଷ ଆମଦାନୀ ଓ ରପ୍ତାନୀ ହେଉଥିଲା ।

ବର୍ତ୍ତମାନ ଓଡ଼ିଶା ସରକାର ଗୋପାଳପୁର, ଧାମରା, ବାହାବଳପୁର, ସୁବର୍ଣ୍ଣରେଖା ମୁହାଣ, ଚାନ୍ଦିପୁର, ଇଞ୍ଚୁଡ଼ି, ଚୂଡ଼ାମଣୀ, ଅସ୍ତରଙ୍ଗ, ବାଲିହରଚଣ୍ଡୀ, ପାଲୁର, ବାହୁଦା, ଜଟାଧାର ମୁହାଣ ଏବଂ ବରୁଣେଇ ମୁହାଣ ଭଳି ୧୩ଟି ବନ୍ଦରକୁ ସରକାରୀ ମାନ୍ୟତା ଦେଇଛନ୍ତି । ସେମାନଙ୍କ ମଧ୍ୟରେ ଗୋପାଳପୁର ଅନ୍ୟତମ ।

ଗୋପାଳପୁର ସହର ୧୯°୩୧' ଉତ୍ତର ଅକ୍ଷାଂଶ ଓ ୮୫° ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଗୋପାଳପୁର ସହରଟି ବଙ୍ଗୋପସାଗର ଉପକୂଳରେ ଥିବାରୁ ଏହାର ଜଳବାୟୁ ଖୁବ୍ ସ୍ୱାସ୍ଥ୍ୟପ୍ରଦ । ଏଣୁ ବର୍ଷସାରା ଏଠାରେ ଉଭୟ ଦେଶ ଓ ବିଦେଶରୁ ହଜାର ହଜାର ପର୍ଯ୍ୟଟକ ଆସି ସମୟ ଅତିବାହିତ କରନ୍ତି । ବ୍ରହ୍ମପୁର ସହରଠାରୁ ପ୍ରତି ମୁହୂର୍ତ୍ତରେ ଏହି ବନ୍ଦର ସହରକୁ ବସ୍ ଚଳାଚଳର ସୁବିଧା ରହିଅଛି । ବ୍ରହ୍ମପୁର ସହର ଦକ୍ଷିଣ-ପୂର୍ବ ରେଳପଥର ଏକ ପ୍ରମୁଖ ସ୍ଥାନ । ଏଣୁ ଯେଉଁ ଯାତ୍ରୀମାନେ ଗୋପାଳପୁର ଭ୍ରମଣରେ ଆସିବା ପାଇଁ ଇଚ୍ଛାପ୍ରକାଶ କରନ୍ତି, ସେମାନେ ବ୍ରହ୍ମପୁର ରେଳ ଯୋଗେ ଆସି ସେଠାରୁ ଟ୍ୟାକ୍ସିରେ ମଧ୍ୟ ଗୋପାଳପୁର ଆସି ପାରିବେ । ବିଦେଶୀ ପର୍ଯ୍ୟଟକମାନେ ମଧ୍ୟ ବିମାନ ଯୋଗେ ଭୁବନେଶ୍ୱର ଆସି ସେଠାରୁ ସ୍ଥଳଭାଗରେ ଟ୍ୟାକ୍ସି ଯୋଗେ ଗୋପାଳପୁର ଭ୍ରମଣରେ ଆସିପାରନ୍ତି ।

ଏହି ବନ୍ଦର ସହରରେ ଉଚ୍ଚ ବିଦ୍ୟାଳୟ, ଇଂରାଜୀ ମାଧ୍ୟମ ବିଦ୍ୟାଳୟ, ସମବାୟ ତାଲିମ କେନ୍ଦ୍ର, ପୋଲିସ୍ ଥାନା, ଡାକଘର, ଦୂରସଂଚାର ବିଭାଗ କାର୍ଯ୍ୟାଳୟ, ବତୀଘର, ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କ୍, ସରକିଟ୍ ହାଉସ୍, ଡାକବଙ୍ଗଳା, ସରକାରୀ ଚିକିତ୍ସାଳୟ, ଯୁବ ଛାତ୍ରାବାସ ଇତ୍ୟାଦି ରହିଛି । ବେସରକାରୀ ଉଦ୍ୟମରେ ମଧ୍ୟ ଅନେକ ହୋଟେଲ ଏବଂ ଲଜିଙ୍ଗ୍ ଏଠାରେ ଗଢ଼ି ଉଠିଛି । ଏଣୁ ଗୋପାଳପୁରଠାରେ ସମୟ କଟାଇବା ଯେତିକି ସ୍ୱାସ୍ଥ୍ୟପ୍ରଦ ସେତିକି ନିରାପଦ ମଧ୍ୟ । ଏଣୁ ବିଭିନ୍ନ ଛୁଟି କାଟିବା ନିମନ୍ତେ ଦେଶବିଦେଶରୁ ଅନେକ ପର୍ଯ୍ୟଟକ ଏହି ସହରକୁ ଆସନ୍ତି । ସକାଳର ସୂର୍ଯ୍ୟୋଦୟ ଓ ସନ୍ଧ୍ୟାର ସୂର୍ଯ୍ୟାସ୍ତର ମଜା ଏଠାରେ ନିଅନ୍ତି ।

ଗୋପାଳପୁର ସହରଟି ଖୁବ୍ ଶାନ୍ତ । ଏଠାରେ ଜନସାଧାରଣ ମଧ୍ୟ ଅତି ପରୋପକାରୀ । ଏହି ସହର ନଡ଼ିଆ ବଗିଚା, ତାଳ ଗଛ ଏବଂ ଝାଉଁ ଜଙ୍ଗଲରେ ପୂର୍ଣ୍ଣ । ଏହି ସହର ନିକଟରେ ଥିବା ଧବଳେଶ୍ୱର ମହାପ୍ରଭୁ ବର୍ଷସାରା ଭକ୍ତଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ସେହିଭଳି ଏହି ସହର ନିକଟରେ ଥିବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର

ଏକ ମନୋରମ ପରିବେଶରେ ଗଢ଼ି ଉଠିଛି । ଏହା ନିକଟରେ ଆର୍ଯ୍ୟପଲ୍ଲୀ (ଗୋପାଳପୁର ବନ୍ଦର) ଏବଂ ସ୍ଥଳବାହିନୀର ଏକ କ୍ଷେପଣାସ୍ତ୍ର ତାଲିମ କେନ୍ଦ୍ର (ଗୋଳାବାନ୍ଧ) ପ୍ରତିଷ୍ଠିତ ହୋଇଛି ।

ଗୋପାଳପୁରର ନାମକରଣକୁ ନେଇ ଦୁଇଟି ମତବାଦ ଲୋକଙ୍କ ମୁଖରୁ ଶୁଣାଯାଏ । କେତେକ କହନ୍ତି ଯେ ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଗୋପାଳ ରାଓ ନାମରେ ଜଣେ ନୋଳିଆ ସମୁଦ୍ର ଉପକୂଳରେ ବସତି ସ୍ଥାପନ କରିବା ଯୋଗୁଁ ଏହି ସହର ଗୋପାଳରାଓ ପେଟା ନାମରେ ନାମିତ ହୋଇ ପରେ ଏହା ଗୋପାଳପୁର ନାମରେ ପରିଚିତ ହୋଇଛି । କିନ୍ତୁ ଅନ୍ୟ କେତେକଙ୍କ ମତରେ ପ୍ରଭୁ ଗୋପାଳକୃଷ୍ଣ ଏହି ଅଞ୍ଚଳର ଆରାଧ୍ୟ ଦେବତା । ତେଣୁ ତାଙ୍କରି ନାମ ଅନୁଯାୟୀ ଏହି ସହରର ନାମ ଗୋପାଳପୁର ହୋଇଛି । ଗୋପାଳପୁର ସହରରେ ୧୯୬୧ ମସିହା ମଇ ୨୦ ତାରିଖଠାରୁ ବିଜ୍ଞାପିତ ଅଞ୍ଚଳ ପରିଷଦ ଗଠିତ ହୋଇ ନିର୍ବାଚିତ ଜନ ପ୍ରତିନିଧିଙ୍କ ଦ୍ୱାରା ଶାସିତ ହେଉଅଛି । ଏହି ବିଜ୍ଞାପିତ ଅଞ୍ଚଳ ପରିଷଦ ସହରର ପରିମଳ, ସ୍ୱାସ୍ଥ୍ୟ ସେବା, ପର୍ଯ୍ୟଟକଙ୍କ ସୁବିଧା ଇତ୍ୟାଦି ପ୍ରତି ଯଥେଷ୍ଟ ଦୃଷ୍ଟି ଦେଉଛି । ଗୋପାଳପୁର ମଧ୍ୟ ଏକ ବିଧାନସଭା ନିର୍ବାଚନ ମଣ୍ଡଳି ଅଟେ । ଏଣୁ ଯଥାର୍ଥରେ କହିବାକୁ ଗଲେ ଗୋପାଳପୁର ବନ୍ଦର ଓଡ଼ିଶା ପର୍ଯ୍ୟଟନ ମାନଚିତ୍ରରେ ଏକ ପ୍ରମୁଖ ସ୍ଥାନ ଅଧିକାର କରି ଭାରତର ପର୍ଯ୍ୟଟନ ମାନଚିତ୍ରକୁ ସମୃଦ୍ଧି କରିବାରେ ସହାୟକ ହୋଇଛି ।

ଆଇନଜୀବୀ
ଆସିକା

---

# ତିଲେଇଝରର ଜଳ ଅମଳ ପ୍ରକଳ୍ପ ଗ୍ରାମର ଲୋକମାନଙ୍କୁ ଆତ୍ମନିର୍ଭରଶୀଳ କରାଇପାରିଛି

## (ସଫଳ କାହାଣୀ)

ସରକାରଙ୍କ ଆର.ଏଲ୍.ଟି.ଏ.ପି. (ଏ.ସି.ପି.) ଆର୍ଥିକ ଯୋଜନାରେ ନୂଆପଡ଼ା ଜିଲ୍ଲାରେ ଜଳ ଅମଳ ପ୍ରକଳ୍ପ ନିର୍ମାଣ ନିମନ୍ତେ ପାଞ୍ଚବର୍ଷିଆ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଅଛି । ଏହି ଯୋଜନାର ସଫଳ ରୂପାୟନ ସ୍ୱରୂପ ୬୯୩ ଲୋକ ସଂଖ୍ୟା ବିଶିଷ୍ଟ ତିଲେଇଝର ଏକ ଆଦିବାସୀ ବହୁଳ ଗ୍ରାମ । ଏହି ଗ୍ରାମର ଝରିଆ ନାଳରେ ଏକ ଜଳ ଅମଳ ପ୍ରକଳ୍ପ ନିର୍ମାଣ ନିମନ୍ତେ ଗତ ୨୦୦୨ ଡିସେମ୍ବର ମାସରୁ ସ୍ଥାନୀୟ ସରକାରୀ ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ପାଞ୍ଚବର୍ଷିଆ ଯୋଜନା ଭିତ୍ତିକ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ସଂପୃକ୍ତ ଗ୍ରାମର ଲୋକମାନଙ୍କୁ ପ୍ରତ୍ୟକ୍ଷ ଭାବେ ସାମିଲ କରି ଜଳ ଅମଳ ପ୍ରକଳ୍ପ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସଂପର୍କରେ ଅବଗତ କରାଗଲା ଏବଂ ପ୍ରକଳ୍ପ କାର୍ଯ୍ୟରେ ଶ୍ରମଭିତ୍ତିକ କାର୍ଯ୍ୟରେ ନିୟୋଜିତ କରାଗଲା । ଉକ୍ତ ଜଳ ଅମଳ ପ୍ରକଳ୍ପର କାର୍ଯ୍ୟ ଉନ୍ନୟନ ପାଇଁ ମୋଟ ୯.୫୧୭ ଲକ୍ଷ ଟଙ୍କା ଓ ୨୮ ମେଟ୍ରିକ୍ ଟନ୍ ବିନିଯୋଗ କରାଯାଇ କାର୍ଯ୍ୟକ୍ରମ ସଫଳତାର ସହିତ କରାଯାଇପାରିଛି । ଆଦିବାସୀ ବହୁଳ ଏହି ଗ୍ରାମର ୧୦୫ ଜଣ ସଦସ୍ୟ/ସଦସ୍ୟାଙ୍କୁ ନେଇ ୭ ଗୋଟି ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇପାରିଛି । ସେମାନଙ୍କର ସାମାଜିକ ଓ ଆର୍ଥିକ ବିକାଶ ପାଇଁ ବିଭିନ୍ନ ସ୍ୱ-ରୋଜଗାରୀ ଧନ୍ଦାରେ ନିୟୋଜିତ କରାଯାଇପାରିଛି । ଯଥା- ପନିପରିବା ଚାଷ, ଗୋ-ପାଳନ, ଛେଳି ପାଳନ, କୁକୁଡ଼ା ପାଳନ ଇତ୍ୟାଦି ଜୀବିକା ନିର୍ବାହରେ ଅନ୍ତର୍ଭୁକ୍ତ କରାଯାଇପାରିଛି । ଉକ୍ତ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କର ଆର୍ଥିକ ମାନଦଣ୍ଡ ବୃଦ୍ଧି ପାଇଛି ଏବଂ ସେମାନଙ୍କର ସଞ୍ଚୟ ଖାତାରେ ମୋଟ ୧,୩୯,୫୬୭ ଟଙ୍କା ସଞ୍ଚୟ କରିଛନ୍ତି । ଏହି ଜଳ ଅମଳ ପ୍ରକଳ୍ପ କାର୍ଯ୍ୟକାରୀ ହେବା ଦ୍ୱାରା ମୋଟ ୫୯୨ ହେକ୍ଟର ଭୌଗଳିକ ଅଞ୍ଚଳ ମଧ୍ୟରୁ ୪୦୬.୩୫ ହେକ୍ଟର ଜମିରେ ଗ୍ରାମବାସୀମାନଙ୍କର ବ୍ୟବହାର ଉପଯୋଗୀ ହୋଇପାରିଛି । ବିଶେଷ କରି ମୃତ୍ତିକା କ୍ଷୟ ନିୟନ୍ତ୍ରଣ ପାଇଁ ୨୦ ହେକ୍ଟର ଜମିରେ ବନୀକରଣ, ଜିଲା ପଥର ବନ୍ଧ, ସ୍ରୋତ ନିୟନ୍ତ୍ରଣ ବନ୍ଧ, ଧୋଡ଼ା ନିୟନ୍ତ୍ରଣ ବନ୍ଧ ଏବଂ କ୍ଷୁଦ୍ର ଝର ପୋଖରୀ ବନ୍ଧ ଆଦି ଆନୁଷଙ୍ଗିକ ଜଳ ଅମଳ ପ୍ରକଳ୍ପର ଭିତ୍ତିଭୂମି ବିକାଶ ଦିଗରେ ଧ୍ୟାନ ଦେଇ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରାଯାଇପାରିଛି । ସର୍ବୋପରି ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ଓ ପରିମଳ, ବନୀକରଣ ଆଦି ଉପରେ ଲୋକମାନଙ୍କୁ ସଚେତନତା କରାଯାଇପାରିଛି । ଉକ୍ତ ଗ୍ରାମର ମୋଟ ୧୦୨ ଜଣ ସଦସ୍ୟମାନଙ୍କୁ ନେଇ ୧୬ ଗୋଟି ବ୍ୟବହାରକାରୀ ଦଳ ଗଠନ କରାଯାଇଅଛି । ସେମାନେ ଏହି ଜଳ ଅମଳ ପ୍ରକଳ୍ପ ଉପରେ ପ୍ରତ୍ୟକ୍ଷ ଭାବେ ନିର୍ଭର କରି ନିଜ ଜମିରେ ଉନ୍ନତ ପଦ୍ଧତିରେ ବିଭିନ୍ନ ଫସଲ କରିପାରୁଛନ୍ତି । ହୀତାଧିକାରୀମାନଙ୍କୁ କୃଷି କାର୍ଯ୍ୟକ୍ରମରେ ଜଳ ଅମଳ ବ୍ୟବହାର, ସ୍ୱ-ଉପାର୍ଜନ କ୍ଷମ ବୃତ୍ତିଭିତ୍ତିକ କାର୍ଯ୍ୟରେ ଦକ୍ଷତା ବୃଦ୍ଧି ଏବଂ ଆର୍ଥିକ ପରିଚାଳନା ଦିଗରେ ପ୍ରଶିକ୍ଷଣ ପ୍ରଦାନ କରାଯାଇ ସେମାନଙ୍କର ବହୁବିଧ ଉନ୍ନତି ସାଧନ ପାଇଁ ବିଶେଷ ଧ୍ୟାନ ଦିଆଯାଇଛି । ବର୍ତ୍ତମାନ ଉକ୍ତ ୧୬ ଗୋଟି ବ୍ୟବହାରକାରୀ ଦଳ ଜଳ ଅମଳ ଉନ୍ନୟନ ପାଣ୍ଠିରେ ମୋଟ ୮୦,୧୨୫ ଟଙ୍କା ସଞ୍ଚୟ କରିପାରିଛନ୍ତି । ଏହି ଗ୍ରାମର ଲୋକମାନେ ଉକ୍ତ ଜଳଅମଳ ପ୍ରକଳ୍ପ ଦ୍ୱାରା ଉପକୃତ ହୋଇ ନିଜେ ସ୍ୱାବଲମ୍ବୀ ହୋଇପାରିଛନ୍ତି । ପୂର୍ବରୁ ଉକ୍ତ ଗ୍ରାମର ଲୋକମାନେ ବାହାରକୁ କାମ କରିବାକୁ ଯାଉଥିଲେ । କିନ୍ତୁ ବର୍ତ୍ତମାନ ସେମାନେ ବାହାରକୁ ଦାଦନ ଖଟିବାକୁ ନଯାଇ ସରକାରଙ୍କର ବିଭିନ୍ନ ସ୍ୱରୋଜଗାରୀ ଋଣ ଯୋଜନାରେ ଋଣ ଆଣି ଆତ୍ମନିର୍ଭରଶୀଳ ହୋଇପାରିବା ସହିତ ନିଜର ଆର୍ଥିକ ମାନଦଣ୍ଡ ବୃଦ୍ଧି କରିପାରିଛନ୍ତି । ଶୁଷ୍କାଞ୍ଚଳଭାବେ ପରିଚିତ ଥିବା ଏହି ଗ୍ରାମର ଲୋକମାନେ ୨୦ ହେକ୍ଟର ପରିମିତ ଉଜୁଡ଼ା ଜଙ୍ଗଲର ବନୀକରଣ କରି ପରିବେଶକୁ ସବୁଜ ବନାନୀରେ ପରିଣତ କରିପାରିଛନ୍ତି । ଜଳ, ଜମି, ଜଙ୍ଗଲ ଓ ଜନ୍ତୁ ଆଦି ସଂପଦର ସଦ ଉପଯୋଗ କରି ଗ୍ରାମ୍ୟ ଜୀବନର ସରସ ସୁନ୍ଦରତାକୁ ବୃଦ୍ଧି କରିପାରିଛନ୍ତି । ନିଜ ପିଲାମାନଙ୍କୁ ନିୟମିତ ବିଦ୍ୟାଳୟକୁ ପାଠପଢ଼ିବା ପାଇଁ ପଠାଉଛନ୍ତି । ମାଦକ ଦ୍ରବ୍ୟ ସେବନରୁ ମୁକ୍ତ ରହି ଉତ୍ତମ ସ୍ୱାସ୍ଥ୍ୟ ଓ ପରିବେଶ ପ୍ରତି ବେଶ୍ ସଚେତନ ହୋଇ କର୍ମଠ ହୋଇପାରିଛନ୍ତି । ଗତ ୨୦୦୪ ଜାନୁଆରୀ ମାସରେ ଓଡ଼ିଶା ରାଜ୍ୟ କୃଷି ଉତ୍ପାଦନ କମିଶନର, ଜଳ ଅମଳ ପ୍ରକଳ୍ପ ନିର୍ଦ୍ଦେଶକ, ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନର ପ୍ରମୁଖ ଉକ୍ତ ଗ୍ରାମ ପରିଦର୍ଶନରେ ଆସି ଜଳ ଅମଳ ପ୍ରକଳ୍ପର କାର୍ଯ୍ୟକାରିତା ଉପରେ ଲୋକମାନଙ୍କ ସହିତ ଆଲୋଚନା କରି ସନ୍ତୋଷ ପ୍ରକାଶ କରିଥିଲେ ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ନୂଆପଡ଼ା



# ଓଡ଼ିଶାରେ ବୌଦ୍ଧଧର୍ମ

ବୈକୁଣ୍ଠନାଥ ମହାପାତ୍ର

ଯୁଗେଯୁଗେ ଓଡ଼ିଶା ବହୁଧର୍ମର ପୀଠସ୍ଥଳୀ ରୂପେ ଇତିହାସ ପୃଷ୍ଠାକୁ ମଣ୍ଡନ କରିଛି । ଏହା ବୌଦ୍ଧଧର୍ମର ଲୀଳାଭୂମି ରୂପେ ଇତିହାସ ପୃଷ୍ଠାକୁ ମୁଖରିତ କରିଥିଲା । ତେଣୁ ଏଠାରେ ବହୁ ବୌଦ୍ଧପୀଠ ପ୍ରତିଷ୍ଠିତ ହୋଇଥିବା ସ୍ୱାଭାବିକ । ତନ୍ମଧ୍ୟରୁ ରତ୍ନଗିରି ଥିଲା ଅନ୍ୟତମ । ଏହାର ମହାତ୍ମ୍ୟ କେବଳ ଭାରତରେ କାହିଁକି, ଭାରତ ବାହାରେ ମଧ୍ୟ ପ୍ରସାରିତ ହୋଇଥିଲା । ତା'ଉପରେ ଏକ ସଂକ୍ଷିପ୍ତ ଧାରଣା ଦେବାପାଇଁ ଉକ୍ତ ପ୍ରବନ୍ଧର ଅବଧାରଣା ।

କଟକ ଜିଲ୍ଲାର ଚଣ୍ଡୀଖୋଲଠାରୁ ପ୍ରାୟ ୨୦ କିଲୋମିଟର ଦୂରରେ ଓ ଲଳିତଗିରିର ଉତ୍ତର-ପୂର୍ବକୁ ବିରୂପା ନଦୀର ଶାଖା କେଲୁଅ ନଦୀକୂଳରେ ରତ୍ନଗିରି ଅବସ୍ଥିତ । ଏହା ପ୍ରାଚୀନ କାଳରେ ଏସିଆ ପର୍ବତମାଳାର ଏକ ଅଂଶବିଶେଷ । ଏହି ରତ୍ନଗିରି ଅଷ୍ଟମ ଶତାବ୍ଦୀରେ ଓଡ଼ିଶାର ପ୍ରଖ୍ୟାତ ଭୌମକର ବଂଶର ରାଜତ୍ୱରେ ବିକଶିତ ହୋଇଥିବାର ଜଣାଯାଏ । ଏହି ବଂଶର ପ୍ରଥମ ରାଜାମାନେ ଥିଲେ ମହାଯାନ, ବୌଦ୍ଧଧର୍ମର ପରମ ପୃଷ୍ଠପୋଷକ । ତନ୍ମଧ୍ୟରୁ ଲକ୍ଷ୍ମୀଙ୍କର ପରମୋପାସକ କ୍ଷେମକରଦେବ, ପରମ ତଥାଗତ ଶିବଙ୍କର ଦେବ ଓ ଶୁଭଙ୍କର ଦେବଙ୍କ ନାମ ଉଲ୍ଲେଖଯୋଗ୍ୟ । ତେଣୁ ତାଙ୍କର ରାଜଧାନୀ ବିରଜା ସହର (ଅଧୁନା ଯାଜପୁର)ରେ ଏହି ଧର୍ମ ଶାକ୍ତ ଧର୍ମ ସହିତ ମୁଣ୍ଡଟେକି ଉଠିଥିଲା । ଏହି ସହରର ଦକ୍ଷିଣର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ରତ୍ନଗିରି ସମେତ ୪ଟି ସ୍ଥାନ ସେହି ରାଜାଙ୍କ ପୃଷ୍ଠପୋଷକତାରେ ଅନ୍ୟ ମହାଯାନ ବୌଦ୍ଧଧର୍ମର ପୀଠ ରୂପେ ପ୍ରତିଷ୍ଠା ଅର୍ଜନ କରିଥିଲା । ଅନ୍ୟ ୩ଟି ସ୍ଥାନ ହେଉଛି- ଉଦୟଗିରି, ଲଳିତଗିରି ଓ ଅଳତିଗିର - ସେହି ଏସିଆ ପର୍ବତମାଳାର ଗୋଟିଏ ଗୋଟିଏ ଅଂଶ । ତାହାର ଧ୍ୱଂସାବଶେଷ ବର୍ତ୍ତମାନ ମଧ୍ୟ ଉପରୋକ୍ତ ସ୍ଥାନରେ ଦେଖିବାକୁ ମିଳେ । ରତ୍ନଗିରି ସମେତ ଅନ୍ୟାନ୍ୟ ସ୍ଥାନରେ ବୋଧିସ୍ତମ୍ଭ, ତାରାମୂର୍ତ୍ତି, ବୌଦ୍ଧସ୍ତୂପ ଆଦି ମହାଯାନ ବୌଦ୍ଧକଳାର ନିଦର୍ଶନ କେତୋଟି ପ୍ରତିଷ୍ଠିତ ପୀଠ ମଧ୍ୟରୁ ଅନ୍ୟତମ ଭାବେ ଗଣନା କରାଯାଏ । ମଧ୍ୟଯୁଗୀୟ ଓଡ଼ିଶାରେ ବୌଦ୍ଧଧର୍ମ କେଉଁ ପରିମାଣରେ ବିକଶିତ ହୋଇଥିଲା, ରତ୍ନଗିରି ତାହାର ପ୍ରମାଣ ଦେଇଥାଏ ।

ରତ୍ନଗିରିକୁ କେହି କେହି ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ପ୍ରତିଷ୍ଠିତ ପୁଷ୍ପଗିରି ବିଦ୍ୟାଳୟ ସହିତ ଚିହ୍ନିତ କରାଇଛନ୍ତି । ମାତ୍ର ଅଦ୍ୟାବଧି ତାହା ଏକ ବିବାଦୀୟ ତଥ୍ୟ ହୋଇରହିଛି । ଆର୍.ପି. ଚାନ୍ଦ ଏହି ପୁଷ୍ପଗିରି ଆଧୁନିକ ଯାଜପୁରର ଦକ୍ଷିଣ-ପଶ୍ଚିମ କୋଣରେ ଅବସ୍ଥିତ ହୋଇଥିବାର ମତବ୍ୟକ୍ତ କରିଛନ୍ତି । ତାଙ୍କର ମତକୁ ଗ୍ରହଣ କଲେ, ରତ୍ନଗିରିକୁ ଓଡ଼ିଶାର ପୁଷ୍ପଗିରି ସହିତ କେତେକ ଚିହ୍ନିତ କରିଥାଆନ୍ତି । ଅନ୍ୟ ଏକ ମତାନୁଯାୟୀ ରତ୍ନଗିରି ସମେତ ଅନ୍ୟାନ୍ୟ ବୌଦ୍ଧପୀଠ ଚୀନ୍‌ର ଭ-ତୁ ରାଜ୍ୟର ରାଜାମାନଙ୍କ ପୃଷ୍ଠପୋଷକତାରେ ମୁଣ୍ଡଟେକି ଉଠିଥିଲା । ମାତ୍ର ହୁଏନସାଂଙ୍କ ବିବରଣୀରୁ ଜଣାଯାଏ, ଉପରୋକ୍ତ ରାଜ୍ୟ ୧୪୦୦ ମାଇଲ୍ ପରିଧିର ଥିଲା । ସେ ଦୃଷ୍ଟିରୁ ବିଚାରକଲେ ରତ୍ନଗିରି ଭ-ତୁ ରାଜ୍ୟର ଅନ୍ତର୍ଭୁକ୍ତ ହେବା ଏକ ଭ୍ରମାତ୍ମକ ତଥ୍ୟ । ବରଂ କଳିଙ୍ଗ ହ୍ରାସ ପୁଷ୍ପଗିରିକୁ ଉଦୟଗିରି ଓ ଖଣ୍ଡଗିରି ସହିତ ଚିହ୍ନଟ କରିଥିବା ତଥ୍ୟରେ କିଛିମାତ୍ର ସତ୍ୟତା ଥାଇପାରେ ବୋଲି ଡକ୍ଟର ନବୀନ କୁମାର ସାହୁ ମତବ୍ୟକ୍ତ କରିଛନ୍ତି ।

ସେ ଯାହା ହେଉନା କାହିଁକି, ସପ୍ତମ ଶତାବ୍ଦୀରେ ରତ୍ନଗିରିଠାରେ ପ୍ରତିଷ୍ଠିତ ଆଧାତ୍ମିକ କେନ୍ଦ୍ରଟି ଯେ ଅଷ୍ଟମ ଶତାବ୍ଦୀରେ ଏକ ବିଶ୍ୱବିଦ୍ୟାଳୟର ରୂପ ନେଇଥିଲା, ଏଥିରେ ସନ୍ଦେହ ନାହିଁ । ଏଠାକୁ ଭାରତ ବାହାର ଓ ଭାରତର ବିଭିନ୍ନ ଅଞ୍ଚଳରୁ ବୌଦ୍ଧଧର୍ମର ଉତ୍ସବ ଦିନଗୁଡ଼ିକରେ ବହୁସଂଖ୍ୟକ ଉପାସକ ଆସୁଥିଲେ । ଏହା ମଧ୍ୟ ମଧ୍ୟଯୁଗୀୟ ଭାରତରେ ବୌଦ୍ଧିକ ଯୁଗର ଏକ ପ୍ରଧାନ କେନ୍ଦ୍ର ରୂପେ ଖ୍ୟାତିଲାଭ କରିଥିଲା । 'ପାଗସନ ଜୋଆ ଡାଙ୍ଗ' ନାମକ ଏକ ତିବ୍ବତୀୟ ପୁସ୍ତକରୁ ଜଣାଯାଏ ଯେ ଓଡ଼ିଶାର ରତ୍ନଗିରିଠାରେ ବୌଦ୍ଧ ଖ୍ରୀଷ୍ଟ ଏବଂ ନାରୋପା ନାମଧେୟ ଦୁଇଜଣ ବୌଦ୍ଧ ପଣ୍ଡିତ ଯୋଗାଭ୍ୟାସ କରିଥିଲେ । ସେଠାରେ ବହୁ ଆଚାର୍ଯ୍ୟ ଓ ଶିକ୍ଷକ ରହୁଥିବାର ଜଣାଯାଇଥିଲା । ଏଥିସହିତ ଏଠାରେ ଯୋଗ ଓ ଦର୍ଶନଶିକ୍ଷା ଓ ଗବେଷଣା କରିବାପାଇଁ ବହୁ ଶିକ୍ଷାବିତ୍ ଭାରତର ବିଭିନ୍ନ ଭାଗରୁ ଆସୁଥିଲେ । ଲାମା ତାରାନାଥ କହନ୍ତି ଯେ, ଆଚାର୍ଯ୍ୟ ପିଟୋପାଦ

ସମ୍ବାଲାଠାରେ ଶିକ୍ଷାଗ୍ରହଣ କରି ସିଦ୍ଧିଲାଭ କରିବାପରେ ରତ୍ନଗିରିରେ ଜଣେ ପ୍ରବୃଦ୍ଧ ଶିକ୍ଷକଭାବେ ପ୍ରତିଷ୍ଠା ଅର୍ଜନ କରିଥିଲେ । ସେଠାରେ ତାଙ୍କର ୬ ଜଣ ଶିକ୍ଷକଙ୍କ ମଧ୍ୟରୁ ଅବଧୂତି, ବୋଧିଶ୍ରୀ ଓ ନାରୋପା ତାଙ୍କର ପଞ୍ଚଶିଷ୍ୟ ହୋଇଥିଲେ । ଚୀନ୍ ଗ୍ରନ୍ଥ ମଧ୍ୟ ରତ୍ନଗିରି ସ୍ଥିତ ପ୍ରଖ୍ୟାତ ଯୋଗ କେନ୍ଦ୍ରଟି ଭୌମକର ବଂଶର ରାଜାମାନଙ୍କର ପୃଷ୍ଠପୋଷକତାରେ ଗଢ଼ି ଉଠିଥିବା ତଥ୍ୟରେ ମୁଖରିତ ହୋଇଛି ।

ଏ ସଂପର୍କରେ ଅନ୍ୟ ଜଣେ ଚୀନ୍ ଲେଖକ ୟୁଆନ୍ ଚାଓ ଆଲୋକପାତ କରି କହିଛନ୍ତି ଯେ ପ୍ରଜ୍ଞା ନାମକ ଜଣେ ବିଦ୍ୟାନୁରାଗୀ ପଣ୍ଡିତ ଓଡ଼ିଶାର ଗୋଟିଏ ଆଧ୍ୟାତ୍ମିକ ଶିକ୍ଷାକେନ୍ଦ୍ରରେ ଯୋଗଶିକ୍ଷା କରିଥିଲେ । ତାଙ୍କ ବିଷୟରେ ଅଧିକ ପରିଚୟ ଦେବାକୁ ଯାଇ ସେ ମଧ୍ୟ ଲେଖିଛନ୍ତି ଏହି ପ୍ରଜ୍ଞା କପିସାଠାରେ ଜନ୍ମ ଗ୍ରହଣ କରି ୧୮ ବର୍ଷ ଉତ୍ତର ଭାରତରେ ଶିକ୍ଷା ପାଇବା ପରେ ଉ-ଗ (ଉଚା ବା ଓଡ଼ିଶା)ର ଜନୈକ ରାଜାଙ୍କର ଆଧ୍ୟାତ୍ମିକ ପୀଠରେ ଯୋଗଶିକ୍ଷା କରିଥିଲେ । ସେ ବର୍ଣ୍ଣନା କରିଥିବା ଶିକ୍ଷା କେନ୍ଦ୍ରଟି ରତ୍ନଗିରି ବୋଲି ଐତିହାସିକମାନେ କହିଛନ୍ତି । ସେହିପରି ସିଲଭିଆନ୍ ଲେଭି ଏପିଗ୍ରାଫିଆ ଇଣ୍ଡିକାର ପଞ୍ଚଦଶ ଭାଗରେ ପ୍ରଜ୍ଞା ୧୮ ବର୍ଷ ନାଳନ୍ଦା ସମେତ ଭାରତର ବିଭିନ୍ନ ସ୍ଥାନରେ ଅଧ୍ୟୟନ କରି ସାରିବା ପରେ ଉଚା (ଓଡ଼ିଶା)ର ରାଜାଙ୍କର ଏକ ମଠରେ ଯୋଗ ଓ ଦର୍ଶନ ଶିକ୍ଷା କରିଥିଲେ । ଏହା ଭୌମକର ରାଜତ୍ୱରେ ଉନ୍ମେଷ ହୋଇଥିବା ରତ୍ନଗିରି ବୋଲି ଜଣାଯାଏ । ପୁନଶ୍ଚ ସିଲ୍‌ଭିଆନ ଲେଖିଛନ୍ତି - ଏହି ପ୍ରଜ୍ଞା ଭାରତବର୍ଷରୁ ଚୀନ୍ ଦେଶକୁ ଯାଇ ୭୮୮ ଖ୍ରୀଷ୍ଟାବ୍ଦରେ ସତ ପରିମିତା ସୂତ୍ର ଓ ମହାଯାନ ବୋଧିର ଅନୁବାଦ କରିଥିଲେ ।

ପୁନଶ୍ଚ ଏ ବିଷୟରେ ଅଧିକ ତଥ୍ୟ ଉପସ୍ଥାପନ କରିବାକୁ ଯାଇ ସିଲିଭିଆନ ଲେଭି ଲେଖିଛନ୍ତି ଯେ ୭୮୫ ଖ୍ରୀଷ୍ଟାବ୍ଦରୁ ୮୦୫ ପର୍ଯ୍ୟନ୍ତ ବିସ୍ତୃତ ଚୀନ୍ ସମ୍ରାଟ ଟେ-ଚୋ ସଙ୍ଗଙ୍କ ରାଜତ୍ୱର ଏକାଦଶ ବର୍ଷ ଅର୍ଥାତ୍ ୭୯୫ ଖ୍ରୀଷ୍ଟାବ୍ଦରେ ନିଜ ଦସ୍ତଖତ ଥିବା ଏକ ପାଣ୍ଡୁଲିପି ଉଚାର ବୌଦ୍ଧରାଜା ସମ୍ମାନର ସ୍ମାରକୀ ଭାବେ ତାଙ୍କ ନିକଟକୁ ପ୍ରେରଣ କରିଥିଲେ । ଉଚା ବା ଓଡ଼ିଶାର ଏହି ରାଜାଙ୍କର ନାମ ଖୁଭାବରି ସିଂହ ବୋଲି ଜଣାଯାଏ ଏବଂ ସେହି ପାଣ୍ଡୁଲିପିଟି ଥିଲା ଗଣ୍ଡ ବ୍ୟୁହ ଅଭାତମସବର ଶେଷଭାଗ । ସେହି ସମ୍ରାଟ ମଧ୍ୟ ପ୍ରଜ୍ଞାଙ୍କୁ ଅନୁରୋଧ କରିଥିଲେ ଯେ ସେ ଉଚାଙ୍କର ରାଜାଙ୍କୁ କହି ଉକ୍ତ ପାଣ୍ଡୁଲିପିର ଅନୁବାଦ ତାଙ୍କ ନିକଟକୁ ପଠାଇବେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ରତ୍ନଗିରି ଶିକ୍ଷାକେନ୍ଦ୍ରରେ ଅଧ୍ୟୟନ କରୁଥିବା ପ୍ରଜ୍ଞାଙ୍କୁ ଶୁଭଙ୍କର ସିଂହ ସାଂସ୍କୃତିକ ଦୂତଭାବେ ଚୀନ୍ ସମ୍ରାଟ ଟେ-ଟୋ-ସଙ୍ଗଙ୍କ ନିକଟକୁ ପ୍ରେରଣ କରିଥିଲେ । ଏହି ଶୁଭବର ସିଂହ ଭୌମବଂଶର ରାଜା ଶୋଭବରଙ୍କ ବ୍ୟତୀତ ଅନ୍ୟ କେହି ନୁହଁନ୍ତି ।

ମୋଟ ଉପରେ ଏହା ନିଶ୍ଚିତ ଯେ ସପ୍ତମ ଶତାବ୍ଦୀରେ ରତ୍ନଗିରି ବୌଦ୍ଧଧର୍ମର ଏକ ସ୍ୱନାମଧନ୍ୟ କେନ୍ଦ୍ର ରୂପେ ମୁଣ୍ଡଟେକି ଉଠିଥିଲା । ଲାମା ତାରାନାଥଙ୍କ ମିଷ୍ଟିକ୍ ଟେଲ୍ (Mystic Tale) ପୁସ୍ତକରୁ ଜଣାଯାଏ ଯେ ପିଟୋପାଦ ନାମକ ଜନୈକ ବିଦ୍ୱାନ ସମ୍ବଲସ୍ଥିତ ବଜ୍ରପାଣିଙ୍କଠାରୁ କାଳଚକ୍ର ତନ୍ତ୍ର ଶିକ୍ଷା କରିବା ସଂଗେସଂଗେ ସେଠାରୁ ବହୁ ତନ୍ତ୍ରପୁସ୍ତକ ରତ୍ନଗିରିକୁ ଛାତ୍ରମାନଙ୍କର ଅଧ୍ୟୟନ ନିମନ୍ତେ ନେଇ ଆସିଥିଲେ । ସେଠାରେ ତାଙ୍କର ୩ ଜଣ ଶିଷ୍ୟ ଅବଧୂତି, ବୋଧିଶ୍ରୀ ଓ ନାରୋପା ଯୋଗଶିକ୍ଷା କରିଥିଲେ ଓ ସଂଗେସଂଗେ ନିଜନିଜ ଜୀବନର ଅଭ୍ୟାସ କରିଥିଲେ ।

ଏହି ରତ୍ନଗିରି ବିରଜା ନିକଟରେ ଅଷ୍ଟମ ଶତାବ୍ଦୀରେ ବିଦିତ ହୋଇଥିବା ଆଧ୍ୟାତ୍ମିକ ବିଶ୍ୱବିଦ୍ୟାଳୟ ଓ ସମ୍ବଲକୁ ସମ୍ବଲପୁର ସହିତ ଚିହ୍ନିତ କରାଯାଇପାରେ । ଏହା ମଧ୍ୟ ଥିଲା ବିରଜା ନିକଟରେ ପ୍ରତିଷ୍ଠିତ ୪ଟି ତନ୍ତ୍ରପୀଠ ମଧ୍ୟରୁ ଅନ୍ୟତମ । ରତ୍ନଗିରି ବ୍ୟତୀତ ଅନ୍ୟ ୩ଟି ତନ୍ତ୍ରପୀଠ ଥିଲା ଉଦୟଗିରି, ଲଳିତଗିରି ଓ ଆଳତିଗିରି ।

ଏହି ରତ୍ନ ଜଣଙ୍କ ଷୋଡ଼ଶ ଶତାବ୍ଦୀରେ ୩ ଜଣ ସିଦ୍ଧି ଯୋଗାଭ୍ୟାସ କରିବା ସଂଗେସଂଗେ ସେମାନେ ତାଙ୍କର ବହୁ ଶିଷ୍ୟ ସୃଷ୍ଟି କାରିପାରିଥିଲେ । ସେମାନେ ଥିଲେ ବାରଙ୍ଗ ସ୍ୱାମୀ ଲୋଇଦାସ ଓ ବଳିଗନ ଦାସ । ତାଙ୍କ ଶିଷ୍ୟଙ୍କ ମଧ୍ୟରୁ କେତେଜଣ ସେହି କଟକ ଜିଲ୍ଲାର ବକୋବା, ଉଦୟଗିରି ଓ ଲଳିତଗିରିରେ ବସବାସକରି ରହୁଥିଲେ । ରତ୍ନଗିରିରେ ବିଶାଳକାୟ ବୁଦ୍ଧ, ବୋଧିସତ୍ତ୍ୱବର୍ତ୍ତିକା ତାନ୍ତ୍ରିକମୂର୍ତ୍ତି ଅବଲୋକେଶ୍ୱର ହେରୁକାର ମୂର୍ତ୍ତିରେ ବିମଣ୍ଡିତ ହୋଇଥିଲା । ଉଦୟଗିରି, ଲଳିତଗିରି, ଖଡ଼ିପଦା, ବୌଦ, ନରସିଂହପୁର ଆଦି ସ୍ଥାନରେ ଏ ପ୍ରକାର ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳିଛି । ମାତ୍ର ରତ୍ନଗିରିରେ କୌଣସି ବୁଦ୍ଧମୂର୍ତ୍ତି ନିଖୁଣ ଅବସ୍ଥାରେ ନାହିଁ । ଅତୀତର କେତେକ ମୂର୍ତ୍ତି ମଧ୍ୟ ଆଉ ଦେଖିବାକୁ ମିଳୁନାହିଁ । ତନ୍ମଧ୍ୟରୁ ୧୯୨୮ରେ ରମା ପ୍ରସାଦ ଚାନ୍ଦ ସେଠାରେ ଦେଖିଥିବା ଏକାଦଶ ଶତାବ୍ଦୀର ବ୍ରଜାସନ ବୁଦ୍ଧମୂର୍ତ୍ତି ଅନ୍ୟତମ । ଅନ୍ୟ ଗୋଟିଏ ବୌଦ୍ଧମୂର୍ତ୍ତିର ୪ ଇଞ୍ଚ ଲମ୍ବର ମସ୍ତକଟିଏ ବୃକ୍ଷମୂଳରେ ପଡ଼ିଛି । ଅନୁମାନ କରାଯାଏ, ଏହା ଯଦି ଦଣ୍ଡାୟମାନ ମୂର୍ତ୍ତି ହୋଇଥିବେ ତେବେ ତାଙ୍କର ଉଚ୍ଚତା ଥିଲା ୨୬ ଫୁଟ ଓ ଯଦି ବସିଥିବା ମୂର୍ତ୍ତି ହୋଇଥିବେ ତେବେ ତାଙ୍କର ଉଚ୍ଚତା ଥିବ ୧୬ ଫୁଟ । ସେହିପରି ୫ ଫୁଟ ୫ ଇଞ୍ଚ ଲମ୍ୱ ଓ ୩ ଫୁଟ ୫ ଇଞ୍ଚ ଓସାର ତାରାମୂର୍ତ୍ତି । ଡକ୍ଟର ନବୀନ କୁମାର ସାହୁ ତାଙ୍କ ପୁସ୍ତକ 'ବୁଦ୍ଧିଜିମ୍ ଅଫ୍ ଓଡ଼ିଶା' (Budhism of Orissa)ରେ ଉଲ୍ଲେଖ କରିଛନ୍ତି ।

ଏହିପରି ଭାବେ ରତ୍ନଗିରି ଯୁଗେ ଯୁଗେ ମହାଯାନ ବୌଦ୍ଧଧର୍ମର ଏକ ପ୍ରଧାନ ପୀଠସ୍ଥଳୀ ରୂପେ ସ୍ୱାକ୍ଷର ବହନକରି ଓଡ଼ିଶାର ସାଂସ୍କୃତିକ ଇତିହାସକୁ ଋଦ୍ଧିମନ୍ତ କରିଛି । ଯଥାର୍ଥରେ ଏହା ଓଡ଼ିଶାର ଏକ ଗୌରବାନ୍ୱିତ ଐତିହାସିକ ସ୍ମାରକୀ ।

ନୟାଗଡ଼ ପୁରୁଣା ଟାଉନ
ନୟାଗଡ଼

# ଚମ୍ପକବରଣୀ କେନ୍ଦୁଝର

ଦେବୁ ପଟ୍ଟନାୟକ

**ଶୈ**ବ ପରମ୍ପରାରେ ଥିବା ମହା ମୃତ୍ୟୁଞ୍ଜୟ ମନ୍ତ୍ରର ଉଚ୍ଚ ଭାବଧାରା ବହୁ ପ୍ରାଚୀନ କାଳରୁ ଭାରତ ସାରା ପ୍ରବର୍ତ୍ତିତ । ଦେବ ଦେବ ମହାଦେବ - ସୁଗନ୍ଧିଂ ପୁଷ୍ଟି ବର୍ଦ୍ଧନଂ ମଙ୍ଗଳମୟ ଲୋକପିତା ରୂପେ ସର୍ବତ୍ର କଥିତ । ଚିର ଶୁଭଙ୍କର ପ୍ରଭୁ ମହାଦେବ ଜନଜୀବନର ପୁଷ୍ଟି ପାଇଁ ଓ ଚରାଚର ଧରାର ପରିପୁଷ୍ଟି ପାଇଁ ଅପାର୍ଥିବ ସୁଗନ୍ଧି ଖେଳାଇ ଜନଜୀବନରେ ଆମୋଦ ଆଣି ଦିଅନ୍ତି । ମଣିଷର ମନ ଓ ଶରୀରରେ ଉତ୍ତରଣ ଘଟାଇପାରନ୍ତି । ତେଣୁ ଶୈବ ଆରାଧନାରେ ମହାଦେବଙ୍କୁ ମଧୁଗନ୍ଧବାର୍ତ୍ତା ଓ ଗନ୍ଧ ଉଲ୍ଲସିତ ବିପୁଳ ମାନସିକତାର ପ୍ରତୀକ ରୂପେ ଧରାଯାଏ ଓ ଶୈବ ଧର୍ମର ବ୍ୟାପକତା ଭାରତୀୟ ଚେତନାରେ ଏକ ପ୍ରମୁଖ ସ୍ଥାନ ଅଧିକାର କରି ରହିଥାଏ । ତେବେ ଏ ଚେତନାର ଉତ୍ତରଣ ଓ ସର୍ବବ୍ୟାପ୍ତି ସ୍ଥାନ କାଳପାତ୍ର ବା ଭୌଗଳିକତାକୁ ନେଇ ପ୍ରସାରିତ ବା ପ୍ରଚାରିତ ହେବା ନିଶ୍ଚିତ ବୈଚିତ୍ରମୟ ।

କେନ୍ଦୁଝରର ଶୈବାୟନ ସେହି ବୈଚିତ୍ରମୟ ଘଟଣାବଳୀର ଏକ ମନୋଜ୍ଞ ସମାବେଶ । କାହିଁ କେତେକାଳରୁ ପ୍ରାୟ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରୁ ଓଡ଼ିଶାର କେତେକ ପ୍ରଭାବଶାଳୀ ଗଡ଼ରାଜ୍ୟ ଭଳି କେନ୍ଦୁଝରର ବି ଶୈବଧର୍ମର ପ୍ରବଳତାରେ ଉଲ୍ଲସିତ ହୋଇଥିଲା । ଶୈବଧର୍ମର ପ୍ରଚାର ପ୍ରସାର ହେବାକୁ ଏଠାରେ ଲୋକତନ୍ତ୍ର ବା ରାଜନୈତିକ ପୃଷ୍ଠପୋଷକତା ଯେତେ ଦାୟିତ୍ୱ ନିଭାଇ ନଥିଲା, ତା'ଠାରୁ ବେଶୀ ଦାୟିତ୍ୱ ନିଭାଇଥିଲା କେନ୍ଦୁଝରର ପ୍ରାକୃତିକ ପରିବେଶ ଓ ସୁଗନ୍ଧମୟ ବାୟୁମଣ୍ଡଳ । ସୁଗନ୍ଧକୁ ପୁଷ୍ଟି କରୁଥିବା ଦେବତା ଦେବ ଦେବ ମହାଦେବଙ୍କର ଶୈବବାଦ ଏହି ପ୍ରାକୃତିକ ପରିବେଶରେ ଉଧେଇବା ଥିଲା ଅବଧାରିତ ସତ୍ୟ । କେନ୍ଦୁଝରର ନିଜସ୍ୱ ସାହିତ୍ୟ 'ଭଂଜ ମହୋଦୟମ୍'ରେ ନିମ୍ନମତେ ବର୍ଣ୍ଣିତ ହୋଇଛି -

ପ୍ରଚଣ୍ଡ ତାଣ୍ଡବା ଡମ୍ବର ପ୍ରଚଳିତ ଖଣ୍ଡ ଭୂମଣ୍ଡଳ
ପ୍ରଭୂତା କାଣ୍ଡ ଭରନ୍ୟଞ୍ଚିତ ନିଜଫଣା
କାଣ୍ଡବ୍ୟଥିତ କୁଣ୍ଡଳୀକୁଳା ଖଣ୍ଡଳସୁତାଂ ଦଶଦୋର୍ଦ୍ଦଣ୍ଡ
ମଣିତା ଚଣ୍ଡିକାଃ ।

ଏଥିରୁ ଅନୁମିତ ହୁଏ ଯେ ଶାବର ଭୂମି କେନ୍ଦୁଝରରେ ଶୈବ ଓ ଶାକ୍ତ ପୂଜାର ଅୟମାରମ୍ଭ ହୋଇଥିଲା । ଏହାର ନିଦର୍ଶନ ସ୍ୱରୂପ ଗୋନାସିକାଠାରେ କେନ୍ଦୁଝରର ପ୍ରଥମ ଆଦିଲିଙ୍ଗ ବ୍ରହ୍ମେଶ୍ୱର ମହାଦେବ ଓ ସୁତରଙ୍ଗିଣୀ ବୈତରଣୀ ଯିଏକି ମହାଦେବ ଶିବଙ୍କର ଜଟାଜୁଟରେ ଶୋଭା ପାଉଥିବା ଗଙ୍ଗାଙ୍କଠାରୁ ବୟସରେ ବାରବର୍ଷ ବଡ଼ ତା'ରି କୂଳର ଶେଷଧାରରେ ଆଖଣ୍ଡଳେଶ୍ୱର ବିଦ୍ୟମାନ ହୋଇଥିଲେ । ବୈତରଣୀ ନଦୀର ଉତ୍ପତ୍ତିଠାରୁ ସାଗର ସଂଗମ ପର୍ଯ୍ୟନ୍ତ କ୍ରୋଶଲିଙ୍ଗମାନ ବିଦ୍ୟମାନ ରହି କେନ୍ଦୁଝରର ମହାଶୈବାୟନ ସଂପର୍କରେ ଦୃଢ଼ ପ୍ରମାଣ ପ୍ରଦାନ କରେ । ବୈତରଣୀର ଶୀର୍ଷ ଦେଶରେ ଆଦି କ୍ରୋଶଲିଙ୍ଗ ବ୍ରହ୍ମେଶ୍ୱର ଓ ପାଦଦେଶରେ ଆଖଣ୍ଡଳେଶ୍ୱରଙ୍କ ବ୍ୟତୀତ ମଧ ଦେଶରେ ବାକି ୧୦୬ ସଂଖ୍ୟକ ଲିଙ୍ଗ ମହାପ୍ରଭୁ ବିଦ୍ୟମାନ । ସେମାନେ ହେଲେ ବାଂଶପାଳଠାରେ ବିଶେଶ୍ୱର ଯାତ୍ରାଠାରେ ବାଣେଶ୍ୱର, ନୟାଗଡ଼ରେ ମୁକ୍ତେଶ୍ୱର, ଚମକପୁରରେ ଶିଖରେଶ୍ୱର, ରାମତୀର୍ଥରେ ରାମେଶ୍ୱର, ଚମ୍ପୁଆରେ ଚମ୍ପକେଶ୍ୱର, ଜ୍ୟୋତିପୁରରେ ଭୁବନେଶ୍ୱର, ସିଲିପଦାରେ ମହେଶ୍ୱର, ପାଟଣାରେ ଆନନ୍ଦେଶ୍ୱର, ଏରଣ୍ଡରେ ମହାଦେବଶ୍ୱର, ମୁରାବାଲିରେ ଝାଡ଼େଶ୍ୱର, ଆନନ୍ଦପୁରରେ ଆନନ୍ଦେଶ୍ୱର, ଉତ୍ତରେଶ୍ୱର ଜଅଁରାରେ ଜଳେଶ୍ୱର, ଜନାର୍ଦ୍ଦନପୁରରେ ଜନେଶ୍ୱର, ଟୁକୁଣାରେ କୁଣ୍ଡେଶ୍ୱର, ଶିବ ନାରାୟଣପୁରରେ ପର୍ବତେଶ୍ୱର, ବଞ୍ଝୋରେ ବଟେଶ୍ୱର, ହାବଳେଶ୍ୱରରେ ହାବଳେଶ୍ୱର, ଷଢଙ୍ଗରେ ଶିଖରେଶ୍ୱର, ତରଭାରେ ବରେଶ୍ୱର, ମଧୁକେଶରୀରେ ମଧୁକେଶ୍ୱର ଓ ବାଲିବରୁଆଁରେ ବାଲୁଙ୍କେଶ୍ୱର ଆଦି ଅନ୍ୟତମ । କେବଳ ଯେ ବୈତରଣୀ କୂଳରେ ଶିବଲିଙ୍ଗର ପ୍ରତିଷ୍ଠା କେନ୍ଦୁଝରକୁ ଶୈବାୟନ କରିଛି ତା' ନୁହେଁ ବୈତରଣୀ ଭିନ୍ନ ଅନ୍ୟ ବନ୍ୟ ଝରଣା ବା ଜନପଦରେ ମଧ ସୁଗନ୍ଧିପୁଷ୍ଟିବର୍ଦ୍ଧନଂ ମଙ୍ଗଳମୟ ଶିବଙ୍କର ଶୈବାୟନ ଧାରା ଅବ୍ୟାହତ । ସେଇ ଧାରାର ମହାନ୍ ପରିପ୍ରକାଶ କୁଶାଇ ନଦୀର ତୀରବର୍ତ୍ତୀ ଦେବଗ୍ରାମଠାରେ ଅବସ୍ଥାପିତ ମହାପ୍ରଭୁ କୁଶଳେଶ୍ୱର ଅଟନ୍ତି । ଏତଦ୍‌ବ୍ୟତୀତ ପଞ୍ଚରାର କୁଶଳେଶ୍ୱର, ହାଟଡିହିର ହଟକେଶ୍ୱର, ରମ୍ଭାସର ପର୍ବତେଶ୍ୱର, ରାମେଶ୍ୱର, ଦକ୍ଷିଣେଶ୍ୱର, ଶଙ୍ଖଣାର ଶଙ୍କରେଶ୍ୱର, ଶଙ୍ଖୋର ବଳେଶ୍ୱର, ଉଅଁରର ସ୍ୱପ୍ନେଶ୍ୱର, କଳିଙ୍ଗାର କପିଳେଶ୍ୱର, ବାଲିବରେଇର କୁପଣ୍ଡିଶ୍ୱର, ସ୍ୱପ୍ନେଶ୍ୱର, ମୁକ୍ତେଶ୍ୱର,

ସାଇଁକୁଳର ଗଣେଶ୍ୱର, ନଇଛଣପୁର ଓ ଗଣିଆର ସର୍ବେଶ୍ୱର, ମୁକ୍ତେଶ୍ୱର, ସାଇଁକୁଳର ଗଣେଶ୍ୱର, ନଇଛଣପୁର ଓ ଗଣିଆର ସର୍ବେଶ୍ୱର, ଇପକଳାରେ ଧବଳେଶ୍ୱର, ବୋଦାପଳଶାର ଚନ୍ଦ୍ରଶେଖର, ବଣ୍ଡୁଆର ଯୋଗେଶ୍ୱର, ବାରହାଟିପୁରାର ନୀଳକଣ୍ଠେଶ୍ୱର, ଧାନବେଣୀର ଦେଉଳି ମହାଦେବ, ଟାଙ୍ଗର ପଳଶାର କପିଳେଶ୍ୱର, ଟାଙ୍ଗର ବନ୍ତଳାର ଝାଡ଼େଶ୍ୱର, ଜରଦାର ବାଞ୍ଛେଶ୍ୱର, ଦେଓଝରର ମୁର୍ଗେଶ୍ୱର, ବାଚହରିଚନ୍ଦନପୁରର ବାଣେଶ୍ୱର କେନ୍ଦୁଝର ଶୈବାୟନର ଉଜ୍ଜ୍ୱଳ ପରିପ୍ରକାଶ କେବଳ ଯେ ଏହି କେତେଗୋଟି ସ୍ଥାନରେ ଶିବ ମନ୍ଦିରମାନ ବିଦ୍ୟମାନ ତା' ନୁହେଁ, କେନ୍ଦୁଝରର ପ୍ରାୟ ସବୁ ଗ୍ରାମରେ ଶୈବ ଉପାସନାର ପରମ୍ପରା ରହିଛି । କେନ୍ଦୁଝର ରାଜାଙ୍କର ଦ୍ୱାରା ଅବସ୍ଥାପିତ ପ୍ରାୟ ବୟାଳିଶଟି ବ୍ରାହ୍ମଣ ଶାସନରେ ଶିବଲିଙ୍ଗର ପୂଜା ଆରାଧନା ବାଧ୍ୟତାମୂଳକ ଥିଲା । ପ୍ରାୟ ରାଜାରାଜୁଡ଼ା ଅମଳରୁ ଏହି ପରମ୍ପରା ଅଦ୍ୟାବଧି ପ୍ରଚଳିତ । ଏତଦ୍‌ବ୍ୟତୀତ ସମଗ୍ର ଜିଲ୍ଲାରେ ପ୍ରାୟ ଅଧିକାଂଶ ଗ୍ରାମରେ ଶିବଲିଙ୍ଗ ପ୍ରତିଷ୍ଠିତ ଓ ପୂଜିତ । ଅବଶ୍ୟ କେଉଁଠି ମନ୍ଦିର ଅଛି ବା କେଉଁଠି ନାହିଁ । ତେବେ ସଂପ୍ରତି ଏହି ଶୈବ ପରମ୍ପରାର ଅବଧାରଣାକୁ ଆପଣେଇ ଶାକ୍ତପୀଠ ଘଟଗାଁଠାରେ ମଧ୍ୟ ଏକ ପ୍ରସିଦ୍ଧ ଶିବମନ୍ଦିର ଗଢ଼ି ଉଠିଛି । ଶୈବାୟନର ଚେତନା କେନ୍ଦୁଝରରେ ଏତେ ଗଭୀର ଯେ ଏବେ ମଧ୍ୟ ଜିଲ୍ଲାରେ କେଉଁଠି ନା କେଉଁଠି ଶିବମନ୍ଦିର ନିର୍ମାଣ ଚାଲୁ ରହିଛି । ଏହିସବୁ ଶିବଲିଙ୍ଗଗୁଡ଼ିକର ବିଦ୍ୟମାନତାରୁ ପ୍ରତୀୟମାନ ହୁଏ ଯେ କେନ୍ଦୁଝର ଯଥାର୍ଥରେ ଶୈବଭୂମି ଅଟେ । ଶିବଙ୍କର ଅତୀତ ପ୍ରିୟଭୂମି କେନ୍ଦୁଝର ଶବ୍ଦର ଅର୍ଥ (କ+ଇନ୍ଦୁ+ଝର=କେନ୍ଦୁଝର) ଅର୍ଥାତ୍ ଯାହାର ମସ୍ତକରେ ଚନ୍ଦ୍ର ଓ ସେଥିରୁ ମସ୍ତକକୁ ଗଙ୍ଗା ଜଳଧାର ପ୍ରବାହିତ ହେଉଅଛି ଏହି ଭାବାର୍ଥର ଅର୍ଥ ଗଙ୍ଗାଧର ବା ଶିବ । କେନ୍ଦୁଝରକୁ ଶିବ ବୋଲି ଏଭଳି ଅର୍ଥ କରାଯିବାରେ ତାହା ପୃଥିବୀର ବିଖ୍ୟାତ ଶୈବଭୂମିମାନଙ୍କ ମଧ୍ୟରୁ ଅନ୍ୟତମ ବୋଲି ପ୍ରତିପାଦିତ ହେଉଛି । ପ୍ରକୃତରେ ଶିବ ଓ ଶକ୍ତିଙ୍କର ଅଧ୍ୟୁଷିତ ଏହି ଭୂମି । ଶୈବ କୃପାବିନା ଜୀବନ ମଧୁମୟ ନୁହେଁ । ସମସ୍ତ ପ୍ରକାର ପାପ ତାପରୁ ମୁକ୍ତି ଦିଅନ୍ତି ଶିବ । ତାଙ୍କରି କୃପାରେ ଅସାଧ୍ୟ ରୋଗୀ ରୋଗରୁ ମୁକ୍ତି ହୁଏ । ନିର୍ଦ୍ଧନ ଧନବାନ ହୁଏ । ସନ୍ତାନହୀନ ସନ୍ତାନ ପାଏ । ବିଷ ଅମୃତ ହୁଏ । ମାନବର କାମନା ଚରିତାର୍ଥ ହୁଏ । ସମସ୍ତ ପ୍ରକାର ମାୟାକୁ ଛେଦନ କରି ମାନବ ଅମୃତର ସନ୍ଧାନ ପାଏ । ସେଥିପାଇଁ କେନ୍ଦୁଝରର ଆଦ୍ୟ ସଭ୍ୟତାର ଉନ୍ମେଷରେ ଶୈବାୟନ ଏକ ମହାନ୍ ଆବିଷ୍କାର ବୋଲି କୁହାଯାଏ ।

ଡକ୍ଟର ଅର୍ଜୁନ ଯୋଗୀଙ୍କ ମତରେ ଓଡ଼ିଶାରେ ଶୈବାୟନର ଇତିହାସ ବହୁତ ପ୍ରାଚୀନ । କାରଣ ଓଡ଼ିଶା ଉତ୍ତର ଭାରତ ଓ ଦକ୍ଷିଣ ଭାରତରେ ସଂଯୋଗ ସ୍ଥଳରେ ରହିଛି । ଏହି ଦୁଇ ଭାରତର ମଧ୍ୟବର୍ତ୍ତୀ ସଭ୍ୟତାକୁ ପ୍ରାଚୀନ ବ୍ରାତ୍ୟ ସଭ୍ୟତା ବୋଲି ଧରାଯାଇଥିବାରୁ ଓଡ଼ିଶାରେ ପ୍ରାଚୀନ ବ୍ରାତ୍ୟ ସଭ୍ୟତାର ଧାରା ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ବ୍ରାତ୍ୟ ଧର୍ମରେ ସଂସ୍କାର ରହିତ ଶବର, ଆଦିବାସୀମାନେ ବ୍ରାତ୍ୟ ସଭ୍ୟତାରେ ଶିବଙ୍କର ଧର୍ମଧାରା ପୂଜାଧାରଣା ପ୍ରାଧାନ୍ୟ ଲାଭ କରିଥାଏ । ସେଥିପାଇଁ ଓଡ଼ିଶାରେ ପ୍ରାୟ ଶୈବ ପ୍ରାଧାନ୍ୟ ଦର୍ଶନର ଅବତାରଣା ହୋଇଛି । ଓଡ଼ିଶାର ଅନେକ ପ୍ରାଚୀନ ନାମ ଅଛି । ତା'ମଧ୍ୟରୁ କଳିଙ୍ଗ ଅନ୍ୟତମ । କଳିଙ୍ଗର ଅର୍ଥ ଜଳାଶୟୀ ଲିଙ୍ଗ । ଅର୍ଥାତ୍ ଯେଉଁ ଦେଶରେ ଅସଂଖ୍ୟ ଜଳାଶୟୀ ଲିଙ୍ଗ ବିଦ୍ୟମାନ, ତାହା କଳିଙ୍ଗ । ପ୍ରାଚୀନ ସାହିତ୍ୟରେ କୁହାଯାଇଛି ଯେ -

ଲିଙ୍ଗ ଭୂଇଁ ବୋଲି ଏ କଳିଙ୍ଗ ନାମ ଥିଲା ପରା ପୁରୁବରେ
ତେଣୁ ଏ ଓଡ଼ିଶା ମନ୍ଦିର ମାଳ ଦେଇଛି କି ଉପହାରେ ।

ଏହି ଶୈବାୟନ ପରମ୍ପରାରେ ଉଦ୍‌ବୁଦ୍ଧ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର କେନ୍ଦୁଝରର ଅସନପାଟରୁ ତେରଧାଡ଼ି ବିଶିଷ୍ଟ ବ୍ରାହ୍ମୀ ଲିପିରେ ରଚିତ ଏକ ଶିଳାଲେଖା ସହ ନଟରାଜ ମୂର୍ତ୍ତି ଓ ସୀତାବିଂଝିରୁ ଯେଉଁ ଚାରିମୁଖ ବିଶିଷ୍ଟ ଶଶଧର ଲାଞ୍ଛନ ନାମକ ମୁଖଲିଙ୍ଗ ଆବିଷ୍କୃତ ହୋଇଛି, ତାହାକୁ ସର୍ବଭାରତୀୟ ସ୍ତରରେ ଶିବପୂଜାର ପ୍ରାଚୀନତମ ନିଦର୍ଶନ ରୂପେ ଅଭିହିତ କରାଯାଏ । ଏତଦ୍‌ଭିନ୍ନ ଶୈବଧର୍ମରେ ଏକ ମତବାଦ ରହିଛି ଯଥା- ଲକୁଳୀଶଙ୍କର ପାଶୁପତ ଦର୍ଶନ ଯାହାକି କେନ୍ଦୁଝର ସମେତ ଓଡ଼ିଶାରେ ବି ପ୍ରବର୍ତ୍ତିତ ଥିଲା । ଖ୍ରୀଷ୍ଟୀୟ ୩୫୦ରେ ମହାରାଜା ଶତ୍ରୁଦମନ କରି କଳିଙ୍ଗରେ ଯେଉଁ ଦମକେଶ୍ୱର ଶିବଙ୍କୁ ପ୍ରତିଷ୍ଠା କରିଥିଲେ ଓ ତାଙ୍କର ଆରାଧନା ଓ ଦର୍ଶକଙ୍କୁ ଲୋକପ୍ରିୟ କରାଇ ପାରିଥିଲା । ସେଇ ଶିବ ପାଶୁପତମାନଙ୍କର ମଧ୍ୟ ପ୍ରିୟ ଥିଲେ । ଗିରି କଳିଙ୍ଗର ଏହି ରାଜା ଶତ୍ରୁଦମନ କେନ୍ଦୁଝରର ରାଜା ଶତ୍ରୁଭଞ୍ଜ ନୁହନ୍ତି ? କାରଣ ଦ୍ୱିତୀୟ ଶତାବ୍ଦୀର କଳିଙ୍ଗ ରାଜା ଖାରବେଳଙ୍କ ପରେ କଳିଙ୍ଗରେ ଶୈବଧର୍ମର ଉନ୍ମେଷ ନୁହେଁ ପ୍ରସାର ଘଟିଥିଲା । ଖାରବେଳଙ୍କ ଜୈନଧର୍ମ ପ୍ରଚାର ବେଳକୁ ଶୈବଧର୍ମ ରାଜାନୁଗତ ଧର୍ମ ମତବାଦର ବିରୋଧରେ ଶିକାର ହୋଇ ବା ପ୍ରପୀଡ଼ିତ ହୋଇ ଧିମେଇ ଯାଇଥିଲା । ପାଶୁପତ ଦର୍ଶନ ସହ ମତ୍ତମୟୁର ସଂପ୍ରଦାୟର ପ୍ରଧାନତତ୍ତ୍ୱ ଏ ଦେଶରେ ସେଇ ସମୟରେ ଶୈବ ଉପାସନାକୁ ବଳିଷ୍ଠ କରାଇଥିବା ଜଣାଯାଏ । ପାଶୁପତ ଧର୍ମର ଯୌନଚେତନା ବୌଦ୍ଧଙ୍କ ସହଜଯାନକୁ ପ୍ରଭାବିତ କରିଥିଲା । ପରେ ପରେ ଶୈବଧର୍ମ ସହ ବଜ୍ରଯାନର ମିଶ୍ରଣ ଘଟି ଶୈବଧର୍ମ ଶାଶ୍ୱତ ଶାନ୍ତ ରୂପରୁ ଭୈରବ ବା ଭୟଙ୍କର ରୂପ ଗ୍ରହଣ କରିଥିଲା । ଭୈରବବାଦର ପ୍ରଭାବ ହେତୁ ତନ୍ତ୍ରର ଉନ୍ମେଷ ଘଟିଲା । ଓଡ଼ିଶାର ଭଞ୍ଜ ବଂଶୀୟ ରାଜାମାନେ ତାନ୍ତ୍ରିକ ଶୈବ ଉପାସନାର ପରିପୃଷ୍ଟପୋଷକତା କରି ଶୈବ ଉପାସନାକୁ ଲୋକପ୍ରିୟ କରାଇ ପାରିଥିଲେ । ପ୍ରାଚୀନ ବ୍ରାତ୍ୟ ଅଧ୍ୟୁଷିତ କେନ୍ଦୁଝରରେ ତନ୍ତ୍ରର ଶୈବ ଉପାସନାର ପରିପୃଷ୍ଟପୋଷକତା କରି ଶୈବ ଉପାସନାକୁ ଲୋକପ୍ରିୟ କରାଇପାରିଥିଲେ । ପ୍ରାଚୀନ ବ୍ରାତ୍ୟ ଅଧ୍ୟୁଷିତ କେନ୍ଦୁଝରରେ ତନ୍ତ୍ରର ପ୍ରଭାବ ସମଗ୍ର ଉତ୍କଳୀୟ ଧର୍ମ ଧାରଣାରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିବାରୁ ଏହା ପ୍ରାଚୀନ ଶୈବଧର୍ମର ଉଦ୍‌ଘୋଷଣା କରେ । ଏଠାରେ

ପ୍ରାକୃତିକ ବିପର୍ଯ୍ୟୟରୁ ଶସ୍ୟ ଭୂମିକୁ ରକ୍ଷା କରିବାକୁ ଯେଉଁ ଯାଦୁବିଦ୍ୟାଶ୍ରିତ କୃଷି ଉତ୍ସବ ପାଳିତ ହୁଏ ତାହା ତନ୍ତ୍ର ବୋଲି କୁହାଯାଏ ।

ଡକ୍ଟର ଯୋଗୀଙ୍କ ମତରେ ଭଞ୍ଜ ଶବ୍ଦର ଅର୍ଥ ଶିବ । ଶୈବଧର୍ମ ପ୍ରତି ଶତାଧିକ ଅନୁରକ୍ତ ଯୋଗୁଁ କେନ୍ଦୁଝର ଓ ମୟୂରଭଞ୍ଜ ରାଜାମାନେ ଭଞ୍ଜ ଉପାଧି ଗ୍ରହଣ କରିଛନ୍ତି । ଶିବ ବିଶ୍ୱାସ, ପ୍ରେମର ଓ ଶକ୍ତିର ଦେବତା ହୋଇଥିବାରୁ ଆଶୁତୋଷ ବୋଲି କୁହାଯାଇଥାଏ । ଏହି ବୈଶିଷ୍ଟ୍ୟର ଅଧିକାରୀ ହେବାକୁ ଭଞ୍ଜ ରାଜାମାନେ ଶୈବନୁଯାୟୀ ପଦବୀ ଭଞ୍ଜ ସଂକେତ ମୟୂର ଆଦି ଗ୍ରହଣ କରିଥିବାର ପ୍ରମାଣ ରହିଛି ।

ଭଗବାନ ଶିବ ଓ ଶିବାନୀଙ୍କର ଅଧ୍ୟୁଷିତ ଏ ଭୂମି ଅଷ୍ଟାଦଶ ଶତାବ୍ଦୀଠାରୁ ମହାନ୍ ଶୈବପୀଠ ରୂପେ ପରିଗଣିତ ହୋଇ ଆସୁଥିବାରୁ ଶିବଙ୍କର ଅନ୍ୟ ରୂପ ଶଙ୍କର୍ଷଣ ବା ବଳଭଦ୍ର କେନ୍ଦୁଝରର ରାଷ୍ଟ୍ରଦେବ ରୂପେ ଗୃହୀତ ହୋଇଯାଇଛନ୍ତି । ଓଡ଼ିଶାର ପ୍ରଖ୍ୟାତ ଶ୍ରୀକ୍ଷେତ୍ରରେ ମଧ ଉତ୍କଳୀୟ ଚିନ୍ତାଧାରାର ଧାରକ-ବାହକ-ପାଳକ-ଶ୍ରୀଜଗନ୍ନାଥ ମହାଭୈରବ ରୂପେ ପୂଜିତ ହୁଅନ୍ତି ଓ ବଳଭଦ୍ର ଶିବ ରୂପେ ଏବଂ ବିମଳା ଶକ୍ତି ରୂପେ ପୂଜା ପାଇ ଆସୁଛନ୍ତି । ଓଡ଼ିଶାର ଏହି ଚିନ୍ତାଧାରା କେନ୍ଦୁଝରର ପ୍ରାଚୀନ ନରପତି ଶତ୍ରୁଭଞ୍ଜଙ୍କ ସମୟରୁ ପ୍ରଚଳିତ ହୋଇଥିବାର ଅନୁମାନ କରାଯାଏ । ଏବେ ବି ଶିବ ଧର୍ମର ପ୍ରାଧାନ୍ୟ କେନ୍ଦୁଝରରେ ଅସ୍ଥି ମଜ୍ଜାଗତ ବୋଲି ଜଣାଯାଏ । କେନ୍ଦୁଝରର ଶୈବାୟନ ଚେତନାରେ ଶିବ କୃପା ବିନା ଜୀବନ ମଧୁମୟ ବା ହିଲ୍ଲୋଳିତ ନୁହେଁ । ଶିବଙ୍କର ଅନୁକମ୍ପା ଲାଭକଲେ ସମସ୍ତ ପ୍ରକାର ଜୀବନ ଯନ୍ତ୍ରଣାର ଅବସାନ ଘଟେ । ଏଣୁ କେନ୍ଦୁଝରରେ ଶିବପୂଜାର ଭୂରିଭୂରି କ୍ରିୟାନୁଷ୍ଠାନ ଅଦ୍ୟାବଧି ପ୍ରଚଳିତ । ଶୈବଙ୍କର ସବୁଠାରୁ ରହସ୍ୟମୟ ଅନୁଷ୍ଠାନ ମହାଶିବରାତ୍ରୀକୁ ଛାଡ଼ି ମକରସଂକ୍ରାନ୍ତି, ବଡ଼ଓଷା, ସୋମନାଥ ବ୍ରତ ଅନ୍ୟତମ । ଏହି ବ୍ରତପୂଜା ମାଧ୍ୟମରେ ସୃଷ୍ଟିର ସର୍ଜନା ପାଇଁ ଶିବଙ୍କର ତୁଷ୍ଟିସାଧନ କରାଯାଏ ବୋଲି ଅନେକ ବିଶ୍ୱାସ କରନ୍ତି । ସେଥିପାଇଁ ଶିବଙ୍କର ପ୍ରଶଂସା କରି କୁହାଯାଇଛି -

ଶିବେତି ଦ୍ୱୟକ୍ଷରଂ ନାମ ବ୍ୟାହରିଷନ୍ତିୟେ ଜନାଃ
ତେଷାଂ ସର୍ବସ୍ୱ ମୋକ୍ଷସ୍ୱ ଭବିଷ୍ୟତି ନଚ ଅନ୍ୟଥା ।

କେନ୍ଦୁଝର ଜନଜୀବନରେ ରୁଦ୍ରତ୍ୱ ବା ଭୀମତ୍ୱ ସହିତ ଶାନ୍ତକାନ୍ତ ସିଦ୍ଧିଦାତା ରୂପ ମଧ୍ୟ ସର୍ବତ୍ର ବିଦ୍ୟମାନ । ଅଶ୍ୱକୋଟର ମହାରୁଦ୍ର ଭୈରବ ନଟରାଜଙ୍କ ଭୀମତାଣ୍ଡବ ରୂପ ସହ ବୈତରଣୀର ଉଦ୍‌ଗମସ୍ଥଳ ଆଦିଲିଙ୍ଗ ଶାନ୍ତଶୀତଳ ବ୍ରହ୍ମେଶ୍ୱର ଯାଏ ବା ବୈତରଣୀ ତଟସ୍ଥ ମହାକାରୁଣିକ ବାଞ୍ଛେଶ୍ୱର ବା ଝାଡ଼େଶ୍ୱର ସବୁ ଶିବଲିଙ୍ଗ ଏହି ମହାନ୍ ଭୂମିର ଶୈବପୁରବନ୍ତର ପ୍ରମାଣ ବହନ କରିଛି ।

ଏହାପରେ ଶିବଙ୍କର ପ୍ରିୟସ୍ଥଳୀ ମଧ୍ୟରୁ କେନ୍ଦୁଝର ଶ୍ରେଷ୍ଠ ବୋଲି କୁହାଯିବାରେ କିଛି ଦ୍ୱିଧା ନାହିଁ । କାରଣ ତ୍ରିକୋଣାକାର କେନ୍ଦୁଝରର ପରିସୀମାର ପୂର୍ବପାର୍ଶ୍ୱରେ ଶକ୍ତିଭୂମି ଯାଜପୁର ବିଦ୍ୟମାନ । ଯାଜପୁର ଶକ୍ତିପୀଠ ରୂପେ ଭାରତ ବିଖ୍ୟାତ । ଶୈବ ଶାକ୍ତ ପରସ୍ପର ସମ୍ବନ୍ଧଶୀଳ ଓ ଶୈବ ଓ ଶାକ୍ତ ଏକତ୍ର ବିଦ୍ୟମାନ ଥିବା ସଚରାଚର ଦେଖାଯାଏ । ଶୈବାୟନ କେନ୍ଦୁଝରର ପ୍ରାଚୀନତା ପ୍ରମାଣ କରିବାକୁ ପ୍ରଖ୍ୟାତ ଗବେଷକ ସତ୍ୟନାରାୟଣ ରାଜଗୁରୁଙ୍କ ମତ ଉଦ୍ଧାର କରାଯିବା ପ୍ରୟୋଜନ । ତାଙ୍କ ମତରେ ବିନ୍ଧ୍ୟାଞ୍ଚଳ ପାର୍ବତ୍ୟରାଜ୍ୟର ପ୍ରତିଷ୍ଠାତା ବେଣ୍ଣୁ ନାମଧାରୀ ରାଜାଙ୍କ ପ୍ରଥମ କୀର୍ତ୍ତି ବାଣେଶ୍ୱର କେନ୍ଦୁଝରର ପ୍ରଥମ ଶିବଲିଙ୍ଗ । କେନ୍ଦୁଝରର ଶୈବାୟନର ଅନ୍ୟତମ ପ୍ରମାଣ କେନ୍ଦୁଝରର ଅସନପାଟ ଗ୍ରାମରୁ ମିଳିଥିବା ସୁନ୍ଦର ଅଷ୍ଟଭୁଜ ସମ୍ମିଳିତ ମହାରୁଦ୍ର ନଟରାଜ ମୂର୍ତ୍ତି । ମହାରାଜ ଶତ୍ରୁଭଂଜଙ୍କ ଶାସନ କାଳରେ କେନ୍ଦୁଝରରେ ଏଭଳି ନଟରାଜମୂର୍ତ୍ତି ନିର୍ମିତ ବୋଲି ସ୍ୱୀକାର କରାଯାଇଥିବା ବେଳେ ଶତ୍ରୁଭଂଜ ସମୁଦ୍ରଗୁପ୍ତଙ୍କ ସମସାମୟିକ ଥିବାର ଐତିହାସିକମାନେ ପ୍ରମାଣ କରନ୍ତି । ଏହା କେନ୍ଦୁଝରରେ ପ୍ରାଚୀନ ଶୈବ ଧର୍ମଧାରାର ସୂଚନା ଦିଏ ।

ତେବେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ ମଙ୍ଗଳମୟ ଦେବଦେବ ମହାଦେବ ଗନ୍ଧମ୍ ଅର୍ଦ୍ଦନ (ଗନ୍ଧମାର୍ଦ୍ଦନ)ରେ ବା ସୁଗନ୍ଧି ପରିପୁଷ୍ଟ ପର୍ବତ ସମୂହରେ ନୈସର୍ଗିକତାରେ ମୁଗ୍ଧ ହୋଇ ଏଠାରେ ନିଜର ଆସ୍ଥାନ ଅବସ୍ଥାପିତ କରିଥିବା ନିଶ୍ଚିତ ବୋଲି ମନେ କରାଯାଇପାରେ । ଏହି ସ୍ୱତଃ ସୁଗନ୍ଧିତ ବନଭୂମିର ସୁଗନ୍ଧର ଉତ୍ସ ଚମ୍ପାଫୁଲ ବା ଚମ୍ପାତରୁ ବୋଲି ବହୁକାଳରୁ ପ୍ରମାଣିତ । କେନ୍ଦୁଝରରେ ମହାଦେବ ଶିବ ଯେପରି ପ୍ରାଚୀନ, ଚମ୍ପାତରୁ ବା ଚମ୍ପକ ପୁଷ୍ପ ମଧ୍ୟ ସେପରି ପ୍ରାଚୀନ । ଚମ୍ପାଗଛ କେନ୍ଦୁଝର ମାଟି ପାଣି ପବନରେ ଯେପରି ଉଧାଏ ଅନ୍ୟତ୍ର ସେପରି ଉଧାଏ ନାହିଁ । କେନ୍ଦୁଝରର ଅଳ୍ପ ଲୋହିତ ମୃତ୍ତିକାରେ ଈଷତ୍ ହଳଦିଆ ଚମ୍ପାଫୁଲ ଯେପରି ପ୍ରଚୁର ଭାବେ ସୁଲଭ ହୁଏ ତାହା ଅନ୍ୟତ୍ର ହୁଏ ନାହିଁ ।

ଓଡ଼ିଶାର କେନ୍ଦୁଝରରେ ସାଧାରଣତଃ ଉପଲବ୍ଧ ତିନୋଟି ପ୍ରାକୃତିକ ବିଭାଗର ପରିବେଶ ଦେଖିବାକୁ ମିଳିଥାଏ । ଓଡ଼ିଶାର ପ୍ରାକୃତିକ ବିଭାଗ ମଧ୍ୟରେ ମଧ୍ୟସ୍ଥ ପର୍ବତମାଳା, ପଶ୍ଚିମସ୍ଥ ମାଳଭୂମି ଓ ଉପକୂଳବର୍ତ୍ତୀ ସମତଳ ଅଞ୍ଚଳ ଅନ୍ୟତମ ଅଟନ୍ତି । ସେଥିପାଇଁ ସାରା ଓଡ଼ିଶାର ବିଭିନ୍ନ ଜଳବାୟୁ ଯଥା- ପାର୍ବତ୍ୟ ଅଞ୍ଚଳର ଚରମଭାବାପନ୍ନ ଜଳବାୟୁ, ଉପକୂଳବର୍ତ୍ତୀ ଜଳବାୟୁ ଓ ମାଳଭୂମିର ମହାଦେଶୀୟ ଜଳବାୟୁ ଅତି ବିଚିତ୍ର ଭାବେ କେନ୍ଦୁଝରରେ ଦେଖିବାକୁ ମିଳିଥାଏ । ଓଡ଼ିଶାର ବିଭିନ୍ନ ଜିଲ୍ଲା ଗୋଟିଏ ନିର୍ଦ୍ଦିଷ୍ଟ ଜଳବାୟୁର ସମାହାର ହୋଇଥିବାବେଳେ କେନ୍ଦୁଝରର ଏଭଳି ବୈଚିତ୍ର୍ୟତା ତାକୁ ଆହୁରି ମନୋରମ କରି ଗଢ଼ି ତୋଳିଛି । ସେଇ ମନୋରମ ବୈଚିତ୍ର୍ୟତାର ଚମତ୍କାରିତା ମଧ୍ୟରୁ ଚମ୍ପାଫୁଲ ଅନ୍ୟତମ । ସର୍ବଦା ଚମ୍ପାଫୁଲ ପାଇଁ ପ୍ରସିଦ୍ଧ କେନ୍ଦୁଝରରେ ସେଥିପାଇଁ ଚମ୍ପକକୁ ନେଇ ରହିଛି ଅନେକ ଗାଁ, ଜନପଦ ବା କିମ୍ବଦନ୍ତୀ । ସେଇ ଗାଁ ବା ଜନପଦର ନାମ ଚମ୍ପକକୁ ନେଇ ଚମ୍ପକପୁର ହୋଇପାରେ ବା ଚମ୍ପୁଆ ହୋଇପାରେ ବା ଚମ୍ପେଇ

ହୋଇପାରେ । କୁହାଯାଏ ଚମ୍ପାଗଛ ବହୁତ ଥିବାରୁ ଚମ୍ପା ଗାଁ ଚମ୍ପୁଆ ବୋଲି ନାମିତ ହୋଇଛି । ଜନଶ୍ରୁତିରେ ଚମ୍ପୁଆର ନାମକରଣ ଏପରି କରାଯାଇଥିବାବେଳେ ଇତିହାସ କହେ ଯେ ସିଂହଭୂମିର ରାଜା ଉଦିତ ନାରାୟଣ ସିଂହଙ୍କ ଧର୍ମପତ୍ନୀ ଚମ୍ପାଙ୍କ ନାମାନୁସାରେ ଚମ୍ପୁଆ ହୋଇଛି । ନାମକରଣ ଯେପରି ହେଉନା କାହିଁକି ଚମ୍ପୁଆ, ଚମକପୁର, ଚମ୍ପେଇ ଚମ୍ପାଫୁଲ ପାଇଁ ଯେ ପ୍ରସିଦ୍ଧ ଏହା କହିବା ନିଷ୍ପ୍ରୟୋଜନ । ଚମ୍ପାଫୁଲର ସୁଲଭତାକୁ ନେଇ ଆହୁରି ମଧ ପ୍ରମାଣ ଦିଆଯାଇପାରେ । ଓଡ଼ିଆ ସାରସ୍ୱତ ଜଗତର ଉଜ୍ଜ୍ୱଳ ଜ୍ୟୋତିଷ୍କ ଫକୀରମୋହନ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି- ଆନନ୍ଦପୁର କଚେରୀ ପଛପଟେ ଗୋଟେ ଅରଣା ଉଦ୍ୟାନ ଥିଲା । ସେଇ ଉଦ୍ୟାନରେ କେତେକ ଚମ୍ପାଗଛ ଥିଲା । ତାଙ୍କର ରହଣୀ କାଳରେ ସେ ସେଇ ଉଦ୍ୟାନକୁ ପରିଷ୍କାର କରି କେତେକ ଫଳଫୁଲ ଗଛ ଲଗାଇଥିଲେ । ଅତି ଅଯତ୍ନରେ ମଧ ଚମ୍ପାଗଛ କେନ୍ଦୁଝରର ମାଟିରେ ଅତି ଚମତ୍କାର ଭାବରେ ବଢ଼ିପାରେ । ତାହା ଚମ୍ପାଗଛର କେନ୍ଦୁଝର ସହ ସମ୍ପର୍କର ନିବିଡ଼ତା ଏହି କଥାରୁ ଜଣାଯାଏ । ଚମ୍ପାଫୁଲ ଶିବଙ୍କର ଅତ୍ୟନ୍ତ ପ୍ରିୟ ଓ ଶିବ ଭାବନା କେନ୍ଦୁଝରର ଜନଜୀବନ ଓ ମାନସିକତାରେ ଏକ ଦୃଢ଼ ଆସ୍ଥାନ ଜମାଇଥିବାରୁ ଏସବୁ ସମ୍ଭବ ବୋଲି ଆଧ୍ୟାତ୍ମବାଦୀମାନେ ଦାବି କରନ୍ତି । ଆଧ୍ୟାତ୍ମବାଦୀଙ୍କ ବିଶ୍ୱାସକୁ ପୁଷ୍ଟକରି କେନ୍ଦୁଝରର ଜଙ୍ଗଲବହୁଳ ବାଂଶପାଳ, ହରିଚନ୍ଦନପୁର, ଘଟଗାଁ ଓ ତେଲକୋଇ ବ୍ଲକ୍‌ଠାରୁ ଆରମ୍ଭ କରି ସମତଳ ଅଞ୍ଚଳ ଆନନ୍ଦପୁର ଘସିପୁରା ଓ ହାଟଡିହି ବ୍ଲକ୍‌ଗୁଡ଼ିକ ଯାଏ ସର୍ବତ୍ର ଚମ୍ପାଫୁଲ ବା ଚମ୍ପାଗଛ ପ୍ରଚୁର । ଚମ୍ପାଗଛର ଏପରି ଅଭିବୃଦ୍ଧି ଯୋଗୁଁ କେନ୍ଦୁଝରକୁ ଚମ୍ପକବରଣୀ ସୁନ୍ଦରୀ ସୁକୁମାରୀ ବୋଲି କୁହାଯାଇପାରେ । ଏସବୁ କବି କଳ୍ପନାର ବହ୍ୱାବୃତ୍ତି ବୋଲି କୁହାଯାଇ ପାରିବ ନାହିଁ କାରଣ ଆଜି ବି ବୈତରଣୀରେ ପହିଲି ଆଷାଢ଼ର ଚମ୍ପକବରଣୀ ବାରିଧାରା ଉପକୂଳ ଆଡ଼କୁ ବହି ଆସିଲେ ଲୋକେ କହନ୍ତି ଚମକପୁର ପାଣି ଆସିଛି, ଚମ୍ପା ରଙ୍ଗର ଚମକ ନେଇ ।

ଭୋଳାଶଙ୍କର ମହାଦେବଙ୍କୁ ସୁଗନ୍ଧରେ ବିମୋହିତ କରିବାକୁ କେନ୍ଦୁଝର ଯେପରି ଚମ୍ପାଫୁଲ ନିଜ ମସ୍ତକରେ ସଜାଇ ରଖିଛି, ସେହିପରି ନିଜ ତନୁଶ୍ରୀରେ ଚମ୍ପାରଙ୍ଗ ବୋଳି ହୋଇଛି କହିଲେ ଚଳେ । ଉପକୂଳବର୍ତ୍ତୀ ଅଞ୍ଚଳକୁ ଛାଡ଼ି ଦେଲେ ଈଷତ୍ ଲୋହିତ ମୃତ୍ତିକା ପରିହିତ କେନ୍ଦୁଝରୀ ଯେ ଚମ୍ପାଗୋରୀ ତାହା ଭୂତତ୍ତ୍ୱବିତ୍‌ଙ୍କଠାରୁ ଭାବୁକ ପର୍ଯ୍ୟନ୍ତ ସମସ୍ତେ ସ୍ୱୀକାର କରିବେ । କେନ୍ଦୁଝର ଲାଟେରାଇଟ୍ ମୃତ୍ତିକାର ଅଂଶବିଶେଷ ଅଟେ । ଲାଟେରାଇଟ୍ ମୃତ୍ତିକାରେ ଲୋହିତ ଓ ପୀତରଙ୍ଗ ମିଶ୍ରିତ ହୋଇ ରହିଥାଏ । ସେଥିପାଇଁ କେନ୍ଦୁଝରର ପ୍ରାକୃତିକ ସୌନ୍ଦର୍ଯ୍ୟ ଭଳି ତାର ମୃତ୍ତିକା ମଧ ଅତ୍ୟନ୍ତ ସୁନ୍ଦର । ହଳଦୀ ରଙ୍ଗର ଦେହରେ ଯେମିତି ସିନ୍ଦୂର ବୋଳା ଯାଇଛି କେନ୍ଦୁଝର ସେମିତି ଚମ୍ପାବୋଳା ଦେହରେ ସିନ୍ଦୂର ବୋଳି ଶିବଙ୍କର ମନୋହାରିଣୀ ସାଜିଛି । ଆଉ ଏହାପରେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ ମଙ୍ଗଳମୟଙ୍କ ମନୋରଞ୍ଜନୀ କେନ୍ଦୁଝରୀ ଚମ୍ପାଗୋରୀ ହେବା ବ୍ୟତୀତ ଗତ୍ୟନ୍ତର ଥିଲା କି ?

ନୀଳାଚଳ ହାଉସ୍
ଆନନ୍ଦପୁର, କେନ୍ଦୁଝର-୭୫୮୦୧୫

---

# ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା

ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ଅନୁସୂଚିତ ଜାତିର ମହିଳାମାନଙ୍କୁ ସ୍ୱରୋଜଗାରକ୍ଷମ ମାଧ୍ୟମରେ ଆତ୍ମନିଯୁକ୍ତି ଦେବା ଉଦ୍ଦେଶ୍ୟରେ 'ସ୍ୱର୍ଣ୍ଣଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା' ଓଡ଼ିଶା ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ଅର୍ଥ ସମବାୟ ନିଗମ ଦ୍ୱାରା ରାଜ୍ୟରେ କାର୍ଯ୍ୟକାରୀ ହେଉଅଛି ।

ଉକ୍ତ ଯୋଜନାର ନିୟମାନୁଯାୟୀ ୧୮ରୁ ୫୦ ବର୍ଷ ବୟସ ଭିତରେ ଥିବା ଅନୁସୂଚିତ ଜାତିର ମହିଳା ଗୋଷ୍ଠୀଙ୍କୁ ବିଭିନ୍ନ ପ୍ରକାରର ଯୋଜନାରେ ଥିବା ବ୍ୟବସାୟ ଯଥା- ଗୋ-ମହିଷାଦି ପାଳନ, ପଶୁ ପାଳନ, କୁକୁଡ଼ା ପାଳନ, ମତ୍ସ୍ୟଚାଷ, ଫଳଚାଷ, ଅନ୍ୟାନ୍ୟ କ୍ଷୁଦ୍ର ବ୍ୟବସାୟ ଓ ଧନ୍ଦାମୂଳକ ବ୍ୟବସାୟ ଏବଂ କୁଟୀରଶିଳ୍ପ ପାଇଁ ନିଗମ ୭ ପ୍ରତିଶତ ସୁଧରେ ୩ ବର୍ଷ ପାଇଁ ହିତାଧିକାରୀ ଗୋଷ୍ଠୀଙ୍କୁ ଋଣ ପ୍ରଦାନ କରିଥାଏ ।

ଜାନୁଆରୀ ମାସ ୨୦୦୫ ମସିହା ସୁଦ୍ଧା ଏହି ଯୋଜନାରେ ୨୧୫ ଗୋଟି ହିତାଧିକାରୀ ଗୋଷ୍ଠୀଙ୍କୁ ନିଗମ ୧୦.୭୫ ଲକ୍ଷ ଟଙ୍କାର ସହାୟତା ରାଶି ପ୍ରଦାନ କରିଛି ।

ଅନ୍ୟ ଜିଲ୍ଲାମାନଙ୍କ ତୁଳନାରେ ଗଂଜାମ, ଫୁଲବାଣୀ, ସମ୍ବଲପୁର, ବରଗଡ଼ ଓ ଖୋର୍ଦ୍ଧା ଜିଲ୍ଲାରେ ଏହି ଯୋଜନା ଅଧିକ ସଫଳତା ପାଉଛି ବୋଲି ଓଡ଼ିଶା ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ଅର୍ଥ ସମବାୟ ନିଗମ ସୂତ୍ରରୁ ପ୍ରକାଶ ।

# ସମୃଦ୍ଧ ସଂସ୍କୃତିର ସ୍ୱର - ସୋନପୁର

ଅଧ୍ୟାପକ ପବିତ୍ର ମୋହନ ବାରିକ

ମନ୍ଦିର ମାଳିନୀ ସୋନପୁର ଅତୀତରେ ସୁବର୍ଣ୍ଣପୁର ନାମରେ ଇତିହାସ, ଲୋକକଥା, କିମ୍ବଦନ୍ତୀ ଓ ଜନାଶ୍ରୁତିରେ ସୁପରିଚିତ । ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ସୋନପୁର ସହର ଇତିହାସରେ ସମ୍ମାନଜନକ ସ୍ଥାନର ଅଧିକାରୀ । ଏହାର ମନୋଜ୍ଞ ଐତିହ୍ୟ, ସାଂସ୍କୃତିକ ବିଭବ ଓ ଭୌଗଳିକ ଅବସ୍ଥିତି ଆକର୍ଷିତ କରେ ବହୁ ସଂସ୍କୃତିପ୍ରେମୀ ଜନସାଧାରଣଙ୍କୁ । ଓଡ଼ିଶାର କାଳଜୟୀ ଇତିହାସକୁ ସୋନପୁରର ଅନବଦ୍ୟ ଅବଦାନ ଅବିସ୍ମରଣୀୟ । ସୋନପୁର ସମୃଦ୍ଧି ମନ୍ଦିର ସଂସ୍କୃତିର ମହାନ୍ ନିଦର୍ଶନ । ସୋନପୁର ସ୍ୱର୍ଣ୍ଣାଭ ଅତୀତର ମୂକସାକ୍ଷୀ ରୂପେ ଦଣ୍ଡାୟମାନ । ଏହାର ନୟନାଭିରାମ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ମନ୍ଦିର ସଂସ୍କୃତି ଅନେକ ସୌନ୍ଦର୍ଯ୍ୟ ପିପାସୁ ପର୍ଯ୍ୟଟକ, ଶ୍ରଦ୍ଧାଳୁ ଧର୍ମପ୍ରାଣ ବ୍ୟକ୍ତି ଓ ବିଦ୍ୱାନ ଗବେଷକମାନଙ୍କୁ ଆକୃଷ୍ଟ କରେ । ପୁଣ୍ୟତୋୟା ମହାନଦୀ ଓ ଏହାର ଉପନଦୀ ତେଲନଦୀର ସଙ୍ଗମସ୍ଥଳରେ ସୋନପୁର ସହର ଅବସ୍ଥିତ । ଅନେକ ପ୍ରାଚୀନ ସାହିତ୍ୟରେ ସୋନପୁରର ମାହାତ୍ମ୍ୟ ବର୍ଣ୍ଣିତ । ସମ୍ବଲପୁରର ରାଜା ବଳିୟାର ସିଂହଙ୍କ ସଭାକବି ପଣ୍ଡିତ ଗଙ୍ଗାଧର ମିଶ୍ର ସ୍ୱରଚିତ 'କୋଶଳା ନନ୍ଦ ମହାକାବ୍ୟ'ରେ ସୋନପୁରକୁ ଏହାର ସୌନ୍ଦର୍ଯ୍ୟ ଓ ଅବସ୍ଥିତି ଦୃଷ୍ଟିରୁ ଦ୍ୱିତୀୟ ବାରଣାସୀ ରୂପେ ଅଭିହିତ କରିଥିଲେ । ଉକ୍ତ ଗ୍ରନ୍ଥରେ ସେ ଉଲ୍ଲେଖ କରିଥିଲେ -

'ଉତ୍କଳେଷୁ ତ୍ରୟୋ ପୁଣ୍ୟା
ପୁଣ୍ୟା ମାର୍ଜାର କେଶରୀ
ସୁବର୍ଣ୍ଣାଖ୍ୟାପୁରୀ ପୁଣ୍ୟା
ପୁଣ୍ୟା ଚିତ୍ରୋତ୍ପଳା ନଦୀ ।'

ବର୍ତ୍ତମାନର ସୁବର୍ଣ୍ଣପୁର ଜିଲ୍ଲାର ସଦର ମହକୁମା ସୋନପୁର । ସୁବର୍ଣ୍ଣପୁର ଜିଲ୍ଲା ଓ ଏହାର ସଦର ମହକୁମା ସୋନପୁର ଅଷ୍ଟ 'ମ' କାର ଯଥା- ମହାନଦୀ, ମନ୍ଦିର, ମଙ୍ଗା, ମାଛ, ମଠାପାଟ, ମଲ୍ଲିଫୁଲ, ମଙ୍ଗ ଓ ମୁଗ ପାଇଁ ପ୍ରସିଦ୍ଧ । ସୋନପୁର ନିକଟରେ ମହାନଦୀ ପୂର୍ଣ୍ଣ ଯୌବନ ପ୍ରାପ୍ତ । ତେଲ ନଦୀ ସୋନପୁରଠାରେ ମହାନଦୀ ସହିତ ମିଳିତ ହୋଇ ସୁନ୍ଦର ପ୍ରାକୃତିକ ପରିବେଶ ସୃଷ୍ଟି କରିଅଛି । ସୋନପୁରଠାରେ ମହାନଦୀର ଲଙ୍କେଶ୍ୱରୀ ଗଣ୍ଡ ସନ୍ତରଣ, ନୌକା



ଗୁଣ୍ଡିଚା ମନ୍ଦିର - ସୋନପୁର

ବିହାର ଓ ମତ୍ସ୍ୟ ଧାରଣ ପାଇଁ ପ୍ରକୃଷ୍ଟ କ୍ଷେତ୍ର । ସୋନପୁରର କେଉଟ ସଂପ୍ରଦାୟ ମାଛ ଧରିବା ବିଦ୍ୟାରେ ସିଦ୍ଧହସ୍ତ । ସୁବର୍ଣ୍ଣପୁର ଜିଲ୍ଲା ସୁବାସିତ ମଲ୍ଲୀ ଫୁଲ ପାଇଁ ପ୍ରସିଦ୍ଧ । ରାଜା ନୀଳଧର ସିଂହ ଦେଓ ମଲ୍ଲୀ ଫୁଲ ହାତରେ ଧରି ଦରବାରକୁ ବିଜେ କରୁଥିବାର ଜନସାଧାରଣଙ୍କ ନିକଟରୁ ଶୁଣାଯାଏ । ଏଠିକାର କଳା ଦେଶୀ ମୁଗ ଅତି ସ୍ୱାଦିଷ୍ଟ । ପ୍ରତ୍ୟେକ ଘରେ ମଙ୍ଗା (ତନ୍ତ) ଦେଖାଯାଏ । ସୁବର୍ଣ୍ଣପୁର ଜିଲ୍ଲାର ବୁଣାକାରମାନଙ୍କର ମଠାପାଟ ଦେଶ ବିଦେଶରେ ଆଦୃତ ।

ସୋମବଂଶୀ ଓ ଗଙ୍ଗବଂଶୀ ଶାସକମାନଙ୍କ ସମୟରୁ ସୋନପୁରର ସମୃଦ୍ଧି ସାଂସ୍କୃତିକ ପରମ୍ପରା ସୃଷ୍ଟି । ସମ୍ବଲପୁରର ତୃତୀୟ ଚୌହାନ୍ ବଳଭଦ୍ର ଦେବ ପ୍ରାୟ ୧୬୨୫ ଖ୍ରୀଷ୍ଟାବ୍ଦରେ ବଉଦ ରାଜା ସିଦ୍ଧଭଞ୍ଜଙ୍କୁ ପରାସ୍ତ କରି ସୋନପୁର ଅଞ୍ଚଳ ନିଜ ରାଜ୍ୟରେ ଅନ୍ତର୍ଭୁକ୍ତ କରିଥିଲେ । ଚୌହାନ୍ ବଂଶର ଚତୁର୍ଥ ରାଜାମଧୁକର ଦେବ ତାଙ୍କର ଦ୍ୱିତୀୟ ପୁତ୍ର ମଦନ ଗୋପାଳ ସିଂହଦେଓଙ୍କୁ ସୋନପୁରରେ ରାଜା କରାଇ ସେଠାରେ ସମ୍ବଲପୁର ସାର୍ବଭୌମତ୍ୱରେ ସ୍ୱତନ୍ତ୍ର ଚୌହାନ୍ ରାଜ୍ୟ ପ୍ରତିଷ୍ଠା ପାଇଁ ଅନୁମତି ପ୍ରଦାନ କରିଥିଲେ । ଚୌହାନ୍ ରାଜବଂଶର ରାଜତ୍ୱ ସମୟରେ ସୋନପୁରରେ ଅନେକ ସୁରମ୍ୟ ମନ୍ଦିରମାନ ନିର୍ମାଣ କରାଯାଇ ଆଧ୍ୟାତ୍ମିକ କ୍ଷେତ୍ରରେ ନୂତନ ଅଧ୍ୟାୟ ଆରମ୍ଭ କରାଯାଇଥିଲା । ମନ୍ଦିରମାଳିନୀ ସହର ରୂପେ ସୋନପୁରର ଖ୍ୟାତି ଆଧ୍ୟାତ୍ମିକ ବିଶ୍ୱରେ ବିସ୍ମୟ । ସୋନପୁର ସହରରେ ଛୋଟ ବଡ଼ ଶହେ ଆଠ ମନ୍ଦିର ଦେଖାଯାଏ । ଏଠାରେ ପ୍ରମୁଖ ମନ୍ଦିରମାନଙ୍କ

ମଧ୍ୟରେ ଶ୍ରୀରାମେଶ୍ୱର, ଶ୍ରୀଗୋପାଳୁଣୀ ମନ୍ଦିର, ଶ୍ରୀଗୋପୀନାଥ ମନ୍ଦିର, ଶ୍ରୀପଶ୍ଚିମ ସୋମନାଥ ମନ୍ଦିର, ଶ୍ରୀଜଗନ୍ନାଥ ମନ୍ଦିର, ଶ୍ରୀଗୁଣ୍ଡିଚା ମନ୍ଦିର, ଶ୍ରୀସୁରେଶ୍ୱରୀ ମନ୍ଦିର, ଶ୍ରୀମାଣିକେଶ୍ୱରୀ ମନ୍ଦିର, ଶ୍ରୀଖମେଶ୍ୱରୀ ମନ୍ଦିର, ଶ୍ରୀସମଲେଶ୍ୱରୀ ମନ୍ଦିର ପ୍ରଧାନ । ସୁବର୍ଣ୍ଣପୁର ଜିଲ୍ଲାର ଇଷ୍ଟ ଦେବତା ସୁବର୍ଣ୍ଣଗମ୍ଭ ବା ସୁବର୍ଣ୍ଣମେରୁ ମହାଦେବ । ସୁବର୍ଣ୍ଣମେରୁ ମହାଦେବଙ୍କ ମନ୍ଦିର ତେଲ ନଦୀର ବାମପାର୍ଶ୍ୱରେ ଏକ ମନୋଜ୍ଞ ପ୍ରାକୃତିକ ପରିବେଶ ମଧ୍ୟରେ ଅବସ୍ଥିତ । ଏହି ମନ୍ଦିର ନିର୍ମାଣ ସମୟକୁ ନେଇ ବହୁ ଗବେଷକ ଓ ଐତିହାସିକମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଏ । ବି.ସି. ମଜୁମଦାରଙ୍କ ରଚିତ ପୁସ୍ତକ 'ଓଡ଼ିଶା ମେକିଙ୍ଗ୍'ରେ ଉଲ୍ଲେଖ ଅଛି -

ସୋନପୁର ଚୌହାନ୍ ରାଜବଂଶର ପ୍ରଥମ ନରପତି ମଦନ ଗୋପାଳ ସିଂହ ଦେଓ (୧୬୩୦-୧୬୬୦)ଙ୍କ ରାଜତ୍ୱ ସମୟରେ ଉକ୍ତ ମନ୍ଦିର ନିର୍ମିତ । କିନ୍ତୁ ଏସ୍.ଆର୍. ପାଢ଼ୀ ମତ ବ୍ୟକ୍ତ କରନ୍ତି ଉକ୍ତ ମନ୍ଦିର ମହାରାଜା ଲାଲ ସାହେବଙ୍କ (୧୬୬୦-୧୬୮୦) ଶାସନ ସମୟରେ ନିର୍ମାଣ କରାଯାଇଥିଲା । ଏକ ପ୍ରଚଳିତ ଲୋକ କଥା ଅନୁଯାୟୀ - ନେଉଳି ସାହୁ ନାମକ ଏକ ବ୍ୟବସାୟୀ ଏହି ମନ୍ଦିର ନିର୍ମାଣ କରିଥିଲେ । ସୁବର୍ଣ୍ଣମେରୁ ମହାଦେବଙ୍କର ପ୍ରତିଷ୍ଠା ଦିନ ସୋନପୁରରେ ଅଢ଼େଇ ଦଣ୍ଡ ସୁବର୍ଣ୍ଣ ବର୍ଷା ହୋଇଥିବାର ଜନସାଧାରଣ ବିଶ୍ୱାସ କରନ୍ତି । ହୁଏତ ଏହି କାରଣରୁ ସୋନପୁର ଅତୀତରେ ସୁବର୍ଣ୍ଣପୁର ନାମରେ ପରିଚିତ ଥିଲା । ସୋନପୁରର ମାଟି ତଳୁ ଏବେ ମଧ୍ୟ ତ୍ରିଶୂଳ, ଡମ୍ବରୁ, ଚନ୍ଦ୍ର, ବୃଷଭ ଚିହ୍ନିତ ସୁନାର ଗୁପ୍ତ ଓ କୁଷାଣ ଯୁଗୀୟ ମୋହର ମିଳୁଅଛି । ଜନସାଧାରଣ ବିଶ୍ୱାସ କରନ୍ତି ଉକ୍ତ ମୋହରଗୁଡ଼ିକ ସେହି ସୁବର୍ଣ୍ଣ ବର୍ଷା ସମୟର । ସୁରେଶ୍ୱରୀ ସୁବର୍ଣ୍ଣପୁର ଜିଲ୍ଲାର ଅଧିଷ୍ଠାତ୍ରୀ ଦେବୀ । ରାଜବଂଶର ରାଜତ୍ୱ ସମୟରେ ସୁରେଶ୍ୱରୀ ଦେବୀଙ୍କ ମନ୍ଦିର ନିକଟରେ ନରବଳି ଦିଆଯାଉଥିବାର ଲୋକମୁଖରେ ଶୁଣାଯାଏ । ଏପରି କି ମହାରାଜା ବୀରମିତ୍ର ସିଂହ ଦେଓଙ୍କ ରାଜତ୍ୱ ସମୟରେ ନରବଳି ଦିଆଯିବାର ଲୋକକଥାରେ ଶୁଣାଯାଏ । ସୁରେଶ୍ୱରୀ ଦେବୀଙ୍କୁ ଅନେକ ପର୍ଶୁରାମଙ୍କ ମାତା ରେଣୁକା ବୋଲି ଅଭିହିତ କରନ୍ତି କାରଣ ସୁରେଶ୍ୱରୀ ମନ୍ଦିର ନିକଟରେ ପର୍ଶୁରାମ ଯଜ୍ଞ କରିଥିବାର ପ୍ରମାଣ ମିଳେ । ବର୍ତ୍ତମାନର ସୁରେଶ୍ୱରୀ ମନ୍ଦିର ରାଜା ଅଚଳ ସିଂହ ଦେବ ନିର୍ମାଣ କରିଥିଲେ । ପ୍ରତିଦିନ ସୁରେଶ୍ୱରୀ ଦେବୀଙ୍କୁ ମାଛ ଅର୍ପଣ କରାଯାଏ । ସୁରେଶ୍ୱରୀ ଦେବୀଙ୍କ ମୁଖ୍ୟ ଉତ୍ସବ ବଳିଯାତ୍ରା, ଆଶ୍ୱିନ ଅମାବାସ୍ୟାଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଦୀର୍ଘ ପନ୍ଦର ଦିନ ବ୍ୟାପି ଅନୁଷ୍ଠିତ ହୁଏ । ସୋନପୁରର ଗୁଣ୍ଡିଚା ମନ୍ଦିର ପଶ୍ଚିମ ଓଡ଼ିଶାର ବୃହତ୍ ମନ୍ଦିର ଯାହାର ଉଚ୍ଚତା ୩୪.୭ ମିଟର । ଦଶପଲ୍ଲାର ରାଜକନ୍ୟା ପୃଥ୍ୱୀ ସିଂହ ଦେବଙ୍କ ପତ୍ନୀ ରାଣୀ ଗୁଣ୍ଡିଚା ଦେବୀ ନିଜ ପୁତ୍ର ନୀଳଧର ସିଂହଦେବଙ୍କ ଜନ୍ମସ୍ମୃତିର ଉଦ୍ଦେଶ୍ୟରେ ଭଗବାନ ନୃସିଂହଙ୍କୁ ଉକ୍ତ ମନ୍ଦିର ଉତ୍ସର୍ଗ କରିଥିଲେ । ସାଧାରଣରେ ଏହା ଗୁଣ୍ଡିଚା ମନ୍ଦିର ନାମରେ ସୁପରିଚିତ । ସୋନପୁରର ମହାନଦୀ କୂଳସ୍ଥ ଭଗ୍ନ ରାଜବାଟୀ ସମ୍ମୁଖରେ ଶ୍ରୀଜଗନ୍ନାଥ ମନ୍ଦିର ଅବସ୍ଥିତ । ସଦାନନ୍ଦ ଅଗ୍ରୱାଲାଙ୍କ ମତରେ ଉକ୍ତ ମନ୍ଦିରର ନିର୍ମାଣ ମହାରାଜା ଶୋଭା ସିଂହଦେଓ (୧୭୭୧-୧୭୮୬) କରିଥିଲେ । କିନ୍ତୁ ଏସ୍.ଆର୍. ପାଢ଼ୀ ଉଲ୍ଲେଖ କରିଛନ୍ତି ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାତା ମହାରାଜା ରାଜ ସିଂହଦେଓ । ମହାନଦୀ ଓ ତେଲ ନଦୀର ସଙ୍ଗମ ସ୍ଥଳରେ ପ୍ରସିଦ୍ଧ ଶୈବ ମନ୍ଦିର ରାମେଶ୍ୱର ଅବସ୍ଥିତ । ସ୍ଥାନୀୟ ଜନସାଧାରଣ ବିଶ୍ୱାସ କରନ୍ତି : ଶ୍ରୀରାମଚନ୍ଦ୍ର ଉକ୍ତ ମନ୍ଦିର ନିର୍ମାଣ କରି ଲଙ୍କା ଅଭିମୁଖେ ଯାତ୍ରା କରିବା ପୂର୍ବରୁ ଏଠାରେ ଶିବଲିଙ୍ଗ ସ୍ଥାପନ କରିଥିଲେ । ମାଣିକେଶ୍ୱରୀ ମନ୍ଦିର ସୋନପୁର-ମନମୁଣ୍ଡା ରାସ୍ତାର ଡାହାଣ ପାର୍ଶ୍ୱରେ ଅବସ୍ଥିତ । ମାଣିକେଶ୍ୱରୀ ମତ୍ସ୍ୟଜୀବୀ କେଉଟ ସଂପ୍ରଦାୟର ଅଧିଷ୍ଠାତ୍ରୀ ଦେବୀ । ଚାମର ମହାଲିକ ନାମ ଜନୈକ କେଉଟ ଜାତିର ମୁଖ୍ୟ ମହାରାଜା ପ୍ରତାପରୁଦ୍ର ସିଂହ ଦେଓଙ୍କ ରାଜତ୍ୱ ସମୟରେ ନିର୍ମାଣ କରିଥିଲେ । ସୋନପୁରସ୍ଥିତ ମହାନଦୀ ଗର୍ଭରେ ଥିବା ଏକ ଶିଳା ଲଙ୍କେଶ୍ୱରୀ ନାମରେ ନାମିତ । ଏହା ନାବିକମାନଙ୍କ ଦ୍ୱାରା ପୂଜିତ । ସୋନପୁରର ସମଲେଶ୍ୱରୀ ମନ୍ଦିର ମହାନଦୀର ଡାହାଣ ପାର୍ଶ୍ୱରେ ଏବଂ ରାଜପ୍ରାସାଦର ଦକ୍ଷିଣ-ପୂର୍ବ ଦିଗରେ ଅବସ୍ଥିତ । ସମଲେଶ୍ୱରୀ ଦେବୀ ସମ୍ବଲପୁର ଓ ସୋନପୁର ଚୌହାନ୍ ରାଜବଂଶର ଇଷ୍ଟ ଦେବୀ । ଉକ୍ତ ମନ୍ଦିର ମହାରାଜା ଶୋଭା ସିଂହ ଦେଓଙ୍କ ଦ୍ୱାରା ନିର୍ମିତ । ପଶ୍ଚିମ ସୋମନାଥ ମନ୍ଦିର ଜଣେ ଭକ୍ତଙ୍କ ଦ୍ୱାରା ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇଥିଲା । କିନ୍ତୁ ସଂପୂର୍ଣ୍ଣ କରାଯାଇ ପାରିନଥିଲା ଅନେକ ବର୍ଷ ପର୍ଯ୍ୟନ୍ତ । ତେଣୁ ଏହାକୁ ଖଣ୍ଡିଆ ଦେଉଳ କୁହାଯାଏ । ଏହି ମନ୍ଦିରର ନିର୍ମାଣ କାର୍ଯ୍ୟର ପରିସମାପ୍ତି କରାଇଥିଲେ ମହାରାଜା ପ୍ରତାପରୁଦ୍ର ସିଂହଦେଓ (୧୮୯୧-୧୯୦୨)ଙ୍କ ରାଜତ୍ୱ ସମୟରେ । ଅନ୍ୟ ଏକ ମନୋରମ ଶୈବ ମନ୍ଦିର ସୋନପୁର ବସ୍‌ଷ୍ଟାଣ୍ଡ ନିକଟରେ ଅବସ୍ଥିତ । ଉକ୍ତ ମନ୍ଦିର ପଞ୍ଚରଥ ମନ୍ଦିର ନାମରେ ପରିଚିତ । ଏହା ପାଞ୍ଚଟି ମନ୍ଦିରର ସମାରୋହ । ସ୍ଥାନୀୟ ଜନସାଧାରଣଙ୍କ କହିବା ଅନୁଯାୟୀ ପଞ୍ଚ ଦେବତା ଯଥା- ଗଣେଶ, ନାରାୟଣ, ରୁଦ୍ର, ଅମ୍ବିକା ଓ ଭାସ୍କରଙ୍କ ପାଇଁ ଉକ୍ତ ମନ୍ଦିର ନିର୍ମାଣ କରାଯାଇଥିଲା । କୌଣସି



ପଞ୍ଚରଥ ମନ୍ଦିର - ସୋନପୁର

କାରଣବଶତଃ ଏହି ପଞ୍ଚଦେବତାମାନେ ମନ୍ଦିର ମଧ୍ୟରେ ସ୍ଥାପିତ ହୋଇନଥିଲେ । ସ୍ୱାଧୀନତା ପରେ ଉକ୍ତ ମନ୍ଦିର ଅବହେଳିତ ଅବସ୍ଥାରେ ପଡ଼ି ରହିଥିଲା । ନିକଟ ଅତୀତରେ ଉକ୍ତ ମନ୍ଦିର ପ୍ରତିଷ୍ଠା କରାଯାଇ ପଞ୍ଚଦେବତା ପରିବର୍ତ୍ତେ ଶିବଙ୍କ ସହିତ ତାଙ୍କ ପରିବାର ଯଥା- ପାର୍ବତୀ, ଗଣେଶ, କାର୍ତ୍ତିକେୟ ଓ ନନ୍ଦି ସ୍ଥାପନ କରାଯାଇ ଅଛି । ପଞ୍ଚରଥ ମନ୍ଦିର ମହାରାଜା ବୀରମିତ୍ର ସିଂହ ଦେଓ ନିଜର ପୁତ୍ର ସୋମଭୂଷଣ ଯେ କି ଅକାଳ ମୃତ୍ୟୁମୁଖରେ ପଡ଼ିଥିଲେ, ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ନିର୍ମାଣ କରିଥିଲେ । ଶଶି ସେନା ନାମରେ ଏକ ମନ୍ଦିର ବଲାଙ୍ଗୀର-ସୋନପୁର ରାସ୍ତାର ବାମପାର୍ଶ୍ୱରେ ଏବଂ ପଶ୍ଚିମ ସୋମନାଥ ମନ୍ଦିର ପଶ୍ଚିମ ଦିଗରେ ଅବସ୍ଥିତ । ମନ୍ଦିର ମଧ୍ୟରେ କୌଣସି ଦେବାଦେବୀ ପୂଜିତ ହେଉ ନାହାନ୍ତି । ଉକ୍ତ ମନ୍ଦିରର ମଧ୍ୟ ପ୍ରବେଶ ଦ୍ୱାର ନାହିଁ । ତେଣୁ ଏହା ନିମୁହିଁ ଦେଉଳ ନାମରେ ପରିଚିତ । ଦେବାନ ପୁତ୍ର ଅହିମାଣିକ୍ୟ ଓ ରାଜକୁମାରୀ ଶଶି ସେନାର ସ୍ୱର୍ଗୀୟ ପ୍ରେମ ଓ ଭଲ ପାଇବାର ନିଦର୍ଶନ ସ୍ୱରୂପ ଉକ୍ତ ମନ୍ଦିର ନିର୍ମିତ । ଏହି କିମ୍ବଦନ୍ତୀ ସୋନପୁର ରାଜଦରବାର କବି ପ୍ରତାପ ରାୟଙ୍କ ରଚିତ 'ଶଶି ସେନା' କାବ୍ୟରେ ଦେଖିବାକୁ ମିଳେ । ବର୍ତ୍ତମାନର ଶଶି ସେନା ମନ୍ଦିରର ନିର୍ମାତା ବୀରମିତ୍ର ସିଂହଦେଓ (୧୯୦୨-୧୯୩୭) ।



ସୋନପୁରର ମାଣିକେଶ୍ୱରୀ ମନ୍ଦିର

୧୯୮୦ ଖ୍ରୀଷ୍ଟାବ୍ଦରେ ପୁନେ ବିଶ୍ୱବିଦ୍ୟାଳୟର ପ୍ରତ୍ନତତ୍ତ୍ୱ ବିଭାଗର ମୁଖ୍ୟ ପ୍ରାଧ୍ୟାପକ ଡଃ ଏଚ୍.ଏସ୍. ସଂଖ୍ୟାଲିଆ ରାମାୟଣର ଲଙ୍କା ସୋନପୁରକୁ ବିବେଚନା କରି ତାଙ୍କର ଶିଷ୍ୟ ଡଃ ଅଶୋକ ମରାଘେଙ୍କୁ ପଠାଇଥିଲେ । ରାମାୟଣ ବର୍ଣ୍ଣିତ ଲଙ୍କେଶ୍ୱରୀ ଦେବୀ, ସୁବଳଗିରି, ମରୀଚପୁର, ବିନୀତପୁର, ଆଦି ଏଠାରେ ଅବସ୍ଥିତ । ଡଃ ସଂଖ୍ୟାଲିଆଙ୍କ ଦୃଷ୍ଟିରେ ବର୍ତ୍ତମାନର ସିଂହଳ ଦ୍ୱୀପ ରାମାୟଣ ବର୍ଣ୍ଣିତ ଲଙ୍କା ନୁହେଁ । କାରଣ ସୀତା ଦେବୀଙ୍କର ସ୍ୱୟଂମ୍ବର ଉତ୍ସବରେ ଉଭୟେ ସିଂହଳାଧିପତି ଓ ଲଙ୍କାପତି ଉପସ୍ଥିତ ଥିଲେ । ତେଣୁ ସିଂହଳ ଲଙ୍କା ହୋଇ ନପାରେ । ସୋନପୁର ନିକଟସ୍ଥ ଅସୁରଗଡ଼ରେ ୨୫ ଫୁଟ ମାଟି ଖୋଳିଲା ପରେ ଲଙ୍କାଗଡ଼ର କୌଣସି ସନ୍ଧାନ ମିଳିଲା ନାହିଁ । କିନ୍ତୁ ଭୂଗର୍ଭରୁ ଅକ୍ଷତ ଅବସ୍ଥାରେ ଯେଉଁ ମାଟିପାତ୍ର ଉଦ୍ଧାର କରାଗଲା ତାହା ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀର ଗ୍ରୀସ୍ ଓ ରୋମୀୟ ସଭ୍ୟତାର ମାଟିପାତ୍ର । ସୋନପୁର ଅଞ୍ଚଳ ଗ୍ରୀସ୍ ଓ ରୋମ ସହିତ ବାଣିଜ୍ୟିକ ସୁସମ୍ପର୍କ ପ୍ରତିଷ୍ଠା କରିଥିଲା ।

ଏହି ମାଟିପାତ୍ର ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ସଂରକ୍ଷିତ । ଏହି ଖନନ କାର୍ଯ୍ୟରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ପ୍ରଖ୍ୟାତ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ସ୍ୱର୍ଗତଃ ନବୀନ କୁମାର ସାହୁ, ଡଃ ସଂଖ୍ୟାଲିଆଙ୍କୁ ସାହାଯ୍ୟ କରିଥିଲେ । ପରେ ଡଃ ସଂଖ୍ୟାଲିଆଙ୍କର ଦୁଇ ଜଣ ଶିଷ୍ୟ ଡଃ କୁଲକର୍ଣ୍ଣି ଓ ଡଃ ଆନସାରୀଙ୍କ ଦ୍ୱାରା ସୋନପୁରକୁ ଲଙ୍କା ରୂପେ ଗ୍ରହଣ କରିବା ଭୁଲ୍ ପ୍ରମାଣିତ ହେଲା । ବୀର ମହାରାଜାପୁର ନିକଟବର୍ତ୍ତୀ ବେଲଗାଁରୁ ପ୍ରାପ୍ତ ତାମ୍ର ଫଳକରୁ ଜଣାଯାଏ ପୂର୍ବେ ସୋନପୁର ପଶ୍ଚିମ ଲଙ୍କା ରୂପେ ଅଭିହିତ ଥିଲା ।

ସମ୍ବଳ (ସମ୍ବଲପୁର)ର ରାଜା ଇନ୍ଦ୍ରଭୂତି ଅଷ୍ଟମ ଶତକରେ ମହାଯାନ ବୌଦ୍ଧ ଧର୍ମରୁ ବଜ୍ରଯାନ ପ୍ରବର୍ତ୍ତନ କଲେ । ଇନ୍ଦ୍ରଭୂତିଙ୍କର ପ୍ରଥମ ଶିଷ୍ୟା ଥିଲେ ତାଙ୍କର ଭଗ୍ନୀ ଲକ୍ଷ୍ମୀକରା । ସୋନପୁର ରାଜା ଜଳେନ୍ଦ୍ରଙ୍କର ପୁତ୍ରବଧୂ ଥିଲେ ଲକ୍ଷ୍ମୀକରା । ପରବର୍ତ୍ତୀ ସମୟରେ ଲକ୍ଷ୍ମୀକରା ବୌଦ୍ଧଧର୍ମରେ ଏକ ନୂତନ ମତବାଦ ପ୍ରଚଳନ କଲେ ତାହା ସହଜ ଯାନ ନାମରେ ପରିଚିତ । ଲକ୍ଷ୍ମୀକରାଙ୍କ ମତରେ ପିଣ୍ଡ ଓ ବ୍ରହ୍ମାଣ୍ଡ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଶରୀର ମଧ୍ୟରେ ସମସ୍ତ ପୀଠ, ତତ୍ତ୍ୱ ଓ ତୀର୍ଥ ଅବସ୍ଥିତ । ସହଜାତ ପ୍ରବୃତ୍ତିର ବିକାଶ ଦ୍ୱାରା ହିଁ ନିର୍ବାଣ ପ୍ରାପ୍ତି ହୁଏ ବିନାଶ ଦ୍ୱାରା ନୁହେଁ । ଲକ୍ଷ୍ମୀକରା ବୌଦ୍ଧଧର୍ମର ୮୪ ସିଦ୍ଧମାନଙ୍କ ମଧ୍ୟରେ ଏକମାତ୍ର ନାରୀ । ଲକ୍ଷ୍ମୀକରା ଓ ପଦ୍ମ ସମ୍ଭବଙ୍କ କିଛିକାଳ ପୂର୍ବେ ବୌଦ୍ଧଧର୍ମରେ ତନ୍ତ୍ରଶାସ୍ତ୍ର ପ୍ରଚଳିତ ହୋଇଥିଲା । ଲକ୍ଷ୍ମୀକରା ସହଜଯାନ ତତ୍ତ୍ୱ ପ୍ରତିପାଦନ କରିବା ଫଳରେ ତନ୍ତ୍ର ଚର୍ଚ୍ଚା ପ୍ରସାରିତ ହେଲା । ପଣ୍ଡିତ ପିତୋପାଦ ଚକ୍ର ସମ୍ବର ତନ୍ତ୍ର (ଯାହାକି ସମ୍ବଲପୁରର ତନ୍ତ୍ର) ପ୍ରତିପାଦନ କଲେ । ସୋନପୁରର ପଣ୍ଡିତ ଜୟଦ୍ରଥ ଚୀନ ଦେଶରେ ସମ୍ବର ତନ୍ତ୍ରକୁ ଚୀନ ଭାଷାରେ ଅନୁବାଦ କରିଥିଲେ । ସୋନପୁର ଏକ ପ୍ରସିଦ୍ଧ ତନ୍ତ୍ରପୀଠ ରୂପେ ପରିଚିତ ଥିଲା । ଲକ୍ଷ୍ମୀକରାଙ୍କର ସହଜ ଯାନ ଅନୁସରଣ କରି ସାତ ଜଣ କୁମାରୀ ସିଦ୍ଧିଲାଭ କରିଥିବାର କିମ୍ବଦନ୍ତୀ ପ୍ରଚଳିତ । ସେମାନେ ଥିଲେ ନିତେଇ ଧୋବଣୀ, ଜ୍ଞାନ ଦେଇ ମାଲୁଣୀ, ଲୁହକୁଟୀ ଲହୁରୁଣୀ, ଶୁଆ ତେଲୁଣୀ, ଶୁକୁଟି ଚମାରୁଣୀ, ପତ୍ର ପିନ୍ଧି ସଉରୁଣୀ ଓ ଗାଙ୍ଗୀ ଗଉଡୁଣୀ । ସେହି କୁମାରୀମାନଙ୍କ ପାଇଁ ପାଟଣା ରାଜ୍ୟର ନାମ କୁମାରୀପାଟଣା ବା କାଉଁରୀପାଟଣା । ପଶ୍ଚିମ ଓଡ଼ିଶାର ଜଣେ ରାଜପୁରୁଷ ସିଂହାସନ ତ୍ୟାଗ କରି ସହଜଯାନରେ ସିଦ୍ଧିଲାଭ ପରେ ନିଜକୁ ଦାରିକପାଦ ରୂପେ ଅଭିହିତ କରିଥିଲେ । ସୋନପୁର ନିକଟସ୍ଥ ମହାନଦୀ ଗର୍ଭରେ ଯେଉଁ ଶିଳାଖଣ୍ଡ ଉପରେ ସେ ତନ୍ତ୍ର ସାଧନା କରୁଥିଲେ, ତାହା ଦାରୀ




ମହାନଦୀ କୂଳରେ ଭଗ୍ନ ରାଜବାଟୀ - ସୋନପୁର

ପଥର ନାମରେ ଆଜି ପର୍ଯ୍ୟନ୍ତ ପରିଚିତ । ଆଶ୍ୱିନ ମାସ ମହାଳୟା ଆମାବାସ୍ୟାଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଦୀର୍ଘ ପନ୍ଦରଦିନ ଧରି ସୋନପୁରରେ ଅଷ୍ଟଚଣ୍ଡୀ ମନ୍ଦିରମାନଙ୍କରେ ପ୍ରଖ୍ୟାତ ବଳି ଯାତ୍ରା ଅନୁଷ୍ଠିତ ହୁଏ । ପ୍ରସିଦ୍ଧବଳି ଯାତ୍ରା ଅତ୍ୟନ୍ତ ଲୋମହର୍ଷଣକାରୀ । ଶତାଧିକ ଛାଗ ମେଷାଦି ବଳି ପ୍ରଦାନ କରାଯାଏ । ଦଶମୀ ଓ ପୂର୍ଣ୍ଣମୀ ଦିନ ସମଲେଶ୍ୱରୀ ମନ୍ଦିରରେ ପୋଡ଼ବଳି ଦିଆଯାଏ । ପଞ୍ଚମୀ ଦିନ ବରୁଆ ଖଉଳ ଗାତରୁ ମାଟିକାଠି ନିଶା ରାତ୍ରରେ ସହର ପରିକ୍ରମା କରେ ବ୍ରାହ୍ମଣ ମନ୍ତ୍ର ପାଠ କରନ୍ତି ଏବଂ ଷୋହଳ ଭଉଣୀ ବାହ୍ୟ ବାଜେ ବରୁଆ ଦେହରେ ଦୈବୀଶକ୍ତି ପ୍ରବେଶ କରେ, ବାଦ୍ୟର ତାଳେ-ତାଳେ ନୃତ୍ୟ କରେ । ଏହି ସମୟରେ କଇଁ ଫୁଲ ବା ଠାକୁରାଣୀ ଯାତ୍ରା ନାମରେ ଅନ୍ୟ ଏକ ଯାତ୍ରା ଅନୁଷ୍ଠିତ ହୁଏ । ନିଆଁମଡ଼ା, କଣ୍ଟାଫୋଡ଼ା, ବିଛୁଆତି ପତ୍ର ଲେପନ ଓ ରକ୍ତପାନ ଇତ୍ୟାଦି ପରୀକ୍ଷା ବରୁଆକୁ ଦେବାକୁ ପଡ଼ିଥାଏ । ଜିଲ୍ଲା ପ୍ରଶାସନ ଦ୍ୱାରା ବଳିପ୍ରଥା ବିଗତ କେତେ ବର୍ଷ ହେଲା ବନ୍ଦ କରାଯାଇଅଛି ।

ସତ୍ୟ ମହିମା ଧର୍ମର ଶ୍ରେଷ୍ଠ ପ୍ରବକ୍ତା ତଥା ମହିମା ଗୋସାଇଁଙ୍କର ପ୍ରମୁଖ ଶିଷ୍ୟ ଭୀମ ଭୋଇ ସୋନପୁର ନିକଟସ୍ଥ ଖଲିଆ ପାଲିଠାରେ ଏକ ଆଶ୍ରମ ପ୍ରତିଷ୍ଠା କରି ମାନବ ଧର୍ମର ମହାମନ୍ତ୍ର ଉଚ୍ଚାରଣ କରିଥିଲେ । ଯୋରନ୍ଦା ପରେ ଖଲିଆ ପାଲି ମହିମା ଧର୍ମର ଦ୍ୱିତୀୟ ବୃହତ୍ତମ ଉପାସନାସ୍ଥଳୀ । ଏହି ଆଶ୍ରମରେ ଥିବା ସମୟରେ ଭୀମଭୋଇ ରଚନା କରିଥିଲେ କାଳଜୟୀ ଗ୍ରନ୍ଥ 'ସ୍ତୁତି ଚିନ୍ତାମଣି' । ଜଗତର ଉଦ୍ଧାର ଲାଗି ନିଜର ଜୀବନକୁ ଉତ୍ସର୍ଗ କରିବା ପାଇଁ ଅଙ୍ଗୀକାରବଦ୍ଧ ଥିଲେ । ତତ୍କାଳୀନ ସମୟରେ ଅନ୍ଧବିଶ୍ୱାସକୁ ସଂସ୍କାର, ରାଜା ଓ ସାହୁକାରମାନଙ୍କର ଅନ୍ୟାୟ ନୀତି ବିରୁଦ୍ଧରେ ସ୍ମରଣ ଉତ୍ତୋଳନ କରି ଭୀମଭୋଇ ରଚନା କରିଥିଲେ -

'ରାଜାର ପରଜା ନୋହୁ ସିନା ଆମେ
ନୋହୁ ସାହୁର ଖାତକ
ଯହିଁ ଗୁରୁ ନେବେ ତହିଁ ଯାଉଁ ଆମେ
କେବାକରୁ ଅଟକ ।'

ମହିମା ଧର୍ମର ପ୍ରସାର ଓ ଭୀମଭୋଇଙ୍କର ଲୋକପ୍ରିୟତାରେ ଈର୍ଷାନ୍ୱିତ ହୋଇ ସୋନପୁର ରାଜା ନୀଳଧର ସିଂହଦେଓ ଭୀମଭୋଇଙ୍କ ଅଗ୍ନି ପରୀକ୍ଷା ଦେବା ପାଇଁ ଦରବାର ସମ୍ମୁଖରେ କାଠ ପ୍ରସ୍ତୁତ କରି ରଖିଥିଲେ । ମାତ୍ର ଜ୍ଞାନୀ, ଗୁଣି ଓ ଦୟାଳୁ ଯୁବରାଜ ପ୍ରତାପରୁଦ୍ର ସିଂହଦେଓଙ୍କ ଅନୁରୋଧକ୍ରମେ ଭୀମଭୋଇଙ୍କ ଅଗ୍ନି ପରୀକ୍ଷା ସ୍ଥଗିତ ରଖାଗଲା । ଏକ ନିଶ୍ଚିନ୍ତ ଦୁର୍ଘଟଣାକୁ ରୋକାଯାଇ ପାରିଲା । ଭୀମଭୋଇଙ୍କ ଅଗ୍ନି ପରୀକ୍ଷାର ନିର୍ଦ୍ଧାରିତ ଦିବସରେ ସର୍ପାଘାତରେ ନୀଳଧର ସିଂହଦେଓଙ୍କର ଅକାଳ ମୃତ୍ୟୁ ଘଟିଲା । ପ୍ରତାପ ରୁଦ୍ର ସିଂହଦେଓଙ୍କ ଶାସନ ସମୟରେ ଭୀମଭୋଇ ଓ ଚନ୍ଦ୍ରମଣି ଦାସ ରାଜକୀୟ ସାହାଯ୍ୟ ଲାଭ କରି ସୋନପୁରରେ ସାଂସ୍କୃତିକ ଜାଗରଣ



ସୁବର୍ଣ୍ଣପୁର ଜିଲ୍ଲାର ଇଷ୍ଟ ଦେବତା
ସୁବର୍ଣ୍ଣମେରୁ ମହାଦେବଙ୍କ ମନ୍ଦିର

ସୃଷ୍ଟି କରିଥିଲେ । ରାଜା ପ୍ରତାପରୁଦ୍ର ଓ ରାଣୀ ଅମୂଲ୍ୟମଣୀ ସୁସାହିତ୍ୟିକ ଥିଲେ । ବୀରମିତ୍ର ସିଂହଦେଓଙ୍କ ପୃଷ୍ଠପୋଷକତାରେ ସୋନପୁର ଦରବାରରୁ ଅନେକ ପୁସ୍ତକ ରଚନା କରାଯାଇଥିଲା । ବୀରମିତ୍ର ସିଂହଦେଓଙ୍କ ଅନୁଦାନକ୍ରମେ କଲିକତା ପ୍ରେସିଡେନ୍ସି କଲେଜରେ ଓଡ଼ିଆରେ ଓ ରାଣୀ ପାର୍ବତୀ ଦେବୀଙ୍କ ଆର୍ଥିକ ସହାୟତାରେ ରେଭେନ୍ସା କଲେଜରେ ଇଂରାଜୀରେ ସ୍ନାତକୋତ୍ତର ବିଭାଗ ଆରମ୍ଭ ହୋଇଥିଲା । ସେ ବିହାର-ଓଡ଼ିଶା ରିସର୍ଚ୍ଚ ସୋସାଇଟିର ପୃଷ୍ଠପୋଷକ, ସର୍ବଭାରତୀୟ ସ୍ତରରେ ମାତୃ ଓ ଶିଶୁମଂଗଳ ସଂଘର ଉପ-ସଭାପତି ଥିଲେ । ଇଂରେଜ ସରକାର ବୀରମିତ୍ର ସିଂହଦେଓଙ୍କୁ ନାଇଟ୍, ପୁରୀ ମୁକ୍ତିମଣ୍ଡପ 'ଧର୍ମ ନିଧି' ଉପାଧିରେ ସମ୍ମାନିତ କରିଥିଲେ । ସୋନପୁର ସ୍ୱର୍ଣ୍ଣାଭ ଅତୀତର ସ୍ୱାକ୍ଷର, ଏହାର ସମୃଦ୍ଧି ପରମ୍ପରା ଐତିହ୍ୟ ଓ ସଂସ୍କୃତି ଅନନ୍ୟ ତଥା ଅସାଧାରଣ ।

ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪



# ନେହରୁ (୧୯୪୭-୧୯୬୪)

ସୌରୀବଂଧୁ କର

ମେ ୨୭, ୧୯୬୪ ମସିହା ଅପରାହ୍ଣରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁଙ୍କର ଦେହାବସାନ ହେଲା । ଦୀର୍ଘ ୧୭ ବର୍ଷ ଧରି ସେ ଥିଲେ ପ୍ରଧାନମନ୍ତ୍ରୀ ଯାହାଙ୍କୁ ବିଶ୍ୱକବି ରବୀନ୍ଦ୍ରନାଥ କହିଥିଲେ ଋତରାଜ ।ସେ ଥିଲେ ପ୍ରଚଣ୍ଡ କର୍ମପ୍ରେରଣାର ପ୍ରତୀକ । ମୃତ୍ୟୁର ଅବ୍ୟବହିତ କେତେବର୍ଷ ପୂର୍ବରୁ ବିଫଳତା ତାଙ୍କୁ ମ୍ରିୟମାଣ କରି ପକାଇଥିଲା । ସେ ଭାରତ ପାଇଁ, ବିଶ୍ୱ ପାଇଁ ଏବଂ ଭବିଷ୍ୟତ ପାଇଁ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହା କେତେକ ସାର୍ଥକ ହୋଇଥିବାବେଳେ ଅନ୍ୟ କେତେକ ସ୍ୱପ୍ନ ରହିଯାଇଥିଲା ଅଧୁରା । ନେହରୁଙ୍କ ଜୀବନ ସଂପର୍କରେ ଅନେକ ପୁସ୍ତକ ରଚିତ ହୋଇଛି । କିନ୍ତୁ କୌଣସି ଜୀବନୀ ପୁସ୍ତକ ତାଙ୍କ ଆତ୍ମଜୀବନୀଠାରୁ ଅଧିକ ନୁହେଁ । ସେହି ଆତ୍ମଜୀବନୀ ମଧ୍ୟରେ ସେ ନିଜକୁ ଖୋଜିଛନ୍ତି, ନିଜର ଆତ୍ମସମୀକ୍ଷା କରିଛନ୍ତି । ସେ ନିଜ ସଂପର୍କରେ ୧୯୬୨ ଫେବୃଆରୀ ୨୦ ତାରିଖରେ ଲେଖିଥିଲେ, 'ନୂତନ ପିଢ଼ିର ବଂଶଧରମାନଙ୍କର ମୋର ଏହି ପୁସ୍ତକରେ ବର୍ଣ୍ଣିତ ଘଟଣାବଳୀ ସମ୍ବନ୍ଧରେ କୌଣସି ବ୍ୟକ୍ତିଗତ ଅଭିଜ୍ଞତା ନଥିବ । କିନ୍ତୁ ମୋର ବିଶ୍ୱାସ, ଏହି ପୁସ୍ତକ ପାଠ କଲେ ସେମାନଙ୍କ ମନରେ ଅତୀତ ଉଦ୍‌ଭାସିତ ହୋଇ ଉଠିବ ।'

ନେହରୁଙ୍କର ଐତିହାସିକ ଭୂମିକା ସଂପର୍କରେ ବହୁ ଆଲୋଚନା ଓ ମୂଲ୍ୟାଙ୍କନ ହେବାରେ ଲାଗିଛି । ତାଙ୍କ ପ୍ରତି ଅନେକ କଠୋର ସମାଲୋଚନା ମଧ୍ୟ ହୋଇଛି କିନ୍ତୁ ଏସବୁ ସତ୍ତ୍ୱେ ସେ ବଞ୍ଚି ରହିଛନ୍ତି ତାଙ୍କର ଅନେକ ମହନୀୟ କର୍ମରେ । ନେହରୁ ଥିଲେ ଅତି ଉଚ୍ଚ ଆକାଂକ୍ଷା ସମ୍ପନ୍ନ ବ୍ୟକ୍ତି ଯେ କି ଖୁବ୍ କମ୍ ବୟସରୁ କଂଗ୍ରେସରେ ସର୍ବୋଚ୍ଚ ସ୍ଥାନ ପାଇ ପାରିଥିଲେ ଏବଂ ଦୀର୍ଘ ୧୭ ବର୍ଷ ଧରି ପ୍ରଧାନମନ୍ତ୍ରୀ ପଦରେ ରହିଥିଲେ । କୌଣସି ବ୍ୟକ୍ତିବିଶେଷର ବ୍ୟକ୍ତିଗତ ମହତ୍ତ୍ୱାକାଂକ୍ଷା ତାକୁ ଏତେ ସମ୍ମାନ ଓ ଉଚ୍ଚକୁ ନେଇନପାରେ କାରଣ ବ୍ୟକ୍ତିଗତ ମହତ୍ତ୍ୱାକାଂକ୍ଷା ବ୍ୟକ୍ତିକୁ ଅହଙ୍କାରୀ କରିବା ସହିତ ଏକଛତ୍ରବାଦୀ କରି ବିନାଶ ଆଡ଼କୁ ନେଇଯାଏ । ତାଙ୍କର ବ୍ୟକ୍ତିଗତ ଗୁଣ, ତାଙ୍କର ଚାହାଣୀ, ତାଙ୍କର ସଭ୍ୟ ବ୍ୟବହାର ଏବଂ ବାର୍ତ୍ତାଳାପ, ତାଙ୍କ କୋର୍ଟରେ ଲାଗିଥିବା ଗୋଲାପ ଇତିହାସ ନିକଟରେ କୌଣସି ମୂଲ୍ୟ ରଖେନା । ସବୁଠାରୁ ବଡ଼ ପ୍ରଶ୍ନ ତାଙ୍କ ନିକଟରେ ଯେଉଁ ସୁଯୋଗ ଆସିଥିଲା, ତାକୁ ସେ କିପରି ବ୍ୟବହାର କରିଛନ୍ତି, ସେ କ'ଣ ସଫଳତା ଲାଭ କରିଛନ୍ତି ଏବଂ ଇତିହାସରେ ଏପରିକି ଭାରତ ଇତିହାସରେ ତାଙ୍କ ସ୍ଥାନ କେଉଁଠି ?

ବହୁବର୍ଷ ପର୍ଯ୍ୟନ୍ତ ସେ ଜେଲଖାନାରେ ବନ୍ଦୀ ଜୀବନ କଟାଇଛନ୍ତି । କିନ୍ତୁ ସେହି ବନ୍ଦୀ ଜୀବନ ଭିତରେ ସେ ଲେଖିଛନ୍ତି ଅନେକ କଥା ଓ ଭାବିଛନ୍ତି ଅନେକ ବିଷୟ । ଜଣେ କଳାକାର ଭାବରେ ସେ ଲେଖିଛନ୍ତି । ଯାହାକୁ ସେ ସାଧାରଣ ଭାବରେ ଲେଖିଛନ୍ତି, ତାହା ଅସାଧାରଣ ହୋଇଛି । ସେ ସ୍ୱାଧୀନତା ଆନ୍ଦୋଳନ ସମୟରେ ରାଷ୍ଟ୍ରର ଭୂମିକା ସଂପର୍କରେ ଗଭୀର ଅନୁଧ୍ୟାନ ଓ ଅନୁଶୀଳନ କରିଛନ୍ତି ଏବଂ ସ୍ୱାଧୀନତା ପରେ ତାକୁ ରୂପଦେଇ ସାକାର କରିବାକୁ ଚେଷ୍ଟା କରିଛନ୍ତି । ସେ ହୁଏତ ଦେଶର ପଛୁଆପଣ, କଂଗ୍ରେସ, କଂଗ୍ରେସ ଲୋକମାନଙ୍କର ଦୁର୍ନୀତି ମାର୍ଗ, ସଙ୍କୁଚିତ ବ୍ୟବହାର ଏବଂ ଯଥାଯୋଗ୍ୟ ନୀତି ସହିତ ନିଜର ସହଯୋଗୀ ଓ କର୍ମଚାରୀମାନଙ୍କର ଅଳସୁଆମୀ, ଦକ୍ଷତାହୀନତାକୁ ବିରୋଧ କରିପାରିଥାନ୍ତେ ବା ଦୋଷ ଦେଇ ପାରିଥାନ୍ତେ । କିନ୍ତୁ ସେ ତାହା ନକରି ନିଜକୁ ଉଚ୍ଚ ବିଚାର ସମ୍ପନ୍ନ କାର୍ଯ୍ୟ କରିବାରେ ସମର୍ପିତ କରିଛନ୍ତି । ଏପରିକି ଗାନ୍ଧୀ ଅପ୍ରତିଦ୍ୱନ୍ଦୀ ନେତା ଥିବାବେଳେ ମଧ୍ୟ ସେ ନେତୃତ୍ୱ ନେଇଛନ୍ତି । ସେ ସଦାସର୍ବଦା ସାମାଜିକ ଓ ଆର୍ଥିକ ଶକ୍ତିମାନଙ୍କ ବିରୋଧରେ ନିଜକୁ ଡଉଳିଛନ୍ତି ଏବଂ ସାମାଜିକ ଓ ଆର୍ଥିକ ବିପ୍ଳବ ପାଇଁ କାର୍ଯ୍ୟ କରିଛନ୍ତି, ଯେତେବେଳେ ପରିସ୍ଥିତିରେ ସେପରି ବାତାବରଣ ନାହିଁ ଓ ଲୋକମାନେ ବିପ୍ଳବୀ ହୋଇ ନାହାନ୍ତି । ହୁଏତ ଏହା କୁହାଯାଇ ପାରେ ଯେ ନେହରୁ ଯାହା ହାସଲ କଲେ, ତାହାଠାରୁ ଅଧିକା ହାସଲ କରିପାରିଥାନ୍ତେ ଯଦି କଂଗ୍ରେସ ପୂର୍ବପରି ଏକ ଶକ୍ତିଶାଳୀ ଅସ୍ତ୍ର ହୋଇଥାନ୍ତା । ଗାନ୍ଧିଜୀ ଦେଖିପାରିଥିଲେ ନେହରୁ ଏକ ସମର୍ପିତ ବ୍ୟକ୍ତି, ଦୂରଦ୍ରଷ୍ଟା ମଣିଷ, ଏକ ଉଚ୍ଚ ବିଚାର ସମ୍ପନ୍ନ ଓ ଚରିତ୍ର ସମ୍ପନ୍ନ ବ୍ୟକ୍ତିତ୍ୱ । ତେଣୁ ଭାରତର ଭାଗ୍ୟ ତାଙ୍କ ହାତରେ ନିରାପଦ ରହିପାରିବ, ଏଇଥି ପାଇଁ ତାଙ୍କୁ ସେ ସ୍ଥିର କରିଥିଲେ ।

ଭାରତ ନିର୍ମାଣରେ ହୁଏତ ତାଙ୍କଠାରୁ ତ୍ୟାଗୀ ଓ ସମର୍ପିତ ବ୍ୟକ୍ତିତ୍ୱ ସେସମୟରେ ଥିଲେ କିନ୍ତୁ ସବୁ କିଛିକୁ ମିଶାଇ ଦେଖିଲେ ତାଙ୍କର ଦୂରଦୃଷ୍ଟି ଥିଲା ବ୍ୟାପକ, ତାଙ୍କର ଅବବୋଧ ଥିଲା ଗଭୀର ଏବଂ ଉଦ୍ଦେଶ୍ୟମୂଳକ, ତାଙ୍କର ଐତିହାସିକ ଦୃଷ୍ଟିଭଙ୍ଗୀ ଥିଲା ନିର୍ଭୁଲ ଏବଂ ସବୁ ସମୟର ମଣିଷ ଥିଲେ ସେ । ସେ ରାଷ୍ଟ୍ରର ବିବର୍ତ୍ତନ ଓ ବିକାଶକୁ ସଠିକ୍ ଢଙ୍ଗରେ ପରିବେଷଣ କରିବାକୁ ଥିଲେ ସମର୍ଥ । ଦୀର୍ଘ ୨୦୦ ବର୍ଷର ପରାଧୀନତା ଭାରତର ବିକାଶକୁ କରିଥିଲା ସମ୍ପୂର୍ଣ୍ଣ ବ୍ୟାହତ । ତେଣୁ ରାଷ୍ଟ୍ର ତୁରନ୍ତ ଉଦ୍ୟୋଗିକ ବିପ୍ଳବ ପଥରେ ଚାଲୁ ବୋଲି ସେ ଆରମ୍ଭ କରିଥିଲେ ଶିଳ୍ପାୟନ । ନେହରୁ ଦେଶର ଏକତା ଓ ଅଖଣ୍ଡତାକୁ ସୁରକ୍ଷା କରିବା ପାଇଁ ଧର୍ମନିରପେକ୍ଷ ନୀତି ଅବଲମ୍ବନ କରିଥିଲେ । ଭାରତ ପାକିସ୍ଥାନ ବିଭାଜନର ପରେ, ଯେଉଁ କ୍ଷତ ସୃଷ୍ଟି ହୋଇଥିଲା, ସେଥିରେ ରାଷ୍ଟ୍ରର ଗଣତନ୍ତ୍ରକୁ ମଜଭୁତ କରିବା ପାଇଁ ସମାଜବାଦ ଯେ ଅପରିହାର୍ଯ୍ୟ, ଯୋଜନାର ଆବଶ୍ୟକତା ଯେ ଅଧିକ, ଶାନ୍ତି ଓ ସହାବସ୍ଥାନ ପାଇଁ ବୈଦେଶିକ ନୀତିର ଆବଶ୍ୟକତାକୁ ସେ ହୃଦୟଙ୍ଗମ କରି ତାହାକୁ ଆରମ୍ଭ କରିଥିଲେ ।

ଧର୍ମ ନିରପେକ୍ଷତା ତାଙ୍କ ପାଇଁ କେବଳ ବିଚାର, ପୁସ୍ତକ ଅଧ୍ୟୟନ କିମ୍ବା ଇତିହାସ ବୁଝାମଣାରୁ ସୃଷ୍ଟି ହୋଇ ନଥିଲା ବରଂ ସେ ଭାରତର ପଥପ୍ରାନ୍ତ ବୁଲି ଏହାକୁ ଅନୁଭବ କରିଥିଲେ । ସେ ବିଭିନ୍ନତା ମଧ୍ୟରେ ଏକତା ଦେଖି ଉତ୍‌ଫୁଲ୍ଲିତ ହୋଇଥିଲେ । ଭାରତରେ ବହୁ ଧର୍ମ, ବହୁ ଜାତି, ବହୁ ସଂସ୍କୃତି ରହିଥିଲେ ମଧ ଏହା ଗୋଟିଏ । ଧର୍ମ ନିରପେକ୍ଷତା ଅର୍ଥ ଧର୍ମକୁ ପରିହାର କରିବା ନୁହେଁ ବରଂ ସବୁଧର୍ମର ସହାବସ୍ଥାନ । ଏହି ଧର୍ମ ନିରପେକ୍ଷ ବିଚାର ହେଉଛି ବୈଜ୍ଞାନିକ ବିଚାର । ଧର୍ମ ନିରପେକ୍ଷତାକୁ ଭାରତ ଗ୍ରହଣ କରିଥିବା ଫଳରେ ସାଂପ୍ରଦାୟିକ ସଂଘର୍ଷ କେବେ କେବେ ଘଟୁଥିଲେ ମଧ ଏହି ଦେଶ ସୁସଂହତ ଭାବରେ ବଞ୍ଚି ରହିଛି ।

ନେହରୁଙ୍କୁ କେତେକ ଭୁଲରେ ଏକଛତ୍ରବାଦୀ ଭାବେ ବର୍ଣ୍ଣନା କରନ୍ତି ମାତ୍ର ବାସ୍ତବରେ ନେହରୁ ଥିଲେ ଗଣତନ୍ତ୍ର ପ୍ରେମୀ । ସେ ସବୁଦୃଷ୍ଟିରୁ ସମାନତାକୁ ଦେଖୁଥିଲେ ଏବଂ ନିଜକୁ ଲୋକମାନଙ୍କ ନିକଟରେ ଅଧିକ ପାଉଥିଲେ । ସେ ଜଣେ ବିଶିଷ୍ଟ ସାଂସଦ ଭାବରେ ସଂସଦ ପ୍ରତି ଗଭୀର ସମ୍ମାନ ରଖୁଥିଲେ । ସଂସଦରେ ସହନଶୀଳତା, ଉତ୍ତମ ଆଲୋଚନା ଉପରେ ଗୁରୁତ୍ୱ ଦେବା ସହିତ ସଂଖ୍ୟା ଗରିଷ୍ଠ ବା ସଂଖ୍ୟା ଲଘିଷ୍ଠ ଉପରେ ବିଶ୍ୱାସକୁ ଗ୍ରହଣ କରୁ ନଥିଲେ । ଭାରତ ଗୋଟିଏ ଗଣତନ୍ତ୍ର ରାଷ୍ଟ୍ର ଭାବରେ ସମାଜବାଦ ଅବ୍ୟସମ୍ଭାବୀ ବ୍ୟବସ୍ଥା ଏବଂ ଗଣତନ୍ତ୍ର ଓ ସମାଜବାଦ ପରସ୍ପର ଚାଲିପାରେ । ବହୁ ବିରୋଧ ସତ୍ତ୍ୱେ ସେ ଦେଶରେ ପଞ୍ଚବାର୍ଷିକ ଯୋଜନା ଆରମ୍ଭ କରିଥିଲେ ଏବଂ ଏହି ପଞ୍ଚବାର୍ଷିକ ଯୋଜନା ସମାଜବାଦ ଢାଞ୍ଚାରେ ହେବା ଉଚିତ । ସେ ବୃହତ୍ ଉଦ୍ୟୋଗ ସହିତ କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗରେ ବିଶ୍ୱାସ କରୁଥିଲେ । ଏପରିକି ପ୍ରଥମରୁ ଗ୍ରାମ୍ୟ ଉଦ୍ୟୋଗ ଉପରେ ତାଙ୍କର ଗୁରୁତ୍ୱ ଥିଲା । ବୃହତ୍ ଉଦ୍ୟୋଗକୁ ସେ ଆଧୁନିକ ମନ୍ଦିର ଭାବେ ଉଲ୍ଲେଖ କରିଥିଲେ । ବୃହତ୍ ଉଦ୍ୟୋଗ ପ୍ରତିଷ୍ଠା କରି ସେ ରାଷ୍ଟ୍ରର ବିକାଶର ମାର୍ଗକୁ ତ୍ୱରାନ୍ୱିତ କରିଥିଲେ । ନେହରୁ ବୈଦେଶିକ ନୀତି ଭାବରେ ଗୋଷ୍ଠୀ ନିରପେକ୍ଷତାକୁ ପ୍ରବର୍ତ୍ତନ କରିଥିଲେ । ଗୋଷ୍ଠୀ ନିରପେକ୍ଷ ଅର୍ଥ ନକାରାତ୍ମକ ଦୃଷ୍ଟିଭଙ୍ଗୀ ନୁହେଁ ବରଂ ସ୍ୱାଧୀନ ଭାବରେ ନିଜର ବୈଦେଶିକ ନୀତି ନିର୍ଣ୍ଣୟ କରିବା । ଏହି ସ୍ୱାଧୀନତା ଅର୍ଥ ବିଭିନ୍ନ ରାଷ୍ଟ୍ରମାନେ ପରସ୍ପରର ନିକଟବର୍ତ୍ତୀ ହେବେ ଯେଉଁମାନଙ୍କର ଦୃଷ୍ଟିଭଙ୍ଗୀ ସମାନ, ନୀତି ସମାନ ଏବଂ ସବୁସ୍ଥାନରେ ଲୋକମାନଙ୍କର ମୁକ୍ତି ବା ସ୍ୱାଧୀନତା, ଶାନ୍ତିରେ ସହାବସ୍ଥାନ ଏବଂ ଆର୍ଥିକ ବିକାଶ । ଏହି କାରଣରୁ ସୋଭିଏତ୍ ୟୁନିୟନ ଏବଂ ଭାରତ ପରସ୍ପରର ନିକଟ ହୋଇଥିଲେ ଏବଂ ଆମେରିକା ଭାରତର ନିକଟ ହୋଇ ପାରିନଥିଲା । ନେହରୁଙ୍କର ଗୋଷ୍ଠୀ-ନିରପେକ୍ଷ ବୈଦେଶିକ ନୀତି ଥିଲା ସକାରାତ୍ମକ ।

ନେହରୁ ଥିଲେ ସଂପୂର୍ଣ୍ଣ ଭାବେ ଆଧୁନିକ ଏବଂ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ବିଜ୍ଞାନ ସମ୍ମତ । ସମଗ୍ର ବିଶ୍ୱରେ ଯେଉଁ ସବୁ ପରିବର୍ତ୍ତନ ଘଟୁଛି ସେ ସଂପର୍କରେ ସେ ଅବଗତ ରହିବା ସହିତ ନୂତନ ଜ୍ଞାନ ଆଲୋକରେ ସେ ନିଜର ଚିନ୍ତାକୁ ପ୍ରସାରିତ କରୁଥିଲେ । ଜଣେ ବୈଜ୍ଞାନିକର ଅନିସନ୍ଧିତ୍ସୁ ମନ ପରି ତାଙ୍କର ମନ ଥିଲା । ସେ ଇତିହାସ ସଂପର୍କରେ ଗଭୀର ଜ୍ଞାନ ରଖିଥିଲେ । ଆଧୁନିକ ମଣିଷ ମନରେ ଯାହା ଆନ୍ଦୋଳିତ କରୁଛି, ତାହାକୁ ଅତୀତ ମଧ୍ୟରୁ ଖୋଜି ଉତ୍ତର ପାଇବାକୁ ସେ ଥିଲେ ଚେଷ୍ଟିତ । ତାଙ୍କ ଲେଖାରୁ ଦେଖିବାକୁ ମିଳେ ଯେ ତାଙ୍କର ଆଧୁନିକ ଓ ବିଜ୍ଞାନ ସମ୍ମତ ମନ ଅତୀତଠାରୁ କେବେହେଲେ ହଟିଯାଇ ନାହିଁ । ସେ ଲେଖିଥିଲେ, 'ଅତୀତ ଆମ ସହିତ ଥିଲା ଏବଂ ଆମ୍ଭେମାନେ ଯାହା କିଛି ହୋଇଛେ ତାହା ଆମେ ଅତୀତରୁ ପାଇଛେ ।'

ଗାନ୍ଧିଜୀଙ୍କ ସଂସ୍ପର୍ଶରେ ଆସିବା ସମୟଠାରୁ ଭାରତର ଭବିଷ୍ୟତ ସଂପର୍କରେ ସେ ଦୁହେଁ ବିଜ୍ଞାନ ଓ ପ୍ରୟୋଗ ବିଜ୍ଞାନ ବିଷୟରେ ବହୁ ଆଲୋଚନା କରୁଥିଲେ । ସେମାନଙ୍କ ମଧ୍ୟରେ ଏ ସଂପର୍କରେ ମତ ପାର୍ଥକ୍ୟ ଥିଲା । ଗାନ୍ଧିଜୀ ଚରଖା ଉପରେ ଗୁରୁତ୍ୱ ଆରୋପ କରୁଥିଲେ ଏବଂ ଏହା ଗ୍ରାମ୍ୟ ଅର୍ଥନୀତିକୁ ମଜଭୁତ କରିବାର ମାଧ୍ୟମ ଥିଲା । କିନ୍ତୁ ନେହରୁ ଚରଖା ଏବଂ ଖଦଡ଼ ଭାରତର କୋଟି କୋଟି ଦରିଦ୍ର ଲୋକଙ୍କର ମୁକ୍ତିର ମାର୍ଗ ହେବ ଏହି ବିଚାରକୁ ଗ୍ରହଣ କରୁନଥିଲେ । ୧୯୪୫ ମସିହାରେ ଗାନ୍ଧିଜୀ ନେହରୁଙ୍କ ନିକଟକୁ ଗୋଟିଏ ଚିଠିରେ ଲେଖିଥିଲେ, 'ମୁଁ ଆଧୁନିକ ବିଜ୍ଞାନକୁ ପ୍ରଶଂସା କରିବାବେଳେ, ମୁଁ ପାଏ ଯେ ଆଧୁନିକ ବିଜ୍ଞାନକୁ ବାସ୍ତବ ଆଲୋକରେ ପୁରାତନ ଦୃଷ୍ଟିରୁ ଦେଖିବାକୁ ହେଲେ ଏହାକୁ ନୂତନ ବେଶଭୂଷାରେ, ନୂତନ କଳେବର ଦେଇ ଠିକ୍ କରିବାକୁ ହେବ,' ତାଙ୍କ ସ୍ୱପ୍ନର ଆଦର୍ଶ ଗ୍ରାମ କି ପ୍ରକାର ଆଧୁନିକ ସୁବିଧା ପାଇବ, ତାହାକୁ ସେ ଅଗ୍ରାହ୍ୟ

କରୁନଥିବାବେଳେ, ବୃହତ୍ ଉଦ୍ୟୋଗୀକରଣ ସଂପର୍କରେ ଗାନ୍ଧୀ ଓ ନେହରୁଙ୍କର ମତ ପାର୍ଥକ୍ୟ ଥିଲା ।

ସ୍ୱାଧୀନତା ପରେ ସେ ସରକାରର ମୁଖ୍ୟ ଭାବରେ ବିଜ୍ଞାନ ଓ ଉଦ୍ୟୋଗ ଉପରେ ଗୁରୁତ୍ୱ ଦେଇ ବିଜ୍ଞାନ ଶିକ୍ଷା ଓ ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲେ । ସେ ବୈଜ୍ଞାନିକମାନଙ୍କୁ ଅଧିକ ଗବେଷଣା ପାଇଁ ଉତ୍ସାହ ପ୍ରଦାନ କରିଥିଲେ । ଦେଶର ଆର୍ଥିକ ଅବସ୍ଥାକୁ ଲକ୍ଷ୍ୟ କରି ସେ ଆତ୍ମନିର୍ଭରଶୀଳ ଆଧୁନିକ ଅର୍ଥନୀତି ଆରମ୍ଭ କରିଥିଲେ । ଏହି ମଡେଲ ଦେଶର ଆର୍ଥିକ ବିକାଶ ପାଇଁ ଦେଶ ଭିତରର ବଜାର ଉପରେ ନିର୍ଭର କରୁଥିଲା । ସମସ୍ତ କିଛି ଉତ୍ପାଦନ ଦେଶ ମଧ୍ୟରେ ହେବାର ବ୍ୟବସ୍ଥା ହେଲା । ଆୟ ଓ ନିଯୁକ୍ତି ପାଇଁ ଯାହା କିଛି ବ୍ୟବସ୍ଥା କରାଗଲା, ତାହା ଦେଶର ଲୋକମାନେ ଉପକୃତ ହେବା ପାଇଁ ହେଲା । ସେଥିରେ ରାଷ୍ଟ୍ରର ଭୂମିକାକୁ ସ୍ଥିରୀକୃତ କରାଗଲା । ଏହା ହୃଦୟଙ୍ଗମ କରାଗଲା ଯେ ଯୋଜନା ବ୍ୟତିରେକେ ଏବଂ ରାଷ୍ଟ୍ରୀୟ ଉଦ୍ୟୋଗ ବିନା ଆଞ୍ଚଳିକ ବୈଷମ୍ୟ କିମ୍ବା ସାମାଜିକ ଓ ଆର୍ଥିକ ବ୍ୟବଧାନ ଦୂର ହୋଇପାରିବ ନାହିଁ ।

ଲାଭ ପରିବର୍ତ୍ତେ ସାମାଜିକ ଓ ଆର୍ଥିକ ନ୍ୟାୟ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଗଲା । ଜଗତୀକରଣ ପ୍ରକ୍ରିୟାରେ ନେହରୁଙ୍କ ପ୍ରଦର୍ଶିତ ଅର୍ଥନୈତିକ ମାର୍ଗରୁ ଭାରତ ବିଚ୍ୟୁତ ହେବା ଫଳରେ ସାଧାରଣ ଲୋକମାନଙ୍କ ଉପରେ ତାହାର ପ୍ରଭାବ ବେଶୀ ଅନୁଭୂତ ହେଉଛି । ବ୍ୟାପକ ଭାବରେ ଆଞ୍ଚଳିକ ବୈଷମ୍ୟ ବଢୁଛି । ବେକାରୀ ବଢୁଛି । ଦେଶରେ ଅପରାଧିକରଣ ଓ ସନ୍ତ୍ରାସବାଦ ବୃଦ୍ଧି ଘଟୁଛି । ସାଂପ୍ରଦାୟିକ ସଂଘର୍ଷ ତା'ର ଚେରକୁ ବଢ଼ାଇ ଚାଲିଛି । ବର୍ତ୍ତମାନର ଆର୍ଥିକ ନୀତି ଯୋଗୁଁ ଏହା ସବୁ ଘଟିବାରେ ଲାଗିଛି । ନେହରୁ ଏ ସଂପର୍କରେ ଥିଲେ ସଚେତନ । ସେଥିପାଇଁ ତାଙ୍କ ଦ୍ୱାରା ପ୍ରଚଳନ କରାଯାଇଥିବା ଅର୍ଥନୀତିର ବୈଶିଷ୍ଟ୍ୟ ଉପରେ ଗୁରୁତ୍ୱ ଦେବାର ଆବଶ୍ୟକତା ବର୍ତ୍ତମାନ ସବୁଠାରୁ ବେଶୀ ।

ନେହରୁ ଥିଲେ ଶାନ୍ତିଦୂତ । ସେ ବାରମ୍ବାର 'ଶାନ୍ତି' ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ । ଏସିଆ ମହାଦେଶର ଦେଶଗୁଡ଼ିକ ମଧ୍ୟରେ ବନ୍ଧୁତ୍ୱ ଓ ସହଯୋଗ ରହିପାରିଲେ ବହୁ ସମସ୍ୟାର ସମାଧାନ ହୋଇପାରିବ ବୋଲି ସେ କହୁଥିଲେ । ଏସିଆ ମହାଦେଶ ମଧ୍ୟରେ ଥିବା ଦେଶର ଲୋକମାନେ ଖାଦ୍ୟ, ବସ୍ତ୍ର, ବାସଗୃହ ଏବଂ ଜୀବନର ଅନ୍ୟାନ୍ୟ ଆବଶ୍ୟକତା ପାଇଁ ବ୍ୟସ୍ତ । ସେମାନଙ୍କ ପାଖରେ ଆନ୍ତର୍ଜାତୀୟ ଦ୍ୱନ୍ଦ୍ୱ ଭିତରେ ପଶିବାକୁ ସମୟ ନାହିଁ । କିନ୍ତୁ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ସେମାନଙ୍କୁ ଏହା ମଧ୍ୟକୁ ଟାଣି ଅଣାଯାଉଛି । ତେଣୁ ସେ ଗୋଷ୍ଠୀ ନିରପେକ୍ଷ ବୈଦେଶିକ ନୀତିର ପ୍ରବକ୍ତା ଥିଲେ । ସେ ତାଙ୍କର ବୈଦେଶିକ ନୀତି ସଂପର୍କରେ କହିଥିଲେ, 'The Basis of non-alignment is our area of peace, which has been constantly expanding since the inception of this policy. This is not only helps to create a sort of no wavland between the military blocks by making their war-like confrontation difficult, but also provides them with a common ground for cooperation in something like a workshop of peace. As more and more nations keep joining this peace club as aginst the nuclear club and the cold war club, we expect this unaligned grouping to grow and absorb other nations, the big European nations like France and Czechoslovakia, which today belong to NATO and warsaw military alliances - We want the whole world to become part of this area of peaceful cooperation, including the United States and the Soviet Union.'

ଭାରତର ଭବିଷ୍ୟତକୁ ସୁନିଶ୍ଚିତ କରିବାକୁ ହେଲେ ଆମକୁ ନେହରୁଙ୍କର ପ୍ରଦର୍ଶିତ ମାର୍ଗ ପ୍ରତି ଦୃଷ୍ଟିଦେବାକୁ ହେବ । କାରଣ ନେହରୁ ଭାରତର ଜାତୀୟ ବିକାଶ ଧାରାକୁ ବୁଦ୍ଧିମନ୍ତ ଓ ସମୃଦ୍ଧ କରିଯାଇଛନ୍ତି । ତାଙ୍କର ଆଦର୍ଶଗତ ବିଚାର ଓ ଐତିହାସିକ ଯୋଗଦାନକୁ ନ୍ୟୂନ୍ କରି ନଦେଖି ଯଦି ଆମେ ତାକୁ ପ୍ରୟୋଗ କରିବାରେ ସଫଳ ହେବା, ତାହା ଭାରତର ବିକାଶଧାରାକୁ ସୁନିଶ୍ଚିତ କରିବ ।

ଗଜପତିନଗର
ଭୁବନେଶ୍ୱର- ୭୫୧୦୦୫





# ଗାନ୍ଧୀଧାମ ମୂଳ ସାଇନ୍‌ପୋଷ୍ଟକୁ ପୁନାର୍ବିଷ୍କୃତ କରିବାକୁ ପଡ଼ିବ

ତାରାକାନ୍ତ ମହାନ୍ତି

**ମୋ**ହନଦାସ କରମଚାନ୍ଦ ଗାନ୍ଧୀ, ଆମର ପ୍ରିୟ ବାପୁ, ଜାତିର ଜନକ ମହାତ୍ମା ଗାନ୍ଧୀ ଜଣେ ବ୍ୟକ୍ତିବିଶେଷ ବା ଭାରତର ସର୍ବଶ୍ରେଷ୍ଠ ଜନନାୟକ ହୋଇପାରନ୍ତି, କିନ୍ତୁ ଗାନ୍ଧୀବାଦ ଏକ ସାମଗ୍ରିକ ଓ ସାମୂହିକ ଅନୁଷ୍ଠାନ ରୂପେ ବିଶ୍ୱ ତଥା ଭାରତ ଦରବାରରେ ଜନାଦୃତ ଏକ ଅପ୍ରତିଦ୍ୱନ୍ଦ୍ୱୀ ମତବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗାନ୍ଧୀବାଦ ବିଂଶ ଶତାବ୍ଦୀରେ ବିଶ୍ୱରେ ଏକ ମହାଆଲୋଡ଼ନ ସୃଷ୍ଟି କରିଥିଲା । ମାତ୍ର ବାପୁଙ୍କୁ ଏବେ ଚଳଚ୍ଚିତ୍ର ପର୍ଦ୍ଦାରେ, ପୁସ୍ତକ ଆକାରରେ, ଆଲୋକ ଚିତ୍ର ମାଧ୍ୟମରେ ବାଣୀ ରେକର୍ଡ଼ିଂ ଆକାରରେ ରଖାଯାଇଛି, ମାତ୍ର ପ୍ରକୃତ ଗାନ୍ଧୀସ୍ଥଳକୁ ନେଇଯାଇ ପାରିନାହିଁ । ଆମେ ଅନ୍ଧାରରେ ଅଣ୍ଡାଳି ହେଉଛୁ । ସମୟ ଆସିଛି ଏବେ ଗାନ୍ଧୀସ୍ଥଳର ସାଇନ୍‌ପୋଷ୍ଟକୁ ପୁନାର୍ବିଷ୍କୃତ କରିବାକୁ ପଡ଼ିବ । ବର୍ଷରେ ଦୁଇଥର ଅକ୍ଟୋବର ୨ ତାରିଖ ବାପୁଙ୍କ ଜନ୍ମଦିନ ଓ ଜାନୁଆରୀ ୩୦ ତାରିଖ ମୃତ ଦିବସରେ ସଭାସମିତି ଭଜନ ଓ ଗାନ୍ଧୀଙ୍କ ଅବୟବରେ ଫୁଲମାଳ ପିନ୍ଧାଇ ଦେଲେ ଆମେ କେବେ ଗାନ୍ଧୀ ସ୍ଥଳରେ ପହଞ୍ଚିପାରିବା ? ଗାନ୍ଧୀସ୍ଥଳକୁ ଯିବା ପାଇଁ ଆମେ ସାଇନ୍‌ପୋଷ୍ଟକୁ ପ୍ରକୃତରେ ଦେଖି ପାରିଲୁଣି କି ? ବିଶ୍ୱରେ ଗାନ୍ଧୀସ୍ଥଳ ଦକ୍ଷିଣ ଆଫ୍ରିକାର ନେଲ୍‌ସନ ମାଣ୍ଡେଲା ଦେଖିଛନ୍ତି । ଆମେ ସେ ସ୍ଥଳକୁ ଖୋଜି ବାହାର କରିବାକୁ ପଡ଼ିବ । ଖାଲି ଖଦଡ଼ ଧୋତି, ଖଦଡ଼ ପଞ୍ଜାବୀ ଓ ଗାନ୍ଧୀ ଟୋପି ପିନ୍ଧି ଦେଇ ଆମେ ନିଜକୁ ଗାନ୍ଧୀବାଦୀ ବୋଲି ନିଜେ ମୂଲ୍ୟାୟନ କରି ଦେଲେ ଆମେ କ'ଣ ପ୍ରକୃତ ଗାନ୍ଧୀଙ୍କ ପ୍ରଦର୍ଶିତ ପଥରେ ଯାତ୍ରା କରୁଛୁ ବୋଲି ଡିଣ୍ଡିମ ବଜାଇଲେ କ'ଣ ଆମେ ସେହି ଗାନ୍ଧୀସ୍ଥଳରେ ପହଞ୍ଚି ପାରିଛୁ କି ? ଗାନ୍ଧୀବାଦ ସାଇନ୍‌ପୋଷ୍ଟକୁ ଖୋଜି ବାହାର କରିବାକୁ ପଡ଼ିବ । ଗାନ୍ଧୀଙ୍କ ଉପରେ ସୁବିସ୍ତୃତ ସାରଗର୍ଭକ ଭାଷଣ ପ୍ରଦାନ କରିଦେଲେ ଆମେ ଗାନ୍ଧୀ ପ୍ରଦର୍ଶିତ ମାର୍ଗରେ ଯାଉଛୁ ବୋଲି କହି ଦେଲେ ହେଲା ? ଗାନ୍ଧୀଧାମ ହେଉଛି ଆଧ୍ୟାତ୍ମିକ ରାଜ୍ୟ, ଯାହାକି ଭାରତୀୟ ସଂସ୍କୃତିର ଏକ ପ୍ରଧାନ ଅଙ୍ଗ ।

ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଅହିଂସାର ବାସ୍ତବ ରୂପ ସମ୍ପର୍କରେ ଗାନ୍ଧୀଙ୍କ ଉପରେ ଯେଉଁ ଟିପ୍ପଣୀ ଦେଇଛନ୍ତି, ତାହା ବିଶେଷ ପ୍ରଣିଧାନଯୋଗ୍ୟ ।

'ଗାନ୍ଧିଜୀଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିଲେ ମଧ୍ୟ ତାଙ୍କ ବିଷୟରେ ଲେଖିଲା ବେଳକୁ ମୁଁ ଭାଷା ପାଉନାହିଁ - ନିଜକୁ ଅସହାୟ ମନେ କରୁଛି । ଏହା ଏକ ବିରୋଧାଭାସ ପରି ମନେ ହେଉଛି । ହିଂସାତ୍ମକ ଆଚରଣ ନକରି ସତ୍ୟ ଓ ପ୍ରେମ ଜରିଆରେ ସମସ୍ୟାର ସମାଧାନ ପାଇଁ ଏକ ନୂତନ ବାଟ ଦେଖାଇଥିବାରୁ ସାଂସାରିକ ପ୍ରଶଂସାକାରୀମାନେ ଗାନ୍ଧିଜୀଙ୍କର ଅଜସ୍ର ପ୍ରଶଂସା କରିଛନ୍ତି । ଗାନ୍ଧିଜୀଙ୍କ ପ୍ରଦର୍ଶିତ ଏହି ବାଟକୁ ସେମାନେ ଏକ ପଦ୍ଧତି ବୋଲି କହିଛନ୍ତି । ମୋର ମତ ହେଉଛି ଯେ, ଆମେ ପ୍ରେମ ଓ ସତ୍ୟର ବାସ୍ତବ ରୂପ ଉପଲବ୍ଧ କରିବା ଉଚିତ । ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗ କିପରି ବାସ୍ତବ ଓ ଉପଯୋଗୀ ହୋଇପାରିବ, ସେ ସମ୍ପର୍କରେ ଅଧ୍ୟୟନ କରିବା ଉଚିତ ।

ଅନ୍ୟାୟ ବିରୋଧରେ ସଂଘର୍ଷ ପାଇଁ ଅହିଂସା ନୀତି ଉପରେ ଆଧାରିତ ଏକ ପଦ୍ଧତିର ବିକାଶ ସାଧନ କରିଥିବାରୁ ବିଦେଶର ନେତାମାନେ ଗାନ୍ଧିଜୀଙ୍କର ଭୂୟସୀ ପ୍ରଶଂସା କରିଛନ୍ତି । ଅହିଂସା ଏକ ଉପକରଣ ନୁହେଁ । ଅନ୍ୟାୟ ଆଚରଣ ବିରୁଦ୍ଧରେ ପ୍ରେମ ଓ ସତ୍ୟ ମାର୍ଗରେ ପ୍ରତିରୋଧ କରିବା ଅବଶ୍ୟ ମହାତ୍ମା ଗାନ୍ଧୀଙ୍କର ବିଶେଷତ୍ୱ କିନ୍ତୁ ପ୍ରେମ ଓ ସତ୍ୟ ବଜାରରେ କିଣିବାକୁ ମିଳେ ନାହିଁ । ରାଇଫଲ ଓ ପିସ୍ତଲ ବଜାରରୁ କିଣି ଆଣିଲା ଭଳି ଆମେ ସତ୍ୟ ଓ ପ୍ରେମ ବଜାରରୁ କିଣିବାକୁ ପାଇବା ନାହିଁ । ଏଥିପାଇଁ ଈଶ୍ୱର ବିଶ୍ୱାସ ଆବଶ୍ୟକ । ଏଥିପାଇଁ ନୈତିକ ବଳ ଆବଶ୍ୟକ । ଏହି ନୈତିକ ବଳକୁ ଗାନ୍ଧିଜୀ ଆତ୍ମବଳ ବୋଲି କହୁଥିଲେ । ଏହା ବିଶ୍ୱାସ ଓ ବାସ୍ତବ ଧର୍ମନିଷ୍ଠାରୁ ମିଳେ । ମୃତ୍ୟୁ ପର୍ଯ୍ୟନ୍ତ ଗାନ୍ଧିଜୀ ଏହି ଶକ୍ତି ଉପରେ ଜୋର୍ ଦେଉଥିଲେ । ଅହିଂସାର ବାସ୍ତବ ରୂପ ହେଉଛି ଈଶ୍ୱରଙ୍କର ସାର୍ବଭୌମତ୍ୱ ଉପରେ ପ୍ରଗାଢ଼ ବିଶ୍ୱାସ । ହୃଦୟରେ ଘୃଣାଭାବ ଓ ହିଂସା ଭରିଥିଲା ବେଳେ କେବଳ ଅସ୍ତ୍ର ବର୍ଜନ କରି ଗାନ୍ଧିଜୀଙ୍କର ଅହିଂସା ମାର୍ଗରେ ପଥିକ ହେବା ସମ୍ଭବ ନୁହେଁ । ଈଶ୍ୱରଙ୍କ ଉପରେ ଏବଂ ଈଶ୍ୱରଙ୍କ ସାର୍ବଭୌମତ୍ୱ ଉପରେ ପ୍ରଗାଢ଼ ବିଶ୍ୱାସ ଫଳରେ ଏଇ ପ୍ରେମ ସ୍ରୋତସିନୀ ପ୍ରବାହିତ ହେବ । ଭଗବଦ୍ ଗୀତାରେ କୁହାଯାଇଛି -

'ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେର୍ଜ୍ଜୁନ ତିଷ୍ଠତି
ଭ୍ରାମୟନ୍ ସର୍ବ ଭୂତାନି ଯନ୍ତ୍ରାରୁ ଘନି ମାୟାୟ'

(ଭଗବତ ଗୀତା, ୧୮ ଅଧ୍ୟାୟ, ୨୧ ଶ୍ଳୋକ)

ଏହି ଶ୍ଳୋକରେ କୁହାଯାଇଛି ... 'ହେ ଅର୍ଜୁନ, ସର୍ବକର୍ତ୍ତା, ସର୍ବନିୟନ୍ତା, ଈଶ୍ୱର ଆଧାତ୍ମ ସ୍ୱଭାବ ରୂପେ ସବୁପ୍ରାଣୀଙ୍କ ହୃଦୟରେ ଅଛନ୍ତି ଏବଂ ଯନ୍ତ୍ରରେ ଚଢ଼ାଇ ବୁଲାଇଲା ପରି ସବୁ ପ୍ରାଣୀକୁ ମାୟାରେ ବୁଲାଉଛନ୍ତି ।'

ମାନବର ହୃଦୟରେ ଈଶ୍ୱରଙ୍କର ଉପସ୍ଥିତି ହେଉଛି ସତ୍ୟାଗ୍ରହର ଗୂଢ଼ତତ୍ତ୍ୱ । ତେଣୁ ଏହା ନୂତନ ପଦ୍ଧତି ନୁହେଁ । ପ୍ରାଚୀନ ଆଧାତ୍ମିକ ଶିକ୍ଷା ଏବଂ ସତ୍ୟ ଉପରେ ପ୍ରଗାଢ଼ ବିଶ୍ୱାସର ସମଷ୍ଟି । ସଂଚୟଶୀଳ ବ୍ୟକ୍ତିପାଇଁ ସତ୍ୟାଗ୍ରହ ଉଦ୍ଦିଷ୍ଟ ନୁହେଁ ।

ଗାନ୍ଧୀଙ୍କଠାରେ ଐଶୀ ଶକ୍ତି ନିହିତ ଥିଲା ଏବଂ ସେଥିପାଇଁ ସେ 'ମହାତ୍ମା' ପଦବାଚ୍ୟ । ସ୍ୱର୍ଗତଃ ଡକ୍ଟର ମାୟାଧର ମାନସିଂହ ତାଙ୍କର ବାପୁଜୀ କବିତାରେ ଲେଖିଛନ୍ତି, 'ଧରାମାଟି ଲୋଭେ ନର ଭୁଲିଯାଏ ନିତ୍ୟ କାଳର ସତ୍ୟ କଥା, ଯୁଗେ ଯୁଗେ ତେଣୁ ବୁଦ୍ଧ ରସୁଲ୍ ଆସି ଓଠ ଧରି ଉଠାଏ ମଥା ।' ସେହିପରି ସତ୍ୟ, ଅହିଂସା, ସର୍ବଧର୍ମ ସମାନତ୍ୱ, ମଣିଷ ମଣିଷ ଭିତରେ ଥିବା ବିଭେଦର ପୀରାମିଡ଼କୁ ଭାଙ୍ଗିବାକୁ ମହାତ୍ମା ଗାନ୍ଧୀଙ୍କର ଧରାବତରଣ ଯଥାର୍ଥ ଥିଲା ବୋଲି ସେ ତାଙ୍କ 'ବାପୁଜୀ' କବିତାରେ ଯଥାର୍ଥରେ ଲେଖିଛନ୍ତି । ଗାନ୍ଧିଜୀ ବିଶ୍ୱର ସମସ୍ତ ଜନତାଙ୍କ ହୃଦୟରେ ଅଭିଷିକ୍ତ ମହାମାନବ । ପ୍ରିୟଦର୍ଶୀ ଅଶୋକ ଯଥାର୍ଥରେ କହିଛନ୍ତି, ହିଂସା ପ୍ରଣୋଦିତ ତରବାରୀର ଜୟ ପ୍ରକୃତ ଜୟ ନୁହେଁ । ମଣିଷର ହୃଦୟ ଜୟ ହେଉଛି ପ୍ରକୃତ ଜୟ । ମହମ୍ମଦ ତୋଗଲକଙ୍କୁ ଆଡ଼ବାୟା ରାଜା ରୂପେ ଐତିହାସିକମାନେ ମନ୍ତବ୍ୟ ଦେଇଛନ୍ତି । ତାଙ୍କର ଯେତେବେଳେ ଯେଉଁ ଜିଦ୍ ବା ହ୍ୱିମ୍ସ ଆସେ ସେ ତଦନୁସାରେ କାର୍ଯ୍ୟ କରନ୍ତି । କେତେବେଳେ ରାଜଧାନୀ ଦିଲ୍ଲୀକୁ ଦୌଲତାବାଦ ଉଠାଇ ନିଅନ୍ତି ତ ପୁଣି କେତେବେଳେ ଦୌଲତାବାଦରୁ ଦିଲ୍ଲୀକୁ ଫେରାଇ ଆଣନ୍ତି । ତାଙ୍କର ରାଜତ୍ୱ କାଳରେ ଦିଲ୍ଲୀବାସୀମାନେ ଜଳକଷ୍ଟ ଭୋଗ କରୁଥିଲେ । ସେତେବେଳେ ଦିଲ୍ଲୀରେ ନାଜିମୁଦ୍ଦିନ ନାମରେ ଜଣେ ଫକୀର ଥିଲେ । ଯାହାଙ୍କ ନାମରେ ଏବେ 'ନିଜାମୁଦ୍ଦିନ ରେଳଷ୍ଟେସନ୍‌ର ନାମକରଣ ହୋଇଛି । ଯେ ଲୋକମାନଙ୍କର ଜଳକଷ୍ଟ ଦେଖି ଦିଲ୍ଲୀରେ ବହୁତ ଜଳାଶୟ ଖୋଳାଇଲେ । ସେ ଲୋକମାନଙ୍କର ଜଳକଷ୍ଟ ଦୂର ହେଲା । ସବୁବେଳେ ଲୋକେ ନାଜିମୁଦ୍ଦିନଙ୍କର ଜୟ ଜୟକାର କଲେ । ନାଜିମୁଦ୍ଦିନ ଜିନ୍ଦାବାଦ୍ ଧ୍ୱନିରେ ଦିଲ୍ଲୀର ଗଗନ ପବନ ମୁଖରିତ ହେଲା ।

ମହମ୍ମଦ ତୋଗଲକଙ୍କୁ ଏହା ଅସହ୍ୟ ହେଲା । ଏଥିରେ ସେ ଈର୍ଷାନ୍ୱିତ ହୋଇ ନାଜିମୁଦ୍ଦିନଙ୍କୁ ବନ୍ଦୀ କରି ନେଇ ଆସିଲେ ଏବଂ ପରଦିନ ରାଜଦରବାରରେ ତାଙ୍କୁ ଛିଡ଼ା କରାଯାଇ କୈଫୟତ ତଲବ ସଂଗେସଂଗେ ମହମ୍ମଦ ତୋଗଲକ, ନାଜିମୁଦ୍ଦିନଙ୍କର ଏତେ ଲୋକପ୍ରିୟତାର ଗୂଢ଼ ରହସ୍ୟ ଜାଣିବାକୁ ଚାହିଁଲେ । ନାଜିମୁଦ୍ଦିନ ଅତି ସରଳରେ ତାହାର ଉତ୍ତର ଦେଲେ ଯାହା ପଦ୍ମଶ୍ରୀ ସ୍ୱର୍ଗତଃ କାଳିନ୍ଦୀ ଚନ୍ଦ୍ର ପାଣିଗ୍ରାହୀଙ୍କ ଭାଷାରେ - 'ମଣିଷର ଦିଲ୍ ପାଇନାହୁଁ ଯେହି ଦୁନିଆ ପଛରେ ଘୂରେ, ଆଉ ଯାହା ଲଭୁ ଦିଲ୍ଲୀ ତା'ଠାରୁ ରହିଯାଉ ଦୂରେ ଦୂରେ ।' ନାଜିମୁଦ୍ଦିନ ଉକ୍ତିର ବ୍ୟାଖ୍ୟା କରାଗଲେ ଜଣାଯାଏ ଯେ, ତୁମ୍ଭେ ଦିଲ୍ଲୀ ମସ୍‌ଜିଦ୍‌ରେ ବସିପାର । କିନ୍ତୁ ମଣିଷର ହୃଦୟ କନ୍ଦରରେ ତୁମ୍ଭେ ଅଭିଷିକ୍ତ କି ? ଲୋକେ ଜଳଜଳ ବୋଲି ତ୍ରାହି ଚିତ୍କାର କରୁଥିଲାବେଳେ ଲୋକଙ୍କୁ ଦିଲ୍ଲୀରୁ ଦୌଲତାବାଦ ଓ ପୁଣି ଦୌଲତାବାଦରୁ ଦିଲ୍ଲୀ ଚାଲି ଚାଲି ଆସିବାକୁ କହୁଛ । ସେମାନେ ତୃଷାର୍ତ୍ତ । ତାଙ୍କର ତୃଷା ନିବାରଣ ପାଇଁ କି ପଦକ୍ଷେପ ନେଇଛ ? ତେଣୁ ତୁମେ ମଣିଷର ଦିଲ୍‌କୁ ଚିହ୍ନି ପାରିଲନାହିଁ । ଦିଲ୍ଲୀ ସାମ୍ରାଜ୍ୟକୁ ଶତ୍ରୁ କବଳରୁ ରକ୍ଷା କରିବା ପାଇଁ ପ୍ରଜାମାନଙ୍କୁ ତାଡ଼ନା ଦେଇ ପେଣ୍ଡୁ ପରି ଦିଲ୍ଲୀରୁ ଦୌଲତାବାଦ ଓ ଦୌଲତାବାଦରୁ ଦିଲ୍ଲୀ ପର୍ଯ୍ୟନ୍ତ ଗଡ଼ାଇ ଗଡ଼ାଇ ନେଉଛ । ତୁମେ ଦିଲ୍ଲୀରେ ବସିପାର । ସାମ୍ରାଜ୍ୟ ଚିନ୍ତା ତୁମ୍ଭକୁ ଘାରିଥାଉ । ମାତ୍ର ମଣିଷର ଦିଲ୍ ବା ପ୍ରଜାମାନଙ୍କର ଦିଲ୍‌ରେ ତୁମେ ବସିବାର ପ୍ରୟାସ କେବେ କରି ନାହଁ । ଏହା ତୁମ୍ଭଠାରୁ ବହୁତ ଦୂରରେ ।

ତେଣୁ ଗାନ୍ଧୀଧାମ ସେହିଠି ଯେଉଁଟିକୁ ପ୍ରସିଦ୍ଧ ଗୁଜରାଟୀ ସନ୍ଥକବି ନରସିଆ ମେହେଟ୍ଟା ଲେଖିଥିଲେ ଓ ବାପୁଙ୍କର ଅତି ପ୍ରିୟତମ ଭଜନ ହେଉଛି, ବୈଷ୍ଣବ ଜନ ତୋ ତେନ କହି ଏ କବିତାର ଅର୍ଥ ହେଉଛି - ଯେଉଁ ବ୍ୟକ୍ତି ପର ଦୁଃଖ ଜାଣେ, ପରୋପକାର କରି ମଧ୍ୟ ଅଭିମାନ କରେ ନାହିଁ, ସମସ୍ତଙ୍କୁ ପ୍ରଶଂସା କରେ ଓ କାହାର ନିନ୍ଦା କରେ ନାହିଁ । କାୟମନୋବାକ୍ୟ ନିଶ୍ଚଳ ରଖେ ତାକୁ ବୈଷ୍ଣବଜନ କୁହାଯାଏ । ତା'ର ଶରୀରରେ ସକଳ ତୀର୍ଥ ଅଛି ଓ ତହିଁରେ ରାମନାଥ ରୂପକ ଚାବି ଲାଗିଛି । ସେ ନିର୍ଲୋଭ, ନିଷ୍କପଟ ଓ କାମ କ୍ରୋଧ ନିବାରକ ଅଟେ ଏବଂ ତାକୁ ଦର୍ଶନ କଲେ ଏକସ୍ତରୀ ପୁରୁଷ ତରିଯା'ନ୍ତି । ଗାନ୍ଧିଜୀ ଥରେ ସର୍ବଧର୍ମ ସମାନତ୍ୱ ଉପରେ ଗୁରୁତ୍ୱ ଦେଇ କହିଥିଲେ - 'ମୁଁ ଯେଉଁ ହିନ୍ଦୁଧର୍ମର ଉପାସକ ତହିଁରେ ସାମ୍ପ୍ରଦାୟିକତାର ଅବକାଶ ନାହିଁ । ମୁସଲମାନ ଧର୍ମ, ଖ୍ରୀଷ୍ଟଧର୍ମ, ବୌଦ୍ଧଧର୍ମ ଓ ରାଷ୍ଟ୍ରୀୟ ଧର୍ମମାନଙ୍କରେ ଯାହା ସାରସ୍ୱତ ଜିନିଷ ମୋ' ହିନ୍ଦୁଧର୍ମରେ ମୁଁ ସେ ସବୁକୁ ସମାବେଶ କରାଉଛି ।

ପ୍ରକୃତ ସଚ୍ଚା ଗାନ୍ଧୀବାଦୀ ବୋଲାଉଥିବା ଥୋକାଏ ଲୋକଙ୍କୁ ମୋର ଗୋଟିଏ ପ୍ରଶ୍ନ । ଖାଲି ଖଦଡ଼ ଧୋତି, ଖଦଡ଼ ପଞ୍ଜାବୀ ଓ ଗାନ୍ଧୀ ଟୋପି ଲଗାଇ, ଗାନ୍ଧିଜୀଙ୍କର ଆମେ ପ୍ରକୃତ ଅନୁଗାମୀ ବୋଲି ଡିଣ୍ଡିମ ପିଟୁଥିବା ବ୍ୟକ୍ତିଙ୍କୁ ପଚାରୁଛି ଗାନ୍ଧିଜୀଙ୍କର ଅସମ୍ପୂର୍ଣ୍ଣ କାମକୁ ସଂପୂର୍ଣ୍ଣ କରିବ କିଏ ? ଗାନ୍ଧିଜୀ କୌଣସି କାର୍ଯ୍ୟ କଲେ ଅଭିମାନ କରୁନଥିଲେ । ଏହା କ'ଣ ସେମାନେ ଗାନ୍ଧିଜୀଙ୍କଠାରୁ ଶିଖି ନାହାନ୍ତି ? ଗାନ୍ଧିଜୀ ସମାଜ ମଧ୍ୟରେ ଥିବା ଜାତିପ୍ରଥା ବିଭେଦର ପୀରାମିଡ଼ ଭାଙ୍ଗି ଦେଇଥିଲେ । ଏବେ କ'ଣ ସେମାନେ ଗାନ୍ଧିଜୀଙ୍କର ଏହି କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବାପାଇଁ ବଳ ବା ବୟସ ନାହିଁ ? ଗାନ୍ଧିଜୀ ଅସ୍ପୃଶ୍ୟତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଏହି ଗାନ୍ଧୀ ଅନୁଗାମୀଙ୍କର

କ'ଣ ଅସ୍ପୃଶ୍ୟତା ନିବାରଣ କରିବା ପାଇଁ କିଛି ଭୂମିକା ନାହିଁ ? ସାମ୍ପ୍ରଦାୟିକ ସଂପ୍ରୀତି ସମାଜରେ ବଜାୟ ରଖିବା ପାଇଁ ଏମାନଙ୍କର କ'ଣ କିଛି କାମ କରିବାକୁ ନାହିଁ ?

ତେଣୁ ଗାନ୍ଧୀଧାମର ସାଇନ୍‌ପୋଷ୍ଟକୁ ଏମାନେ ପୁନଃ ଆବିଷ୍କୃତ କରିବା ଉଚିତ । ଗାନ୍ଧୀଧାମରେ ସତ୍ୟ, ଶାନ୍ତି, ଅହିଂସା, ସର୍ବଧର୍ମ ସମାନତ୍ୱ, ଅସ୍ପୃଶ୍ୟତା ନିବାରଣ, ସ୍ୱଦେଶୀ ଭାବନା ରହିଛି । ତେଣୁ ଗାନ୍ଧୀଧାମକୁ ଗଲାବେଳେ ଏହି ସାଇନ୍‌ପୋଷ୍ଟଗୁଡ଼ିକୁ ଦେଖି ତଦନୁସାରେ କାର୍ଯ୍ୟ କରି ଚାଲିଲେ ଗାନ୍ଧୀଧାମକୁ ଯାଇପାରିବ, ନହେଲେ ଗାନ୍ଧିଜୀଙ୍କ ପରିକଳ୍ପିତ ରାମରାଜ୍ୟ ଅଧୁରା ହୋଇ ରହିଯିବ । ଖାଲି ଆମେ ଗାନ୍ଧୀବାଦୀ ବୋଲାଇଲେ ବା ଡିଣ୍ଡିମ ପିଟିଲେ ପ୍ରକୃତ ଗାନ୍ଧୀଧାମକୁ ଯାଇପାରିବା କି ? ଗାନ୍ଧିଜୀ ଯଥାର୍ଥରେ କହିଥିଲେ, ହୃଦୟକୁ ତାଲିମ କରିବା ହିଁ ମୋ ମତରେ ଆଧାତ୍ମିକ ଶିକ୍ଷା । ପୁଣି ଜୋର ଦେଇ କହିଥିଲେ, 'ଘୃଣାର ହ୍ରାସ ଓ ପ୍ରେମର ବୃଦ୍ଧି ଘଟାଇବା ହିଁ ମାନବର କର୍ତ୍ତବ୍ୟ ।

ଗାନ୍ଧିଜୀଙ୍କର ସର୍ବୋତ୍କୃଷ୍ଟ ବାଣୀ 'ସ୍ୱଦେଶ ପ୍ରୀତି' ସମ୍ପର୍କରେ ଥିଲା । ଆଜି ସ୍ୱଦେଶପ୍ରୀତି ଆମ୍ଭମାନଙ୍କୁ ଶିକ୍ଷା ଦେଉଅଛି ଯେ ବ୍ୟକ୍ତିଙ୍କୁ ପରିବାର ପାଇଁ ପରିବାରକୁ ଗ୍ରାମ ପାଇଁ, ଗ୍ରାମକୁ ଜିଲ୍ଲା ପାଇଁ, ଜିଲ୍ଲାକୁ ପ୍ରଦେଶ ପାଇଁ ଏବଂ ପ୍ରଦେଶକୁ ଦେଶ ପାଇଁ ଜୀବନ ଦାନ ଦେବାକୁ ହେବ । ତେଣୁ ଗାନ୍ଧୀବାଦୀଙ୍କର କ'ଣ କର୍ତ୍ତବ୍ୟ ନୁହେଁ କି ଦେଶରେ ଆଞ୍ଚଳିକ ବୈଷମ୍ୟ ଦୂର କରିବା ? ମହାତ୍ମା ଗାନ୍ଧୀ ୭୯ ବର୍ଷ ପର୍ଯ୍ୟନ୍ତ କର୍ମତତ୍ପର ଥିଲେ (୧୮୬୯-୧୯୪୮) । ଆମ୍ଭର ତଥାକଥିତ ଗାନ୍ଧୀବାଦୀମାନଙ୍କୁ ଷାଠିଏ ବର୍ଷରେ ବାର୍ଦ୍ଧକ୍ୟ ଘାରିଲାଣି । ଶେଷରେ ଗାନ୍ଧୀଙ୍କର ଏକ ଆପ୍ତବାଣୀ ଉଲ୍ଲେଖ କରି ଏ ପ୍ରବନ୍ଧକୁ ଶେଷ କରୁଛି । ଯାହା ପ୍ରେମ ଦ୍ୱାରା ଅର୍ଜିତ ତାହା ଚିରସ୍ଥାୟୀ । ଯାହା ଘୃଣା ଦ୍ୱାରା ପ୍ରାପ୍ତ ତାହା ଜୀବନ ପ୍ରତି ରୋଗ ସଦୃଶ । କାରଣ ତାହା ଘୃଣାକୁ ବୃଦ୍ଧି କରାଏ ।

ଉପନିର୍ଦ୍ଦେଶକ (ପ୍ରିଣ୍ଟ ମିଡିଆ ତଥା ବିଜ୍ଞାପନ)
ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର

---

# ନବପ୍ରଭାତ

ଓମ୍ ପ୍ରକାଶ ମହାପାତ୍ର

ବର୍ତ୍ତମାନର ମୋହରେ ଭବିଷ୍ୟକୁ ନମଣ ହେୟ
ଅତୀତ ବର୍ତ୍ତମାନ ଭବିଷ୍ୟ ବୋଧେ ଏକ ଅକ୍ଷୟ ।
ଏଇ ତ୍ରିଶୂଳର ଏକ ମୁନ ଝଡ଼ିଗଲେ ପଡ଼ି
ଶିବ ଅଙ୍ଗେ ଅବକ୍ଷୟ ଶବର ଉଦୟ ଘଡ଼ି ।
ପାକଳ ମଞ୍ଜର ମଞ୍ଜି ଅଙ୍କୁରୋଦ୍‌ଗମେ
ପାଇ ସାର ପାଣି ପବନ ଆଲୁଅ ସ୍ନେହ ଆମ ତୁମେ ।
ବଢ଼ି ମର୍ଯ୍ୟାଦା ରଖେ ବଡ଼ବଡ଼ିଆ ଏଇ ଧାମେ
ଏଇ ଘରେ ବି ଶିଶୁଶ୍ରମ ଲାଗୁଛି କାମେ !
ଶିକ୍ଷା ଛାଡ଼ି ଘାଣ୍ଟେ ଅଳିଆ ଘୁସୁଡ଼ି ଘୁସୁଡ଼ି
ସବୁ କିଛି ଅସମାନ ଗୋଦରା କୋଡ଼େ ମାଡ଼େ
ଲିଙ୍ଗଭେଦ ମା' ଗର୍ଭୁ ଉପାଡ଼ି ଫୋପାଡ଼େ ।
ବାଳ ଅପରାଧେ କେତେ ପୁଣି ବନ୍ଦୀଶାଳେ ପଡ଼ି
ଖାଦ୍ୟବସ୍ତ୍ର ସ୍ନେହ ଶ୍ରଦ୍ଧା ଶିଶୁ ପ୍ରାଣୁ ନିଅ କାଢ଼ି ।
ବିକଳାଙ୍ଗ ଅନ୍ଧ ଅନାଥ ରଙ୍ଗ ଢଙ୍ଗେ ମାନବ କଢ଼ି !
ଏଇ ସ୍ୱପ୍ନ ଚାଚା ନେହେରୁ ଜନ୍ମ ଦିନେ ଯାଉ ଝଡ଼ି ପଡ଼ି ।
ହସୁ ଶିଶୁ ସେ ପରା ଭବିଷ୍ୟ ମାନବ ସମ୍ବଳ ଅମୃତ ଘଡ଼ି
ଶିଶୁ ସୁରକ୍ଷା, ଶିକ୍ଷା, ସ୍ୱାସ୍ଥ୍ୟ ନହେଉ ଅନ୍ତରାୟ
ଏ ବାବଦେ ଅର୍ଥ ବ୍ୟୟ ନୁହେଁ ବି ଦାରିଦ୍ର୍ୟେ ଅପଚୟ ।

ଉପଶାସନ ସଚିବ, ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର


ପ୍ରସନ୍ନ କୁମାର ଦାଶ

# ସାଧନା ଯାହାର କର୍ମୀ ଭଳି

ପ୍ରଭୁକଲ୍ୟାଣ ମହାପାତ୍ର

**ବି**ଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ପ୍ରଜାମଣ୍ଡଳ ଆନ୍ଦୋଳନର ଅନ୍ୟତମ ପୁରୋଧା ତଥା ଓଡ଼ିଶା ବିଧାନସଭାର ପୂର୍ବତନ ବାଚସ୍ପତି ପ୍ରସନ୍ନ କୁମାର ଦାଶ ଜଣେ ଆଦର୍ଶବାଦୀ ରାଜନୈତିଜ୍ଞ ଥିଲେ । ସାଧାରଣ ଜୀବନରେ ମୂଲ୍ୟବୋଧ ଭିତ୍ତିକ ରାଜନୀତିକୁ ପାଥେୟ କରିଥିବା ପ୍ରସନ୍ନବାବୁ ଜଣେ ଅତ୍ୟନ୍ତ ସ୍ପଷ୍ଟବାଦୀ, ନିର୍ଭୀକ, ନିଷ୍ଠାବାନ, କର୍ତ୍ତବ୍ୟ ପରାୟଣ ଓ ନିର୍ମଳ ଚରିତ୍ରବତ୍ତାର ମଣିଷ ଥିଲେ । ତେଣୁ ପ୍ରାକ୍-ସ୍ୱାଧୀନତା କାଳର ଏହି ରାଜନେତା ଜଣଙ୍କୁ ବର୍ତ୍ତମାନର କଳୁଷିତ ରାଜନୀତିରେ ଅକଥନୀୟ ଦୁର୍ଦ୍ଦଶା ଭୋଗ କରିବାକୁ ପଡ଼ିଥିଲା । ଏହାସତ୍ତ୍ୱେ ସେ ଶେଷ ପର୍ଯ୍ୟନ୍ତ ନିଜର ନୀତି ଓ ଆଦର୍ଶରୁ କେବେହେଲେ ବିଚ୍ୟୁତ ହୋଇନଥିଲେ । ସୁଦୀର୍ଘ ରାଜନୈତିକ ଜୀବନର ଅଭିଜ୍ଞତାକୁ ଭିତ୍ତିକରି 'କର୍ମୀର ସାଧନା' ନାମକ ସେ ଯେଉଁ ଆତ୍ମଜୀବନୀ ରଚନା କରିଛନ୍ତି, ତାହା ଓଡ଼ିଶାର ରାଜନୈତିକ ଇତିହାସରେ ଏକ ଅମୂଲ୍ୟ ଗ୍ରନ୍ଥ । କାରଣ ଓଡ଼ିଆ ଭାଷାରେ ଆତ୍ମଜୀବନୀ ରଚନା ଅତି ବିରଳ । ବିଶେଷକରି ରାଜନେତାମାନଙ୍କ ଆତ୍ମଜୀବନୀ ସଂଖ୍ୟା ଅତ୍ୟନ୍ତ ସ୍ୱଳ୍ପ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ପରିପ୍ରେକ୍ଷୀରେ ଉଭୟ ଧନବଳ ଓ ଅର୍ଥବଳ ଆଦୌ ନଥାଇ ମୋଟ ୧୧ ମଧ୍ୟରୁ ୯ଟି ନିର୍ବାଚନରେ ରାଜ୍ୟ ବିଧାନସଭାକୁ ପ୍ରତିନିଧିତ୍ୱ କରି ନିଜର ଲୋକପ୍ରିୟତା ପ୍ରତିପାଦିତ କରିପାରିଥିବା ପ୍ରସନ୍ନବାବୁଙ୍କ ଆତ୍ମଜୀବନୀ ନିଶ୍ଚିତ ଭାବରେ ପରବର୍ତ୍ତୀ ପିଢ଼ି ପାଇଁ ଏକ ଆଲୋକବର୍ତ୍ତିକା । ସେହି 'କର୍ମୀର ସାଧନା' ପୁସ୍ତିକାରେ ସେ ଯେଉଁଳି ନିଚ୍ଛକ, ସ୍ପଷ୍ଟ ଓ ସରଳ ଭାବରେ ରାଜନୀତିର ପରିଭାଷା (ସଂଜ୍ଞା), ରାଜନୈତିକ ଦଳଗୁଡ଼ିକର ଆଚାର-ସଂହିତା, ରାଜନୀତିରେ ମୂଲ୍ୟବୋଧର ଅବକ୍ଷୟ, ଦୁର୍ନୀତି ଓ ଭ୍ରଷ୍ଟାଚାରରେ ସମସ୍ତ ରାଜନୈତିକ ଦଳ ଏବଂ ନେତୃବୃନ୍ଦଙ୍କ ସଂପୃକ୍ତି, ବ୍ୟୟବହୁଳ, ନିର୍ବାଚନ ଯୋଗୁଁ ଦୁର୍ନୀତିର ପରିବ୍ୟାପ୍ତି, ରାଜନେତା ଓ ପ୍ରଶାସକମାନଙ୍କ ନୈତିକ ଚରିତ୍ରବତ୍ତାରେ ଅଧୋଗତି, ଜାତୀୟ ଚରିତ୍ରର ସ୍ଖଳନ ଆଦି ବିଷୟର ନିଷ୍ପକ୍ଷ ଅବତାରଣା କରିଛନ୍ତି, ସମ୍ଭବତଃ ଓଡ଼ିଶାର ରାଜନୈତିକ ଇତିହାସରେ ତା'ର ପଟାନ୍ତର ନାହିଁ । ପ୍ରସନ୍ନବାବୁଙ୍କର ସେହି ଅନୁଭବ ସିଦ୍ଧ କାହାଣୀଗୁଡ଼ିକ ବର୍ତ୍ତମାନ ରାଜନୀତି କ୍ଷେତ୍ରରେ ରହିଥିବା ଏବଂ ରାଜନୀତିରେ ନୂଆ କରି ପ୍ରବେଶ କରୁଥିବା ବ୍ୟକ୍ତିବିଶେଷଙ୍କ ଲାଗି ଯଥେଷ୍ଟ ଉପାଦେୟ ଓ ପ୍ରେରଣାଦାୟକ । ତେଣୁ ସେହି ଦିବଂଗତ ନେତାଙ୍କ ସ୍ମୃତିଚାରଣ କରିବା ଅବସରରେ ତାଙ୍କ ଆତ୍ମଜୀବନୀରୁ କେତେକ ପ୍ରାସଙ୍ଗିକ ବିଷୟର ଏଠାରେ ଉପସ୍ଥାପନ ପ୍ରଣିଧାନଯୋଗ୍ୟ ମନେହୁଏ ।

ଦୁର୍ନୀତିରେ ଦେଶର ସମସ୍ତ ଦଳର ସଂପୃକ୍ତି ବିଷୟରେ ମନ୍ତବ୍ୟ ଦେଇ ପ୍ରସନ୍ନବାବୁ ତାଙ୍କ ଆତ୍ମଜୀବନୀ 'କର୍ମୀର ସାଧନା' ପୁସ୍ତିକାରେ ଉଲ୍ଲେଖ କରିଛନ୍ତି, 'କେବଳ କଂଗ୍ରେସ ଦଳ ଯେ ଦୁର୍ନୀତିରେ ଲିପ୍ତ ତା' ନୁହେଁ ବରଂ କେନ୍ଦ୍ର ତଥା ରାଜ୍ୟସ୍ତରରେ ସମସ୍ତ ଦଳର ନେତୃବୃନ୍ଦ କିଛି ନା କିଛି ଦୁର୍ନୀତିରେ ଅଭିଯୁକ୍ତ ହୋଇଛନ୍ତି । ରାଜନୈତିକ ନେତୃବର୍ଗଙ୍କ ଅପେକ୍ଷା କେନ୍ଦ୍ର ଓ ରାଜ୍ୟସ୍ତରୀୟ ପ୍ରଶାସକ ମୁଖ୍ୟମାନେ ଅଧିକ ସଂଖ୍ୟାରେ ଦୁର୍ନୀତି ପରାୟଣ ହୋଇଥିବାର ଅଭିଯୋଗମାନ ହୋଇଛି । ବିହାର ଗୋ-ଖାଦ୍ୟ ଦୁର୍ନୀତିରେ ଯେଉଁ ୫୬ ଜଣ ବ୍ୟକ୍ତି ଅଭିଯୁକ୍ତ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ନେତାଙ୍କ ସଂଖ୍ୟା ଅତି ନଗଣ୍ୟ ଥିବାବେଳେ ପ୍ରଶାସକଙ୍କ ସଂଖ୍ୟା ଅଧିକ ଥିବାର ଲକ୍ଷ୍ୟ କରାଯାଏ । ଦେଶ ତଥା ପ୍ରଶାସକଙ୍କୁ ଦୁର୍ନୀତିମୁକ୍ତ କରିବା ଉଦ୍ଦେଶ୍ୟରେ ରାଜ୍ୟ ତଥା କେନ୍ଦ୍ରସ୍ତରରେ ଭିଜିଲାନ୍ସ ଏବଂ ସି.ବି.ଆଇ. ପ୍ରଭୃତି ବିଭାଗମାନ କାର୍ଯ୍ୟକାରୀ ହେଉଥିଲେ ହେଁ ତା'ର କୌଣସି ପ୍ରଭାବ ପଡୁଥିବାର ମନେହୁଏ ନାହିଁ । ତେଣୁ ରାଜନୈତିକ ଦଳଗୁଡ଼ିକ ନିଜ ନିଜ ଦଳରୁ ଏହି ଦୁର୍ନୀତି ବିଷକୁ ଉତ୍ପାଟନ କରିବା ଲାଗି ଆନ୍ତରିକତାର ସହ ଚେଷ୍ଟା କଲେ ଅବଶ୍ୟ କିଛି ସୁଫଳ ମିଳିପାରନ୍ତା । ଏବେ ରାଜନୈତିକ ଦଳର ନେତୃବୃନ୍ଦ ନିଜ ନିଜ ଦଳର ନୈତିକ ଚରିତ୍ରର ଉତ୍ଥାନ କିପରି ହୋଇପାରିବ, ସେ ବିଷୟରେ ପଦଟିଏ ବି କହୁନାହାନ୍ତି କିମ୍ବା କହିବାକୁ ସାହସ କରୁନାହାନ୍ତି । ନୈତିକତା, ସଚ୍ଚୋଟ ପଣିଆଁ, ମାନବିକ ମୂଲ୍ୟବୋଧ ପ୍ରଭୃତି ଆଜି କେବଳ ଶବ୍ଦରେ ପର୍ଯ୍ୟବସିତ, ସତେ ଯେପରି ସେଗୁଡ଼ିକର କିଛି କାର୍ଯ୍ୟକାରିତା ନାହିଁ । ଆମ ଦେଶରେ ବିଭିନ୍ନ ରାଜନୈତିକ ଦଳଗୁଡ଼ିକ ମଧ୍ୟରେ ପରସ୍ପରକୁ ନିୟନ୍ତ୍ରଣ କରିବା ଲାଗି କୌଣସି ନିୟମ ନାହିଁ । ଫଳରେ ଜଣେ ସଭ୍ୟ କୌଣସି ଏକ ଦଳରୁ ପଳାଇ ଆସି ଅଥବା କୌଣସି କାରଣରୁ ବିତାଡ଼ିତ ହୋଇ ମଧ୍ୟ ଅନ୍ୟ ଏକ ରାଜନୈତିକ ଦଳରେ ଅନାୟାସରେ ପ୍ରବେଶ

କରିପାରୁଛି । ଜଣେ ଗୋଟିଏ ଦଳରୁ ବାହାରି ଯିବାବେଳେ ତା'ର ଯେପରି କୌଣସି ବିଚାର ଆଲୋଚନା କରାଯାଉ ନାହିଁ, ସେହିପରି ନୂତନ ଦଳରେ ଯୋଗଦାନ କାଳରେ ମଧ୍ୟ ଠିକ୍ ଭାବରେ ବିଚାର ବିମର୍ଷ କରାଯିବାର କୌଣସି ବ୍ୟବସ୍ଥା ନାହିଁ । ଏହାଦ୍ୱାରା ଦଳରେ କୌଣସି ଶୃଙ୍ଖଳା ରହୁନାହିଁ ଏବଂ ଅନେକ ସମୟରେ ବହୁ ଅନାବଶ୍ୟକ ବ୍ୟକ୍ତି ଦଳ ଭିତରେ ପ୍ରବେଶ କରିବାର ସୁଯୋଗ ପାଉଛନ୍ତି । ଏହାର ପରିଣତି ସ୍ୱରୂପ ଦଳରେ ସୁବିଧାବାଦୀ ଲୋକଙ୍କ ପ୍ରାଧାନ୍ୟ ବୃଦ୍ଧି ପାଇବାରେ ଲାଗିଛି । ତେଣୁ ଏ ସଂପର୍କରେ ସମସ୍ତ ସ୍ୱୀକୃତିପ୍ରାପ୍ତ ରାଜନୈତିକ ଦଳର ମୁଖ୍ୟ କର୍ତ୍ତାମାନଙ୍କର ଏକ ମିଳିତ ବୈଠକ ଡକାଯାଇ ସମସ୍ତଙ୍କର ଗ୍ରହଣଯୋଗ୍ୟ ହେବାଭଳି ଏକ ରାଜନୈତିକ ସନନ୍ଦ ପ୍ରସ୍ତୁତ କରାଯିବା ବିଧେୟ । ତା'ନହେଲେ ସମସ୍ତ ଦଳ କ୍ରମଶଃ ଅଧିକରୁ ଅଧିକ ଦୁର୍ନୀତିଗ୍ରସ୍ତ ଏବଂ ସୁବିଧାବାଦୀ ହୋଇଯିବେ । ରାଜନୀତି ଯେତେବେଳେ ଏହିପରି ବେଶି ଭାଗ ନୀତିହୀନ ଲୋକଙ୍କ ଅକ୍ତିଆରକୁ ଚାଲିଯିବ ସେତେବେଳେ ଦେଶରେ ଗୁରୁତର ପରିସ୍ଥିତି ସୃଷ୍ଟି ହୋଇ ସୁପ୍ରତିଷ୍ଠିତ ଗଣତାନ୍ତ୍ରିକ ବ୍ୟବସ୍ଥାର ପତନ ଘଟିବ । ସମସ୍ତଙ୍କ ଅନିଚ୍ଛା ସତ୍ତ୍ୱେ ଏକଛତ୍ରବାଦ ମୁଣ୍ଡ ଟେକିବ । ସେଥିଯୋଗୁଁ ରାଜନୀତି କ୍ଷେତ୍ରରେ ଥିବା ଦଳମାନଙ୍କର ଆଚରଣ ସମ୍ବନ୍ଧୀୟ ଏକ ସନନ୍ଦ ରହିବା ଉଚିତ ।

ସେହିପରି 'ନିର୍ବାଚନରେ ବହୁଳ ବ୍ୟୟ ହିଁ ଦୁର୍ନୀତିର ମୂଳ କାରଣ' ପରିଚ୍ଛେଦରେ ପ୍ରସନ୍ନବାବୁ ଲେଖିଛନ୍ତି, 'ନିର୍ବାଚନ ବେଳେ ଦଳମତ ନିର୍ବିଶେଷରେ ସବୁ ପ୍ରାର୍ଥୀ ବହୁଳ ପରିମାଣରେ ଅର୍ଥ ବ୍ୟୟ କରିବାକୁ କୁଣ୍ଠା ପ୍ରକାଶ କରୁନାହାନ୍ତି । ସେମାନଙ୍କର ବିଶ୍ୱାସ ଅର୍ଥ ବିନିମୟରେ ବିଜୟ ସୁନିଶ୍ଚିତ । କେବଳ ଯେ, ଲୋକସଭା ଏବଂ ବିଧାନସଭାର ପ୍ରାର୍ଥୀମାନେ ଅତ୍ୟଧିକ ବ୍ୟୟ କରୁଛନ୍ତି ତା'ନୁହେଁ ପଞ୍ଚାୟତ ନିର୍ବାଚନରେ ୱାର୍ଡ଼ମେମ୍ବର ତଥା ପୌରପରିଷଦର କାଉନସିଲର ନିର୍ବାଚନରେ ପ୍ରାର୍ଥୀମାନେ ଯେଉଁ ପରିମାଣର ଅର୍ଥ ବ୍ୟୟ କରୁଛନ୍ତି ତାହା ଦେଖିଲେ ଆଶ୍ଚାର୍ଯ୍ୟାନ୍ୱିତ ହେବାକୁ ପଡ଼େ । ମାତ୍ର ବହୁଳ ଅର୍ଥ ବ୍ୟୟ ଦ୍ୱାରା ଯେ ବିଜୟ ଲାଭ ହୁଏ ନାହିଁ, ଏହା ମୋର ଅନୁଭବ ସିଦ୍ଧ । ଆମ ରାଜ୍ୟର ବିଧାନସଭାକୁ ୧୧ ମଧ୍ୟରୁ ୯ଟି ନିର୍ବାଚନରେ ମୁଁ ଜିତିଛି । ମାତ୍ର କୌଣସି ନିର୍ବାଚନ ବେଳକୁ ମୋ ନିକଟରେ ପଇସାଟିଏ ବି ନଥାଏ, ଏପରିକି ୧୯୫୨ ମସିହା ସାଧାରଣ ନିର୍ବାଚନ ବେଳେ ଅମାନତ ପରିମାଣର ଦେୟ ମଧ୍ୟ ମୋର ନଥିଲା । ମୋର ହିତୈଷୀ ବନ୍ଧୁମାନଙ୍କଠାରୁ ମାଗିଯାଚି ମୁଁ ନିର୍ବାଚନ କାର୍ଯ୍ୟ ତୁଲାଇ ଥିଲି । ଅଥଚ ମୋତେ ପ୍ରତିଦ୍ୱନ୍ଦିତା କରୁଥିବା ପ୍ରାର୍ଥୀମାନେ ଥିଲେ ଧନଶାଳୀ, ଯେଉଁମାନଙ୍କର ଅପର୍ଯ୍ୟାପ୍ତ ବ୍ୟୟ କରିବାର ସାମର୍ଥ୍ୟ ଥିଲା ! କିନ୍ତୁ ସେହି ଦୃଶ୍ୟପଟ୍ଟ ଏବେ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛି । ପ୍ରତ୍ୟେକ ପ୍ରାର୍ଥୀ ଅଜସ୍ର ଅର୍ଥ ବ୍ୟୟ କରିବାକୁ କୁଣ୍ଠା ପ୍ରକାଶ କରୁନାହାନ୍ତି । ଏପରି ସୀମାହୀନ ଖର୍ଚ୍ଚ କରିବା ଫଳରେ ଯେଉଁମାନେ ନିର୍ବାଚିତ ହେଉଛନ୍ତି, ସେମାନେ ବ୍ୟୟିତ ଅର୍ଥର ଭରଣା ପାଇଁ ଯେକୌଣସି ନୀତିହୀନ ପନ୍ଥା ଅବଲମ୍ବନ କରିବାକୁ ତିଳେ ହେଲେ ପଶ୍ଚାତ୍‌ପଦ ହେଉନାହାନ୍ତି । ଆମ ରାଜ୍ୟର ଦୁର୍ନୀତିମୂଳକ ଘଟଣାବଳୀର ବିଶ୍ଳେଷଣ କଲେ ଭଲ ଭାବରେ ଜଣାପଡ଼ିବ ଯେ, ଓଡ଼ିଶା ଆର୍ଥିକ କ୍ଷେତ୍ରରେ ସମଗ୍ର ଦେଶର ଅନ୍ୟାନ୍ୟ ରାଜ୍ୟମାନଙ୍କ ତୁଳନାରେ ସବୁଠାରୁ ନିମ୍ନତମ ସ୍ଥାନ ପାଇପାରିଛି । ମାତ୍ର ରାଜନୈତିକ ଦୁର୍ନୀତି କ୍ଷେତ୍ରରେ ଓଡ଼ିଶା ଅନ୍ୟ ରାଜ୍ୟମାନଙ୍କର ପଥପ୍ରଦର୍ଶକ ସାଜିବାର ଗୌରବ ଅର୍ଜନ କରିପାରିଛି ।

ଅନ୍ୟପକ୍ଷରେ ଅବକ୍ଷୟଗାମୀ ରାଜନୈତିକ ପରିସ୍ଥିତି ସଂପର୍କରେ କ୍ଷୋଭ ପ୍ରକାଶ କରି ସେ ଦର୍ଶାଇଛନ୍ତି ଯେ, 'କୌଣସି ଦେଶ ବା ଜାତିର ଜାତୀୟ ଚରିତ୍ର ନଥିଲେ, ସେ ଦେଶର ଲୋକ ଚରିତ୍ର ବା ମାନବିକ ମୂଲ୍ୟବୋଧର ଅଭିବୃଦ୍ଧି ଘଟେ ନାହିଁ । ଜାତୀୟ ଚରିତ୍ର ହିଁ ଦେଶକୁ ଆଗେଇ ନେବାରେ ସହାୟକ ହୋଇଥାଏ । ସ୍ୱାଧୀନତା ପ୍ରାପ୍ତିପରେ ଜାତୀୟ ଚରିତ୍ର ଗଠନ ଦିଗରେ ଆଦୌ ଦୃଷ୍ଟି ଦିଆଗଲା ନାହିଁ । କେବଳ ଆର୍ଥିକ ପ୍ରଗତି ପ୍ରତି ଗୁରୁତ୍ୱାରୋପ କରି ସରକାର ଓ ପ୍ରଶାସନ ସେ ଦିଗରେ ବ୍ୟସ୍ତ ରହିଲେ । ବିଦେଶରୁ କୋଟି କୋଟି ଟଙ୍କା ଋଣ କରି ଦେଶକୁ ଧନଶାଳୀ କରାଇବା ପାଇଁ ଯୋଜନାମାନ ପ୍ରସ୍ତୁତ କରାଗଲା । ଗୋଟିକ ପରେ ଗୋଟିଏ ପଞ୍ଚବାର୍ଷିକ ଯୋଜନାମାନ ପ୍ରସ୍ତୁତ କରି ଯେଉଁ ସବୁ ଅର୍ଥ ବିନିଯୋଗ କରାଗଲା ତା'ର ବହୁ ଅଂଶ ବାଟମାରଣା ହୋଇଗଲା । ଫଳରେ ଧନୀ ଓ ଦରିଦ୍ର ମଧ୍ୟରେ ତାରତମ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଅନେକ ସ୍ୱାର୍ଥନ୍ୱେଷୀ ପ୍ରଶାସନ କ୍ଷେତ୍ରରେ ପ୍ରଭାବ ବିସ୍ତାର କରି ଦୁର୍ନୀତି ଏବଂ ଭ୍ରଷ୍ଟାଚାର ବଢ଼ାଇଲେ । ଫଳରେ ସମାଜର ତଳ ଶ୍ରେଣୀର ଲୋକେ ଶୋଷଣର ସମ୍ମୁଖୀନ ହୋଇ ନିରାଶା ଓ ହତାଶାରେ ନିଷ୍ପେସିତ ହେବାକୁ ଲାଗିଲେ । ନିଜକୁ ଦେଶ ଗଠନରେ ଏକ ଅଙ୍ଗ ବୋଲି ଉପଲବ୍ଧି କରି ପାରିଲେ ନାହିଁ । ବ୍ୟକ୍ତି କୈନ୍ଦ୍ରିକ ରାଜନୀତି ଯୋଗୁଁ ସ୍ୱାର୍ଥନ୍ୱେଷୀ ଲୋକେ ଯେକୌଣସି ମତେ କ୍ଷମତା ଦଖଲ କରିବାକୁ ଚେଷ୍ଟା କଲେ ଓ ଥରେ କ୍ଷମତାର ଅଧିକାରୀ ହେଲେ ତାକୁ ଛାଡ଼ିବାକୁ ଚାହିଁଲେ ନାହିଁ । ସୁଦୂର ପ୍ରସାରୀ ପରିଣତି ପ୍ରତି ଦୃଷ୍ଟି ନଦେବାରୁ କ୍ରମେ ଅସାମାଜିକତା ବୃଦ୍ଧି ପାଇବାକୁ ଲାଗିଲା । ଶାନ୍ତି, ସୌହାର୍ଦ୍ଦ୍ୟ, ପ୍ରେମ, ମମତା, ଦୟା, କ୍ଷମା, ସତ୍ୟ ସ୍ଥାନରେ ହିଂସା, ଛଳନା, ପରଶ୍ରୀକାତରତା, ପ୍ରବଞ୍ଚନା, ମିଥ୍ୟା, କପଟାଚାରିତା ପ୍ରଭୃତି ଜନଜୀବନକୁ ଅସ୍ତବ୍ୟସ୍ତ କରିପକାଇଲାଣି । ନେତୃବୃନ୍ଦ ଆଜି ଜନତାର ସେବା ନାମରେ କେବଳ ଭୋଟ ପାଇବାକୁ ବ୍ୟସ୍ତ । ଯେ ନିଜର ପାରିଲାପଣ ଦେଖାଇ ପାରୁଛି ସେ ନିଜର ସ୍ୱାର୍ଥସାଧନ ପାଇଁ ସବୁ ବୋଲି ନେଇଯାଉଛି । ଲୋକେ କେବଳ ହୋହାଲ୍ଲା କରିବାରେ ବ୍ୟସ୍ତ, ମାତ୍ର ଏମାନଙ୍କର କେହି କିଛି କରିପାରୁନାହାନ୍ତି କିମ୍ବା କିଛି କରିପାରିବେ ନାହିଁ । ନାରୀ ବିଳାସ, ଉପଭୋଗ ଲାଳସା, ସ୍ୱେଚ୍ଛାଚାର, ପ୍ରମତ୍ତତା ଆଦି ସମାଜକୁ ଗ୍ରାସ

କରିବାକୁ ବସିଲାଣି । ପ୍ରତ୍ୟେକ ସୁଯୋଗର ଅପେକ୍ଷାରେ । ଯିଏ ସୁଯୋଗ ପାଉଛି ସେ ଧନୀ ହେଉଛି, ମାନୀ ହେଉଛି, ପଦପଦବୀର ଅଧିକାରୀ ହୋଇପାରୁଛି । ପ୍ରତ୍ୟେକ ସ୍ୱାର୍ଥ ପାଇଁ ବ୍ୟସ୍ତ । ମହାତ୍ମା ଗାନ୍ଧୀଙ୍କ ସ୍ୱାଧୀନତା ଆନ୍ଦୋଳନ ବେଳେ ଲୋକ ସଂପର୍କକୁ ମଜଭୁତ କରିବା ପାଇଁ ଜାତି, ଧର୍ମ ଓ ଅଞ୍ଚଳ ନିର୍ବିଶେଷରେ ଜାତୀୟ ଚରିତ୍ର ଗଠନ କରିବାରେ ସଫଳ ହୋଇଥିଲେ । ମାତ୍ର ପରବର୍ତ୍ତୀକାଳରେ ଆମେ ତାକୁ ରକ୍ଷା କରିପାରିଲୁ ନାହିଁ । ଜାତିଆଣ ଭାବ, ସାଂପ୍ରଦାୟିକତା ସଂଗେସଂଗେ ବିଚ୍ଛିନ୍ନତାବାଦର ଜନ୍ମ ହୋଇ ଦେଶର ପ୍ରଗତିରେ ବାଧ ସୃଷ୍ଟି କରିବା ସହ ଦେଶର ଗଣତନ୍ତ୍ର ଶାସନ ଆଜି ବିପନ୍ନ ହେବାକୁ ବସିଲାଣି । ଭାରତର ସମସ୍ତ ରାଜନୈତିକଦଳ ତଥା ଜନସାଧାରଣ ଦେଶର ଏ ଅବସ୍ଥା ପାଇଁ ସମସ୍ତେ ଦାୟୀ । ବିଶେଷ କରି କଂଗ୍ରେସ ଦଳ ଦେଶର ବୃହତମ ତଥା ମୂଳ ରାଜନୈତିକ ଦଳ ହେତୁ ଅଧିକ ପରିମାଣରେ ଦାୟୀ ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ଏତଦ୍‌ଭିନ୍ନ ସଂସଦୀୟ ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ପରିଲକ୍ଷିତ ତ୍ରୁଟି ବିଚ୍ୟୁତିରେ ଖେଦୋକ୍ତି ପ୍ରକାଶ କରି ପ୍ରସନ୍ନ ବାବୁ କହିଛନ୍ତି, କେଉଁ ଅବକ୍ଷୟ ଆଜି ଦେଶର ରାଜନୀତି କ୍ଷେତ୍ରରେ ଅପରାଧୀ କରଣକୁ ବୃଦ୍ଧି କରିବାରେ ପ୍ରୋତ୍ସାହନ ଯୋଗାଇଛି ତା'ର ପର୍ଯ୍ୟାଲୋଚନା କରାଯିବା ଆବଶ୍ୟକ । ଦୁର୍ନୀତି, ଭ୍ରଷ୍ଟାଚାର ତଥା ଶୋଷଣ ଯୋଗୁଁ ହିଁ ଆମ ଦେଶ ବିଶ୍ୱରେ ଭ୍ରଷ୍ଟାଚାର କ୍ଷେତ୍ରରେ ଶୀର୍ଷସ୍ଥାନରେ ଅଧିକାରୀ ହୋଇପାରିଛି । ଏହା କେହି ଅସ୍ୱୀକାର କରିପାରିବ ନାହିଁ । ଆଜି କେତେ ଦୁର୍ନୀତି ପରାୟଣ ରାଜନୈତିକ ନେତା, ଠିକାଦାର ତଥା ପ୍ରଶାସନ କ୍ଷେତ୍ରରେ ବଡ଼ଠାରୁ ଆରମ୍ଭ କରି ଛୋଟ ପର୍ଯ୍ୟନ୍ତ, ବ୍ୟବସାୟୀ ଗୋଷ୍ଠୀ ରାତାରାତି ବଡ଼ଲୋକ ସାଜି ଲୋକଲୋଚନ ଆଢୁଆଳରେ ହଜାର ହଜାର କୋଟି ଟଙ୍କା ତୋଷରପାତ କରି ଏହି ଅନ୍ୟାୟ ଲବ୍‌ଧ ଧନକୁ ବିଦେଶର ବ୍ୟାଙ୍କମାନଙ୍କରେ ଜମା କରୁଛନ୍ତି । ତାହା ଜନସାଧାରଣ ବେଶ ଉପଲବ୍‌ଧି କରି ସାରିଲେଣି । ତେଣୁ ସରକାର, ପ୍ରଶାସନ ତଥା ପ୍ରଚଳିତ ସଂସଦୀୟ ଶାସନ ବ୍ୟବସ୍ଥା ଉପରୁ ଜନସାଧାରଣଙ୍କ ବିଶ୍ୱାସ କ୍ରମଶଃ ଚାଲି ଯାଇଥିବାର ଜଣାଯାଏ । ସଂସଦୀୟ ଗଣତନ୍ତ୍ର ଶାସନ ବିଶ୍ୱର ସର୍ବଶ୍ରେଷ୍ଠ ଶାସନ ହିସାବରେ ଏପର୍ଯ୍ୟନ୍ତ ପରିଗଣିତ ହୋଇ ସମ୍ମାନ ଓ ବିଶ୍ୱାସ ଅର୍ଜନ କରିଆସିଛି । ଏହାର ଆଧାର ଜନଗଣ । ଯଦି ସେହି ଜନସାଧାରଣଙ୍କ ଦ୍ୱାରା ଗଠିତ ସରକାର ଜନଗଣଙ୍କ ଆସ୍ଥା ଓ ବିଶ୍ୱାସ ହରାଇବ ତେବେ ସେ ସରକାର ବା ଶାସନକୁ ରକ୍ଷା କରିବ କିଏ ? ବିଶ୍ୱର ବିଭିନ୍ନ ଦେଶରେ ଦୁର୍ନୀତି ଓ ଭ୍ରଷ୍ଟାଚାର ଥିଲେ ମଧ୍ୟ ଅନେକ ଦେଶରେ ସେଥିପାଇଁ ଅବିଳମ୍ବେ ଦଣ୍ଡବିଧାନର ବ୍ୟବସ୍ଥା ରହିଛି । ଜାପାନ, କୋରିଆ, ଇଟାଲି ପ୍ରଭୃତି ଦେଶମାନଙ୍କରେ ସର୍ବୋଚ୍ଚ ଶାସନକର୍ତ୍ତାମାନେ ମଧ୍ୟ ଜେଲଦଣ୍ଡ ଭୋଗୁଛନ୍ତି ମାତ୍ର ଆମ ଭାରତରେ ଏଯାବତ୍ ଦେଶର ପ୍ରଶାସନିକ ପ୍ରତିନିଧି କ୍ଷେତ୍ରରେ ଥିବା ପଦାଧିକାରୀଙ୍କୁ ଦୋଷୀ ସାବ୍ୟସ୍ତ କରି ଦଣ୍ଡ ଦିଆଯାଇପାରୁନାହିଁ । ବର୍ତ୍ତମାନ ରାଜନୀତି, ଅର୍ଥନୀତି ତଥା ସାମାଜିକ ବ୍ୟବସ୍ଥାରେ ବିପଦଜନକ ଅବକ୍ଷୟ ଘଟି ଚାଲିଛି । ପ୍ରତ୍ୟେକ କ୍ଷେତ୍ରରେ ଉପୁଜିଥିବା ଏହି ଶୋଚନୀୟ ଅବସ୍ଥା ଆଜି ଚିନ୍ତାଶୀଳ, ବୁଦ୍ଧିଜୀବୀ ବ୍ୟକ୍ତିଙ୍କ ପାଇଁ ଉଦ୍‌ବେଗର କାରଣ ରୂପେ ଦଣ୍ଡାୟମାନ । ସ୍ୱାଧୀନତା ପ୍ରାପ୍ତିର ଏତେ ଅଳ୍ପଦିନ ଭିତରେ ଯେପରି ଦ୍ରୁତ ଅବକ୍ଷୟ ସଂଘଟିତ ହେଉଛି ସେଥିରୁ ଉଦ୍ଧାର ପାଇବାର ଉପାୟ କ'ଣ ? ରାଜନୀତି ଓ ପ୍ରଶାସନ ଆଜି ଗୁରୁତର ଅପରାଧୀକରଣର ଶୀକାର ହୋଇଛି । ଏପରି ଶୋଚନୀୟ ଅବସ୍ଥା ଦେଖି ସମାଜର ଶୀର୍ଷ ସ୍ଥାନରେ ଥିବା ନିଃସ୍ୱାର୍ଥପର ତଥା ନିଷ୍ଠାବାନ ବ୍ୟକ୍ତିମାନେ ଯେପରି ଦୂରେଇ ଯାଉଛନ୍ତି, ତଦ୍ୱାରା ସମସ୍ୟାର ସମାଧାନ ହୋଇପାରିବ ନାହିଁ । ସେମାନେ ସମାଜର ମଙ୍ଗଳାକାଂକ୍ଷୀ, ଶୁଭଚିନ୍ତକ, ହିତାଧ୍ୟାୟୀ ଭାବେ ସମସ୍ତ ଅଭିମାନ, ଆତ୍ମଶ୍ଳାଘା ପରିହାର କରି ଏସବୁର ପ୍ରତିକାର ପାଇଁ ଆଗେଇ ଆସିବା ଉଚିତ ।

'କର୍ମୀର ସାଧନା' ପୁସ୍ତିକାରେ ଲିପିବଦ୍ଧ ହୋଇଥିବା ପ୍ରସନ୍ନବାବୁଙ୍କ ଏହିସବୁ ମର୍ମାନୁଭୂତି କେବଳ ଆଜିର କଳୁଷିତ ରାଜନୀତି ଓ ରାଜନେତାମାନଙ୍କ ସଂପର୍କରେ ସ୍ପଷ୍ଟ ଚିତ୍ର ପ୍ରଦାନ କରିବା ମଧ୍ୟରେ ସୀମିତ ହୋଇ ରହିନାହିଁ । ଅପରପକ୍ଷେ ତହିଁରେ ସ୍ଥାନ ପାଇଥିବା ତାଙ୍କର ସୁଦୀର୍ଘ ଅଭିଜ୍ଞତା ଲବ୍‌ଧ ପରାମର୍ଶ ଓ ହିତୋପଦେଶଗୁଡ଼ିକର ପରିପାଳନ ନିଶ୍ଚିତ ଭାବରେ ବର୍ତ୍ତମାନର ଅବକ୍ଷୟଗାମୀ ରାଜନୀତି ଓ ନୀତିହୀନ ରାଜନେତାମାନଙ୍କୁ ଉପଯୁକ୍ତ ପଥପ୍ରଦର୍ଶନ କରିବାରେ ବିଶେଷ ସହାୟକ ହେବ ବୋଲି ଆଶା କରାଯାଏ ।

ଭି.ଆର୍.-୩/୨, ୟୁନିଟ୍-୩
ରିଜର୍ଭ ବ୍ୟାଙ୍କ ପଛପଟ, ଭୁବନେଶ୍ୱର-୧





# ଓଡ଼ିଶାର ବନ୍ୟପ୍ରାଣୀ ଓ ଭବିଷ୍ୟତ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

### ବିଚିତ୍ର ଗ୍ରହ ଓ ଜୀବନ

ସୌର ପରିବାରରେ ନଅଟି ଗ୍ରହ କଥା ପ୍ରାୟ ସମସ୍ତେ ଜାଣନ୍ତି । ଏବେ ପୁଣି ଏକ ନୂତନ ଗ୍ରହ ବା ଦଶମ ଗ୍ରହ (Tenth Planet)କୁ ଆବିଷ୍କାର କରାଯାଇ ଏ ପରିବାରରେ ସାମିଲ କରାଯାଇଛି । ଏ ଯେତେଗୋଟି ଗ୍ରହ ଅଛନ୍ତି, ସେଥିମଧ୍ୟରୁ ଗୋଟିଏ ମାତ୍ର ଗ୍ରହରେ ଜୀବସତ୍ତା ସମ୍ଭବ ହୋଇପାରିଛି । ସେଇଟି ହେଉଛି ପୃଥିବୀ (Earth) । ଏ ଗ୍ରହର ସ୍ଥାନଟି ହେଉଛି ତୃତୀୟ ଅର୍ଥାତ୍ ସୂର୍ଯ୍ୟଠାରୁ ଦୁଇଟି ଗ୍ରହ ବୁଧ ଓ ଶୁକ୍ର ପରେ ହିଁ ଏହାର ଅବସ୍ଥିତି । ଅନ୍ୟ ଗ୍ରହମାନଙ୍କ ତୁଳନାରେ ପୃଥିବୀର ସ୍ଥାନ ମଧ୍ୟ ସ୍ୱତନ୍ତ୍ର । ଏଠାରେ ବାୟୁ, ଜଳ, ମୃତ୍ତିକା, ପାହାଡ଼, ପର୍ବତ, ନଦନଦୀ, ଝରଣା, ଉଷ୍ମ ପ୍ରସ୍ରବଣ ପରି ନିର୍ଜୀବ ସତ୍ତା ସହ ଭରି ରହିଛନ୍ତି ନୀରବ ନିଶ୍ଚଳ ବୃକ୍ଷରାଜି ଓ ଚଳପ୍ରଚଳ ପ୍ରାଣୀମାନେ । ପୃଥିବୀ ପରି ଗ୍ରହକୁ ଏ ବୃକ୍ଷରାଜି ଓ ପ୍ରାଣୀ ସମୂହ କରିଛନ୍ତି ଜୀବନ୍ତ । ମଙ୍ଗଳ ଗ୍ରହ ପାଇଁ ବୈଜ୍ଞାନିକଗଣ ଚେଷ୍ଟା ଅବ୍ୟାହତ ରଖିଛନ୍ତି, କିପରି ସେଠାରେ ଜୀବନ ସମ୍ଭବ ହୋଇପାରିବ ବୋଲି । ସେଥିପାଇଁ ପୃଥିବୀ ପରି ଗ୍ରହ ଉପରେ ଆମେ ଜନ୍ମ ନେଇ ସତରେ ବଡ଼ ଗର୍ବିତ ହେବା କଥା । ବଣ ଜଙ୍ଗଲ ଓ ଜୀବଜନ୍ତୁମାନଙ୍କ ସମାହାର ଯୋଗୁ ହିଁ ପୃଥିବୀ ସତରେ ବଡ଼ ସୁନ୍ଦର । ବଣ ଜଙ୍ଗଲରେ ବୃକ୍ଷଗୁଡ଼ିକ ସ୍ଥିରାବସ୍ଥାରେ ଠିଆ ହୋଇଥିବା ବେଳେ ତା'ର ଆଢୁଆଳରେ ଲୁଚିଛପି ବୁଲାବୁଲି କରିବାରେ ବ୍ୟସ୍ତ ରହିଥାଆନ୍ତି ପ୍ରାଣୀମାନେ । ଅର୍ଥାତ୍ ପୃଥିବୀର ବଣଜଙ୍ଗଲ ହିଁ ପ୍ରାଣୀମାନଙ୍କର ଘର ବା ଆବାସସ୍ଥଳୀ । ବିବର୍ତ୍ତନ କ୍ରମରେ ଜଳଭାଗର ସୃଷ୍ଟି ପରେ ଜଳରେ ଉଦ୍ଭିଦ, ତା' ପରେ ପରେ ଜଳଭାଗରେ ପ୍ରାଣୀ ଓ ଶେଷରେ ସ୍ଥଳ ଭାଗରେ ବିଭିନ୍ନ ପ୍ରକାର ପ୍ରାଣୀ ଆବିର୍ଭାବ ବା ସୃଷ୍ଟି ହୋଇଛନ୍ତି । ଏଥିପାଇଁ ଲାଗିଛି ହଜାର ହଜାର ବର୍ଷ ସମୟ । ଏ ଜୀବନଗୁଡ଼ିକ ସମ୍ଭବର କାରଣ ହିଁ ଜଳ ।

### ପୃଥିବୀ ଓ ବନ୍ୟପ୍ରାଣୀର ସ୍ଥିତି

ବିବର୍ତ୍ତନ ସୋପାନରେ ମଣିଷ ଆଜି ଉଚ୍ଚରେ । ସେ ଏକ ବୁଦ୍ଧିମାନ ଶ୍ରେଷ୍ଠ ସାମାଜିକ ପ୍ରାଣୀ ହିସାବରେ ବିବେଚିତ । ଧୀରେ ଧୀରେ ଏ ଅବିବେକୀ ମଣିଷ ତା' ଚତୁଃପାର୍ଶ୍ୱରେ ରହିଥିବା ପ୍ରାଣୀମାନଙ୍କ ଉପରେ ଆଖି ପକାଇଲା । ଲୋଭରେ ଜୀବମାନଙ୍କୁ



ମାରିଲା, ଶିକାର କଲା ଓ ମାଂସ ଖାଇଲା । ପରେ ପରେ ଜୀବମାନଙ୍କର ଶରୀରର ବିଭିନ୍ନ ଅଂଶକୁ କେତେକ କାର୍ଯ୍ୟରେ ଲଗାଇବା ସହ ସେଗୁଡ଼ିକୁ ବିକ୍ରି କରିବାକୁ ପଛାଇଲା ନାହିଁ । ଶେଷରେ ଚମଡ଼ା, ହାଡ଼ ଓ ଶିଙ୍ଗ ଆଦି ମୂଲ୍ୟବାନ ପଦାର୍ଥଗୁଡ଼ିକ ବିଦେଶକୁ ଚାଲାଣ କରି ବେଶ ଦି'ପଇସା ରୋଜଗାରରେ ଲାଗି ପଡ଼ିଲା । ଲୋଭ ଅତ୍ୟଧିକ ହେତୁ ହତ୍ୟାକରି, ଗୁଳିକରି ଏବଂ ବିଭିନ୍ନ କୌଶଳରେ କବଳିତ କରି ଜୀବମାନଙ୍କୁ ଶିକାର କରିବାରେ ଲାଗିପଡ଼ିଲା। ଏ ମଣିଷ । ଶିକାରୀମାନଙ୍କର ଅହେତୁକ ଶିକାର ପ୍ରକ୍ରିୟା ଓ ଶିକାର ପ୍ରିୟତା ତଥା ବିଚାରହୀନ ଯଥେଚ୍ଛା ହତ୍ୟା ଫଳରେ ଭାରତୀୟ ବନ୍ୟଭୂମିରୁ ବହୁବିଧ ବନ୍ୟଜନ୍ତୁ ସବଂଶ ଲୋପ ପାଇବାକୁ ବସିଲେଣି । ତା' ମଧ୍ୟରୁ କେତେକ ଅର୍ଥାତ୍ ଚିତାବାଘ ଓ ଡୋଡୋପକ୍ଷୀ ସମ୍ପୂର୍ଣ୍ଣ ଲୁପ୍ତ ହେବାବେଳେ ଆଉ କେତେକ ଦିନ ଗଣୁଛନ୍ତି କେତେବେଳେ ଉଭାନ ହୋଇଯିବେ ବୋଲି । ଶିକାର ଏପରି ଅବ୍ୟାହତ ରହିଲେ ସମସ୍ତ ପ୍ରାଣୀ ଏମିତି ଲୁପ୍ତ ହୋଇଯିବେ । ଆମେ କେବଳ ଏ ଜୀବଜନ୍ତୁଗୁଡ଼ିକୁ ବୋଧହୁଏ ଦେଖିବାକୁ ପାଇବା ବହିର ଛବିରେ । ବଡ଼ ଦୁଃଖ ଓ ପରିତାପର ବିଷୟ ଯେ ଯେତିକି ପ୍ରାଣୀ ଆଦି ବଂଚି ରହିଛନ୍ତି ସେମାନେ ବଂଚିବାକୁ ସଂଗ୍ରାମ କରିବା ସମୟରେ ମଣିଷ ତାଙ୍କ ଉପରେ ଲୋଲୁପ ଦୃଷ୍ଟି ପକାଇ ଅତ୍ୟାଚାର କରିବାରେ ଲାଗିପଡ଼ିଛି । ଆଉ ଏ ସଂଗ୍ରାମରେ ପ୍ରାଣୀମାନେ ତିଷ୍ଠିବେ ବା କିପରି ? ମଣିଷ ଭୁଲିଯାଇଛି ଓ ଭୁଲି ଯାଉଛି ଯେ ଅନ୍ୟ ଉଦ୍ଭିଦ ଓ ପ୍ରାଣୀମାନଙ୍କ ପରି ମଣିଷ ମଧ୍ୟ ଏକ ପ୍ରାଣୀ । ଅନ୍ୟ ଜୀବନ ଏ ପୃଥିବୀରୁ ଲୋପ ପାଇଲେ ସେ ଏ ଗ୍ରହରେ ତିଷ୍ଠିବା

ଅସମ୍ଭବ । ଏ ଗ୍ରହ ଓ ଏ ଗ୍ରହ ଉପରେ ସୃଷ୍ଟ ଜୀବନକୁ ଲାଗିଛି ହଜାର ହଜାର ବର୍ଷ । ଅଳ୍ପ କିଛି ବର୍ଷ ମଧ୍ୟରେ ପ୍ରାଣୀ ଓ ଉଦ୍ଭିଦ ଲୋପ ପାଇଗଲେ ମଣିଷ ବି ନିଶ୍ଚିତ ଲୋପ ପାଇଯିବ, ଏଥିରେ ଦ୍ୱିମତ ନାହିଁ । ତେଣୁ ଆମେ ସମସ୍ତେ ବେଳ ହୁଁ ସାବଧାନ ହେବା ।

**ମାନବ ସେବାରେ ବନ୍ୟଜନ୍ତୁ**

ବଣ ଜଙ୍ଗଲ ପରି ପ୍ରାକୃତିକ ପରିବେଶରେ ରହୁଥିବା ପ୍ରାଣୀମାନେ ହିଁ ବନ୍ୟପ୍ରାଣୀ (Wildlife) ବା ବନ୍ୟଜନ୍ତୁ ବା ବନ୍ୟଜୀବନ । ଅର୍ଥାତ୍ ଭିନ୍ନ ଭାଷାରେ କହିବାକୁ ଗଲେ ଯେଉଁ ପ୍ରାଣୀମାନେ ଗୃହପାଳିତ ନୁହଁନ୍ତି ବା ଗୃହ ବା ଆବଦ୍ଧ ଅବସ୍ଥାରେ ପାଳିବା ଅସମ୍ଭବ ବା କଷ୍ଟ ସେମାନେ ହିଁ ବନ୍ୟପ୍ରାଣୀ । କିନ୍ତୁ କାଳକ୍ରମେ ମଣିଷ ତା'ର ସୁବିଧା ପାଇଁ କେତେକ ପ୍ରାଣୀକୁ ନିଜେ ନିଜର କବଳକୁ ଆଣି ପୋଷା ମନାଇ ଅନେକ କାର୍ଯ୍ୟରେ ଲଗାଇବା ସମ୍ଭବ ହୋଇପାରିଛି । ଯେଉଁ ପ୍ରାଣୀଗୁଡ଼ିକୁ ଏପରି ପାଳନ କରାଯାଏ, ସେମାନେ ହେଲେ ଗୃହପାଳିତ ଜନ୍ତୁ । ମାନବ ସମାଜର ଅର୍ଥନୈତିକ ବିକାଶ (Economic Development) ନିମିତ୍ତ ଦ୍ରୁମଲତାପୂର୍ଣ୍ଣ ବନଭୂମିର ମହତ୍ତ୍ୱ ଅନେକ । ବହୁ ମୂଲ୍ୟବାନ ପ୍ରାକୃତିକ ସମ୍ପଦ ଏହି ବନଭୂମିର ଦ୍ରୁମଲତାପୂର୍ଣ୍ଣ ବନ ମଧ୍ୟରେ ଥିବା ଅସଂଖ୍ୟ ବନ୍ୟଜନ୍ତୁଙ୍କର ବିଭିନ୍ନ ଅଙ୍ଗ ମନୁଷ୍ୟର ଔଷଧାଦି ପ୍ରସ୍ତୁତିରେ ବିଶେଷ ଭାବରେ ବ୍ୟବହୃତ ହୁଏ ।



କେତେକ ଶ୍ରେଣୀର ବନ୍ୟଜନ୍ତୁ ବୈଜ୍ଞାନିକମାନଙ୍କର ଗବେଷଣାଗାରରେ ଆବଶ୍ୟକ ହୁଅନ୍ତି ପରୀକ୍ଷାନିରୀକ୍ଷା ପାଇଁ । ଏମାନଙ୍କୁ ନେଇ ଗବେଷଣା କରିବା ଫଳରେ ଗବେଷଣା ଲବ୍ଧ ଜ୍ଞାନ ହିଁ ମାନବ ସମାଜର କାର୍ଯ୍ୟରେ ଲାଗିପାରିବା ସମ୍ଭବ ହୋଇପାରିଛି । କୁକୁରମାନଙ୍କୁ ଚୋର, ତସ୍କର ଓ ଖୁନୀମାନଙ୍କୁ ଧରିବାରେ ନିୟୋଜିତ କରାଯାଇପାରୁଛି । ହାତୀମାନଙ୍କୁ ଶିକାରୀମାନେ ଧରିବାରେ ଶିକ୍ଷା ପ୍ରଦାନ କରାଯାଇ କାର୍ଯ୍ୟରେ ଲଗାଯିବା ସମ୍ଭବ ହେଉଛି । ଚିଡ଼ିଆଖାନା, ପାର୍କ, ଅଭୟାରଣ୍ୟ (Sanctuary), ଜାତୀୟ ଉଦ୍ୟାନ (National Park), ଜୀବ ଉଦ୍ୟାନ (Zoological Park) ଓ ଜୈବମଣ୍ଡଳ (Biosphere Reserve) ପରି ସଂରକ୍ଷିତ ସ୍ଥାନରେ ପ୍ରାଣୀମାନଙ୍କୁ ରଖାଯିବା ଫଳରେ ଅନେକ ପିଲା ଓ ମଣିଷ ସେମାନଙ୍କୁ ଦେଖି ଖୁସି ହୋଇଥାଆନ୍ତି । ସର୍କସରେ ଅଦ୍ଭୁତ ଖେଳ ଓ କୌଶଳ ଦେଖାଉଥିବା ହାତୀ, ବାଘ, ସିଂହ, ଗଣ୍ଡା, ଜଳହସ୍ତୀ, କୁକୁର, ମାଙ୍କଡ଼ ଓ ଅନେକ କିସମର ପକ୍ଷୀମାନଙ୍କ କଥା କହିଲେ ନ ସରେ । କିଏ ବା ଏମାନଙ୍କ ଖେଳକୁ ଉପଭୋଗ ନକରନ୍ତି ! ଘରେ ପାଳୁଥିବା ପଶୁପକ୍ଷୀ ଆମକୁ ପ୍ରତ୍ୟେକ ଦିନ ଆମୋଦପ୍ରମୋଦରେ ସାହାଯ୍ୟ କରନ୍ତି । ତାଙ୍କର ଉପକାର ସତରେ ଅନେକ !

**ବନ୍ୟଜନ୍ତୁ ହ୍ରାସ ଓ ଲୋପର କାରଣ**

ବନ୍ୟଜନ୍ତୁ ପରିବେଶର ସନ୍ତୁଳନରେ ସହାୟକ ହେବା ସହ ମଣିଷ ପ୍ରତି ସେମାନଙ୍କର ସାହାଯ୍ୟ ଅନେକ । ଏତେ ଉପକାର ପାଇ ମଧ୍ୟ ନିର୍ଦ୍ଦୟ ନିଷ୍ଠୁର ମଣିଷ ହିଁ ଏମାନଙ୍କ ସଂଖ୍ୟା ହ୍ରାସ ପାଇଁ ସମ୍ପୂର୍ଣ୍ଣ ଦାୟୀ । ତେବେ ଯେଉଁ ମନୁଷ୍ୟକୃତ କାର୍ଯ୍ୟ ଯୋଗୁଁ ବନ୍ୟଜୀବନ ବିପନ୍ନ ତା'ର କାରଣଗୁଡ଼ିକ ହେଉଛି -

୧. ଜଙ୍ଗଲ କ୍ଷୟ (Deforestation)

୨. ସହରାଞ୍ଚଳ ପ୍ରତିଷ୍ଠା (Urbanisation)

୩. କଳକାରଖାନା ପ୍ରତିଷ୍ଠା (Industrialisation)

୪. ରାସ୍ତାଘାଟ ଓ ବନ୍ଧବାଡ଼ ନିର୍ମାଣ (Road and Dam Construction)

୫. ପ୍ରାଣୀମାନଙ୍କୁ ଶିକାର (Hunting and Poaching of Animals)

**ବନ୍ୟପ୍ରାଣୀ ସଂରକ୍ଷଣ ଓ ପଦକ୍ଷେପ**

ବନ୍ୟପ୍ରାଣୀ ହିଁ ଆମର ଏକ ମୁଖ୍ୟ ପ୍ରାକୃତିକ ସମ୍ପଦ (Natural Resource) । ସେମାନଙ୍କର ହ୍ରାସ ହିଁ ପ୍ରାକୃତିକ ସମ୍ପଦର କ୍ଷୟ । ବନ୍ୟଜନ୍ତୁଙ୍କର ହ୍ରାସ ପାଇବା ଉପଲବ୍ଧି କଲାପରେ ସରକାର ହିଁ ଏ ଜୀବମାନଙ୍କର ସୁରକ୍ଷା ଓ ଅଭିବୃଦ୍ଧି ତଥା ସଂଖ୍ୟାବୃଦ୍ଧି ଦିଗରେ ଧ୍ୟାନ ଦେବା ଆରମ୍ଭ କରିଛନ୍ତି । ସେଥିପାଇଁ ପ୍ରତ୍ୟେକ ବର୍ଷ ଅକ୍ଟୋବର ମାସର ପ୍ରଥମ ସପ୍ତାହ ଅର୍ଥାତ୍ ଅକ୍ଟୋବର ଦୁଇରୁ ସାତ ପର୍ଯ୍ୟନ୍ତ ଏକ ସପ୍ତାହ ଧରି ବନ୍ୟପ୍ରାଣୀ ସପ୍ତାହ (Wildlife Week) ଓଡ଼ିଶା ସମେତ ସମଗ୍ର ଭାରତବର୍ଷରେ ପାଳନ କରାଯାଏ । ଅହିଂସାର ପୂଜାରୀ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଜନ୍ମ ଦିନ ଅକ୍ଟୋବର ୨ ତାରିଖରୁ ହିଁ ଏ ସପ୍ତାହ ପାଳନର ଶୁଭାରମ୍ଭ ହୋଇଥାଏ । ୧୯୫୫ ମସିହାରୁ ଏ ସପ୍ତାହ ପ୍ରତ୍ୟେକ ବର୍ଷ ସାରା ଦେଶରେ ପାଳିତ ହୋଇ ଆସୁଛି । ବନ୍ୟଜନ୍ତୁ ସଂରକ୍ଷଣ ନିମିତ୍ତ ଭାରତବର୍ଷରେ ତଥା ଓଡ଼ିଶାରେ ବହୁ ଅଭୟାରଣ୍ୟରେ ବ୍ୟବସ୍ଥା କରାଯାଇଛି । କେନ୍ଦ୍ର ସରକାର ଏଥିପାଇଁ ଏକ ସଂଗଠନ (The Indian Board for Wildlife) ପ୍ରତିଷ୍ଠା କରିଛନ୍ତି । ଭାରତର ବିଭିନ୍ନ ରାଜ୍ୟରେ ଅଭୟାରଣ୍ୟ, ଜୀବଉଦ୍ୟାନ, ପାର୍କ ଓ ଚିଡ଼ିଆଖାନା (Zoo) ଆଦି ପ୍ରତିଷ୍ଠା କରି ସେଠାରେ ପ୍ରାଣୀମାନଙ୍କୁ ଭଲଭାବରେ ସୁରକ୍ଷା ଦେବା ସହ ପ୍ରଜନନ ଦିଗରେ ବିହିତ ପଦକ୍ଷେପ ନିଆଯାଉଛି । ବନ୍ୟପ୍ରାଣୀ ସପ୍ତାହ ପାଳନର ମୁଖ୍ୟ ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ହେଉଛି -

୧. ପିଲା ଓ ସାଧାରଣ ଲୋକମାନଙ୍କ ମନରେ ଜୀବମାନଙ୍କ ପ୍ରତି ଶ୍ରଦ୍ଧା ଓ ସ୍ନେହ ମନୋଭାବ ଉଦ୍ରେକ କରିବା,

୨.     ସେମାନଙ୍କୁ ନ ମାରି ବଂଚାଇ ରଖିବା,

୩.     ପ୍ରାଣୀମାନଙ୍କୁ ସୁରକ୍ଷା ଦେବା ସହ ତାଙ୍କ ବଂଶବୃଦ୍ଧିରେ ସହାୟକ ହେବା,

୪.     ଜୀବମାନଙ୍କ ପ୍ରତି ନିଷ୍ଠୁରତା ପ୍ରକାଶ ନ କରିବା,

୫.     ସେମାନଙ୍କୁ ଶିକାର ନ କରି, ସେମାନଙ୍କ ମାଂସ ନଖାଇ ତାଙ୍କ ଶରୀରର ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ ଆଦିକୁ ବ୍ୟବହାର ନ କରିବା,

୬.     ସେମାନେ ରହୁଥିବା ଆବାସସ୍ଥଳୀ ଅର୍ଥାତ୍ ଜଙ୍ଗଲ ଆଦିକୁ ନଷ୍ଟ ନକରି ଜଙ୍ଗଲକୁ ସୁରକ୍ଷା ପ୍ରଦାନ କରିବା,

୭.     ସେମାନଙ୍କ ସଂରକ୍ଷଣ ଦିଗରେ ସଚେତନ ହୋଇ ଅନ୍ୟ ସମସ୍ତଙ୍କୁ ସଚେତନ କରାଇବା ଦିଗରେ ଆଗେଇ ଆସିବା ।

**ଓଡ଼ିଶା ଓ ଓଡ଼ିଶାର ବନ୍ୟପ୍ରାଣୀ**

ଓଡ଼ିଶାରେ ବହୁବିଧ ବନ୍ୟପ୍ରାଣୀ ପୁରି ରହିଛନ୍ତି । ସେମାନେ ମଧ୍ୟ ବେଶ୍ ସୁରକ୍ଷିତ । ସେମାନଙ୍କର ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ସୁରକ୍ଷା ନିମିତ୍ତ ଆମ ରାଜ୍ୟରେ ରହିଛି ଅନେକ ପ୍ରାଣୀ ସଂରକ୍ଷିତ ସ୍ଥାନ । କହିବାକୁ ଗଲେ ରାଜ୍ୟର ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରାଣୀମାନଙ୍କର ସଂରକ୍ଷିତ ସ୍ଥାନ ଯୋଗାଇଛି ସେମାନଙ୍କୁ ସୁରକ୍ଷା । ସେଥିମଧ୍ୟରୁ ମୁଖ୍ୟ କେତେକ ସଂରକ୍ଷିତ ସ୍ଥାନ ହେଉଛି ଭୁବନେଶ୍ୱରର ନନ୍ଦନକାନନ, ଚିଲିକା, ଚନ୍ଦକା ହାତୀ ଅଭୟାରଣ୍ୟ, କୋଣାର୍କ ବାଲୁଖଣ୍ଡ ଅଭୟରାଣ୍ୟ, ହଦଗଡ଼, ଭିତରକନିକା, ଗହୀରମଥା, କେତେକ ସ୍ଥାନର ହରିଣପାର୍କ, ସାତପଡ଼ା ଏବଂ ମୟୂରଭଞ୍ଜର ଶିମିଳିପାଳ ଜୈବମଣ୍ଡଳ (Biosphere Reserve) । ଏସବୁଛଡ଼ା ଜନସାଧାରଣଙ୍କୁ ଅବଗତ ଓ ସଚେତନ କରାଇବା ପାଇଁ ରାଜଧାନୀ ଭୁବନେଶ୍ୱରରେ ପ୍ରତିଷ୍ଠା କରାଯାଇଛି ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର (Regional Science Centre), କ୍ଷେତ୍ରୀୟ ପ୍ରାକୃତିକ ବିଜ୍ଞାନ ସଂଗ୍ରହାଳୟ (Regional Museum of Natural History) ଓ ରାଜ୍ୟ ସଂଗ୍ରହାଳୟ (State Museum) । ଏ ଅନୁଷ୍ଠାନଗୁଡ଼ିକ ପ୍ରାଣୀମାନଙ୍କ ସମ୍ବନ୍ଧରେ ବୁଝାଇବା ସହ, ସେମାନଙ୍କ ସଂରକ୍ଷଣ ଦିଗରେ ନେଉଥିବା ପଦକ୍ଷେପ ବେଶ୍ ପ୍ରଶଂସନୀୟ ।

ପ୍ରାଣୀ ସୁରକ୍ଷା, ସଂରକ୍ଷଣ ଓ ସଂଖ୍ୟା ବୃଦ୍ଧି ନିମିତ୍ତ ଓଡ଼ିଶା ତଥା ଭାରତ ଏବଂ ସମଗ୍ର ବିଶ୍ୱରେ ବିଭିନ୍ନ ଦିବସ ପାଳିତ ହୋଇଥାଏ (ସାରଣୀ-୧) ।

**ସାରଣୀ-୧ : ପ୍ରାଣୀ ସୁରକ୍ଷା ନିମିତ୍ତ ପାଳିତ ଦିବସ**

| କ୍ରମିକ ସଂଖ୍ୟା | ମାସ ଓ ତାରିଖ | ପାଳିତ ଦିବସର ନାମ |
|---|---|---|
| ୧. | ଫେବୃଆରୀ-୨ | ବିଶ୍ୱ ଜଳୀୟ ବା କର୍ଦ୍ଦମାକ୍ତ ଦିବସ (World Wetland Day) |
| ୨. | ମାର୍ଚ୍ଚ-୨୧ | ବିଶ୍ୱ ଜଙ୍ଗଲ ଦିବସ (World Forestry Day) |
| ୩. | ଏପ୍ରିଲ-୨୨ | ବିଶ୍ୱ ଧରିତ୍ରୀ ଦିବସ (World Earth Day) |
| ୪. | ଜୁନ୍-୫ | ବିଶ୍ୱ ପରିବେଶ ଦିବସ (World Environment Day) |
| ୫. | ଜୁନ୍-୮ | ବିଶ୍ୱ ମହାସାଗର ଦିବସ (World Ocean Day) |
| ୬. | ସେପ୍ଟେମ୍ବର-୨ | ବିଶ୍ୱ ନାରିକେଳ ଦିବସ (World Coconut Day) |
| ୭. | ଅକ୍ଟୋବର-୨-୭ | ବନ୍ୟପ୍ରାଣୀ ସପ୍ତାହ (Wildlife Week) |
| ୮. | ଅକ୍ଟୋବର ପ୍ରଥମ ସୋମବାର | ବିଶ୍ୱ ବସତି ଦିବସ (World Habitat Day) |
| ୯. | ଅକ୍ଟୋବର-୬-୭ | ବିଶ୍ୱ ବିହଙ୍ଗ ପର୍ଯ୍ୟବେକ୍ଷଣ ଦିବସ (World Bird Watchers Day) |
| ୧୦. | ନଭେମ୍ବର-୨୧ | ବିଶ୍ୱ ମତ୍ସ୍ୟ ସଂପଦ ଦିବସ (World Fisheries Day) |
| ୧୧. | ନଭେମ୍ବର-୨୪ | ବିଶ୍ୱ ଜୈବବିବିଧତା ସଂରକ୍ଷଣ ଦିବସ (World Biodiversity Conservation Day) |
| ୧୨. | ଡିସେମ୍ବର-୩ | ବିଶ୍ୱ ସଂରକ୍ଷଣ ଦିବସ (World Conservation Day) |

ପ୍ରାଣୀ ସୁରକ୍ଷାର ମୁଖ୍ୟ ଜିନିଷ ହେଉଛି ଜଙ୍ଗଲ (Forest ଅର୍ଥାତ୍ F-Food, O-Oxygen, R-Rain, E-Environment, S-Soil ଓ T-Timber or Tree) ସୁରକ୍ଷା । ଜଙ୍ଗଲ ଭଲ ରହିଲେ ପ୍ରାଣୀ ସୁରକ୍ଷା ନିଶ୍ଚିତ ।

**ବନ୍ୟପ୍ରାଣୀ ଓ ଭବିଷ୍ୟତ**

'ଜୀବେ ଦୟା' ଆମ ସଂସ୍କୃତିର ଏକ ଚିରନ୍ତନ ମୂଲ୍ୟବୋଧ । ବଣ ଜଙ୍ଗଲ ଓ ବିଭିନ୍ନ ପ୍ରାକୃତିକ ପରିବେଶରେ ରହୁଥିବା ପ୍ରାଣୀ ଓ ଉଦ୍ଭିଦମାନଙ୍କ ସୁରକ୍ଷା ବନ୍ୟଜୀବ ସପ୍ତାହ ପାଳନର ଉଦ୍ଦେଶ୍ୟ । ବନ୍ୟଜୀବଙ୍କର ସୁରକ୍ଷା ହିଁ ସେମାନଙ୍କ ଆବାସସ୍ଥଳୀର ସଂରକ୍ଷଣ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଲକ୍ଷ ଲକ୍ଷ ବର୍ଷର ବିବର୍ତ୍ତନ ଫଳରେ ଜୀବଜଗତ ବିକଶିତ ହୋଇଛି ଓ ସୃଷ୍ଟି ହୋଇଛି ଏଥିରେ ଜୀବ ବିବିଧତା (Biodiversity) । ମଣିଷର ସ୍ଥିତି ଓ ସମୃଦ୍ଧି ପାଇଁ ପ୍ରାକୃତିକ ପରିବେଶ, ବିଭିନ୍ନ ପ୍ରାକୃତିକ ପ୍ରକ୍ରିୟା ତଥା ଜୀବଜଗତର ବ୍ୟାପ୍ତି ଓ ବିବିଧତା ବଜାୟ ରହିବା ବାଞ୍ଛନୀୟ । ଆମ ସମ୍ବିଧାନରେ ବନ୍ୟଜୀବଙ୍କ ସୁରକ୍ଷାର ଦାୟିତ୍ୱ ରାଜ୍ୟ ସରକାରଙ୍କ ଉପରେ ନ୍ୟସ୍ତ କରାଯାଇଛି । ସେଥିପାଇଁ ରାଜ୍ୟରେ ୧୯୭୪ ମସିହାରୁ ବନ୍ୟଜୀବ ଆଇନ୍ (Wildlife Protection Act)କୁ କାର୍ଯ୍ୟକାରୀ କରାଯାଇଛି । ବନ୍ୟଜୀବ ସେମାନଙ୍କ ଆବାସସ୍ଥଳୀ ଓ ପ୍ରାକୃତିକ ଜୈବ ବିବିଧତାର ସଂରକ୍ଷଣ ପାଇଁ ଆମର ଚିନ୍ତା, ଚେତନା ଓ କାର୍ଯ୍ୟଧାରାରେ ଯେଉଁସବୁ ପରିବର୍ତ୍ତନର ଆବଶ୍ୟକତା ଅଛି, ତାହା ଉପରେ ଆମେ ସମସ୍ତେ

ସମ୍ୟକ ଆଲୋକପାତ କଲେ ଏ ଜୀବଜୀବନ ସୁରକ୍ଷିତ ହେବା ସହ ଉଦ୍ଦେଶ୍ୟ ସାଧିତ ହେବ ।

ଆମେ ସମସ୍ତେ ବେଳହୁଁ ସାବଧାନ ହେବା ପରି ଉଚିତ୍ ପଥ ଓ ସଠିକ୍ ନିୟମ ପାଳନ ନକଲେ ଅନେକ ପ୍ରାଣୀ ନିଶ୍ଚିନ୍ନ ହେବା ପରି ଆମ ପ୍ରାକୃତିକ ପରିବେଶରୁ ଦିନକୁ ଦିନ ବନ୍ୟଜୀବନ କ୍ଷୟ ହୋଇ ହୋଇ ଶେଷରେ ସମସ୍ତେ ଲୋପ ପାଇଯିବେ । ମଣିଷ ଭୁଲିଯାଉଛି ଯେ ସେ ଅନ୍ୟମାନଙ୍କୁ ଲୋପ କରିଦେଲେ ସେ ନିଶ୍ଚୟ ଲୋପ ପାଇଯିବ ବୋଲି । ତେଣୁ ଆମେ ସମସ୍ତେ ଏକାଠି ହୋଇ ବନ୍ୟଜୀବନ, ବନ୍ୟପ୍ରାଣୀ ଓ ବନ୍ୟ ଉଭିଦଗୁଡ଼ିକୁ ଆମର ପ୍ରାକୃତିକ ସମ୍ପଦ ଭାବରେ ଚିନ୍ତାକରି ସୁରକ୍ଷା ପ୍ରଦାନ କରିବା ସହ ଏମାନଙ୍କର ସଂରକ୍ଷଣ ଓ ଅଭିବୃଦ୍ଧି ଦିଗରେ ଚେଷ୍ଟିତ ହେବା, ତା' ଫଳରେ ଭଲରେ ଆମ ଚାରିପଟେ ଆମ ପ୍ରାଣୀମାନେ ବଂଚି ରହିବା ସହ ଆମେ ମଧ୍ୟ ଭଲରେ ରହିବାନି କାହିଁକି ?

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାର
ଭୁବନେଶ୍ୱର - ୭୫୧୦୦୪



# ଦଳଗତ ପ୍ରଚେଷ୍ଟାର ଫଳ ମିଳିଲା : ମାଛ ଚାଷରୁ ଗାଈ ପାଳନ (ସଫଳ କାହାଣୀ)

ନୂଆପଡ଼ା ଜିଲ୍ଲା କୋମନା ବ୍ଲକ୍ ଶିଶୁ ବିକାଶ ପ୍ରକଳ୍ପ ଅନ୍ତର୍ଗତ କୁରୁମପୁରୀ ଏକ ଗ୍ରାମ । ଏହି ଗ୍ରାମରେ ମହିଳା ଓ ଶିଶୁମାନଙ୍କର କଲ୍ୟାଣ ପାଇଁ ଅଙ୍ଗନୱାଡ଼ି କେନ୍ଦ୍ର କାର୍ଯ୍ୟ କରୁଅଛି । ସରକାରଙ୍କ ମିଶନ ଶକ୍ତି ଯୋଜନା କାର୍ଯ୍ୟକ୍ରମରେ ଗ୍ରାମୀଣ ମହିଳାମାନଙ୍କର ସାମାଜିକ ଓ ଅର୍ଥନୈତିକ ଉନ୍ନତି ପ୍ରତି ଧ୍ୟାନ ଦେଇ ସଂପୃକ୍ତ ଅଙ୍ଗନୱାଡ଼ି କେନ୍ଦ୍ରର କର୍ମୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଗ୍ରାମର ୧୫ ଜଣ ମହିଳାଙ୍କୁ ନେଇ ଗତ ୨୦୦୨ ମସିହା ସେପ୍ଟେମ୍ବର ମାସରେ ମା' ସରସ୍ୱତୀ ସ୍ୱୟଂ ସହାୟକ ଦଳ ଗଠନ କରାଗଲା ଏବଂ ଦଳର କାର୍ଯ୍ୟକ୍ରମ ଉପରେ ମହିଳାମାନଙ୍କୁ ଆଲୋଚନାଚକ୍ର ମାଧ୍ୟମରେ ବିଶଦ ଭାବେ ଅଙ୍ଗନୱାଡ଼ି କର୍ମୀ ଓ ସି.ଡି.ପି.ଓ.ଙ୍କ ଦ୍ୱାରା ବୁଝାଇ ଦିଆଗଲା । ଏହି କାର୍ଯ୍ୟକ୍ରମରେ ମହିଳାମାନେ ଅନୁପ୍ରାଣୀତ ହୋଇ ପ୍ରାରମ୍ଭରେ ୧୫ ଟଙ୍କା ଲେଖାଏଁ ମାସିକ ସଭ୍ୟ ଚାନ୍ଦା ଆକାରରେ ସଂଗ୍ରହ କରି ନିଜ ଗ୍ରାମ ନିକଟସ୍ଥ କଳାହାଣ୍ଡି ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କ ଲଖନା ଶାଖାରେ ଏକ ଜମାଖାତା ଖୋଲି ନିୟମିତ ପ୍ରତିମାସରେ ଟଙ୍କା ସଞ୍ଚୟ କଲେ ଓ କ୍ରମେ ଅଧିକ ସଞ୍ଚୟ ବୃଦ୍ଧି ଲକ୍ଷ୍ୟ ନେଇ ସଭ୍ୟଚାନ୍ଦା ବୃଦ୍ଧି କଲେ । ସଞ୍ଚୟ ଟଙ୍କା ନିଜ ନିଜ ମଧ୍ୟରେ ବ୍ୟାଙ୍କ ଜରିଆରେ ଆଦାନ ପ୍ରଦାନ କରି ବିଭିନ୍ନ ଆୟକାରୀ ଧନ୍ଦାରେ ବିନିଯୋଗ କରି ଅଧିକ ସଞ୍ଚୟ କଲେ । ଦଳର ଏପରି କାର୍ଯ୍ୟ ଦକ୍ଷତାକୁ ଲକ୍ଷ୍ୟକରି ପରବର୍ତ୍ତୀ ପର୍ଯ୍ୟାୟକୁ ଉନ୍ନତି କରାଗଲା ଏବଂ ଟ.୨୫,୦୦୦/- ଋଣ ଆକାରରେ ବ୍ୟାଙ୍କରୁ ସହାୟତା ପ୍ରଦାନ କରାଗଲା । ଏହି ଋଣ ସହାୟତା ଏବଂ ନିଜସ୍ୱ ସଞ୍ଚୟ ଟ.୧୧,୦୦୦/- ମିଶାଇ ଗତ ୨୦୦୩ ମସିହା ଏପ୍ରିଲ୍ ମାସରେ ସେମାନେ ନିଜ ଗ୍ରାମରେ ଥିବା ବଡ଼ପୋଖରୀକୁ ସମୂହ ଭାବେ ମାଛ ଚାଷ କରିବା ପାଇଁ ଗୋଟିଏ ବର୍ଷ ନିଲାମରେ ନେଲେ । ପ୍ରଥମ ବର୍ଷରେ ୭ ହଜାର ମାଛ ଜାଆଁଳା ଛାଡ଼ି ଏହାର ଉଚିତ ରକ୍ଷଣାବେକ୍ଷଣ କରି ପରବର୍ତ୍ତୀ ବର୍ଷ ୨୦୦୪ ମସିହାରେ ମାଛ ବିକ୍ରି କରି ସମସ୍ତ ଖର୍ଚ୍ଚ ଯାଇ ମୋଟ ୪୪,୦୦୦ ଟଙ୍କା ଲାଭ ପାଇ ପାରିଲେ ଏବଂ ବ୍ୟାଙ୍କରୁ ଆଣିଥିବା ଋଣ ପରିଶୋଧ କଲେ । ଯାହାଫଳରେ ଏହି ଦଳ ବ୍ୟାଙ୍କ ତଥା ସରକାରୀ ଅଧିକାରୀଙ୍କ ଅଧିକ ବିଶ୍ୱାସଭାଜନ ହୋଇପାରିଲେ ।

ପୁନଶ୍ଚ ପରବର୍ତ୍ତୀ ପର୍ଯ୍ୟାୟରେ ଏହି ଦଳକୁ ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ ସ୍ୱରୋଜଗାର ଯୋଜନାର ଅନ୍ତର୍ଭୁକ୍ତ କରି ୩,୬୧,୦୦୦ ଟଙ୍କା ଗାଈ ପାଳନ ଏବଂ ମାଛ ଚାଷ ପାଇଁ ଋଣ ସହାୟତା ଯୋଗାଇ ଦିଆଗଲା । ଏହି ଆର୍ଥିକ ଋଣ ସହାୟତାରେ ସେମାନେ ସମୂହ ଭାବେ ୧୫ ଗୋଟି ଦୁଧିଆଳି ଗାଈ କିଣିଲେ । ଗାଈର ଉପଯୁକ୍ତ ରକ୍ଷଣାବେକ୍ଷଣ, ସେବା ଓ ଯତ୍ନ କରି ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ହାରାହାରି ୧୧୦ ଲିଟର ପର୍ଯ୍ୟନ୍ତ କ୍ଷୀର ନୂଆପଡ଼ା ଦୁଗ୍ଧ ସମବାୟ କେନ୍ଦ୍ରରେ ଲିଟର ପିଛା ୧୦ ଟଙ୍କା ଦରରେ ବିକ୍ରୟ କରି ଦୈନିକ ୧୧୦୦ ଟଙ୍କା ପର୍ଯ୍ୟନ୍ତ ଆୟ କରିପାରୁଛନ୍ତି । ଗାଈମାନଙ୍କର ଖାଦ୍ୟପେୟ ଓ ସେବା ଯତ୍ନ ଖର୍ଚ୍ଚ, ୨ ଜଣ ଜଗୁଆଳିଙ୍କର ମଜୁରୀ ଖର୍ଚ୍ଚ ଏବଂ ଋଣ କିସ୍ତି ଆଦି ସମସ୍ତ ଖର୍ଚ୍ଚ ବାଦ ପ୍ରତିମାସରେ ହାରାହାରି ୧୫,୦୦୦ ଟଙ୍କା ଲାଭ କରିପାରୁଛନ୍ତି । ସେହିପରି ଗ୍ରାମପୋଖରୀକୁ ଆଗାମୀ ୫ ବର୍ଷ ପାଇଁ ଲିଜ୍‌ରେ ନେଇ ମାଛ ଚାଷ କରୁଛନ୍ତି । ଏଥିସହିତ ଏହି ଦଳର ସଦସ୍ୟାମାନେ ନିଜେ ନିଜେ ବିଭିନ୍ନ ଆୟକାରୀ ଚାଷ ଯଥା- ପନିପରିବା, ପିଆଜ, ରସୁଣ ଆଦି ଚାଷ କରି ନିକଟସ୍ଥ ସାପ୍ତାହିକ ହାଟରେ ବିକ୍ରୟ କରି ବେଶ୍ ଦୁଇ ପଇସା ରୋଜଗାର କରିପାରୁଛନ୍ତି । ଏହିପରି ଭାବରେ ବର୍ତ୍ତମାନ ଉକ୍ତ ଦଳର ସଦସ୍ୟାମାନେ ନିଜ ପରିବାରର ମାସିକ ୧୫୦୦/- ଟଙ୍କା ପର୍ଯ୍ୟନ୍ତ ଆୟକରି ଜୀବିକା ନିର୍ବାହର ମାନଦଣ୍ଡ ଗତ ଦୁଇ ବର୍ଷ ହେଲା ବୃଦ୍ଧି କରିପାରିଛନ୍ତି । ଏଥିପୂର୍ବରୁ ସେମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା । ସଦସ୍ୟାମାନେ ସ୍ୱୟଂ ସହାୟକ ଗୋଷ୍ଠୀ ଯୋଜନା କାର୍ଯ୍ୟକ୍ରମରେ ସାମିଲ ହୋଇ ମିଳିତ ପ୍ରଚେଷ୍ଟା ଦ୍ୱାରା କିପରି ନିଜ ପରିବାର ଓ ଗ୍ରାମର ଉନ୍ନତି ସାଧିତ ହୋଇଥାଏ ସେ ସଂପର୍କରେ ବେଶ ଅବଗତ ହୋଇପାରିଛନ୍ତି । ବର୍ତ୍ତମାନ ଉକ୍ତ ଦଳ ମିଶନ ଶକ୍ତି କାର୍ଯ୍ୟକ୍ରମ ଯୋଜନା ଜରିଆରେ ସରକାରଙ୍କ ବିଭିନ୍ନ ଉନ୍ନୟନମୂଳକ ପ୍ରକଳ୍ପରେ ସକ୍ରିୟ ଭାବେ ସାମିଲ ହୋଇ ନିଜ ପରିବାର ତଥା ଗ୍ରାମର ସାମୂହିକ ବିକାଶ ଦିଗରେ ମହିଳାମାନେ ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବେଶ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେଇପାରିଛନ୍ତି । ନିଜ ପିଲାମାନଙ୍କୁ ନିୟମିତ ବିଦ୍ୟାଳୟକୁ ପାଠ ପଢ଼ାଇବା ପାଇଁ ପଠାଉଛନ୍ତି । ମା' ସରସ୍ୱତୀ ସ୍ୱୟଂସହାୟକ ଦଳର କାର୍ଯ୍ୟକ୍ରମ ପ୍ରତି ଆକୃଷ୍ଟ ହୋଇ ଗ୍ରାମର ଅନ୍ୟାନ୍ୟ ମହିଳାମାନେ ମିଳିତ ହୋଇ ସ୍ୱୟଂ ସହାୟକ ଦଳ ଗଠନ କରି ଆତ୍ମନିର୍ଭରଶୀଳ ହୋଇ ଅଧିକରୁ ଅଧିକ ସ୍ୱ-ଉପାର୍ଜନ କ୍ଷମ ହେବା ଦିଗରେ ଲାଗିପଡ଼ିଛନ୍ତି ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ନୂଆପଡ଼ା



# ଜଙ୍ଗଲ ବା ପ୍ରକୃତିର ଆର୍ଥିକ ମୂଲ୍ୟାୟନ

ଡକ୍ଟର ଶୁଭ୍ରାଂଶୁବାଳା ମହାନ୍ତି

**ଜଙ୍ଗଲ ଓ ପ୍ରକୃତି** (Forest and Nature)

ବର୍ତ୍ତମାନ ଜଙ୍ଗଲ ଆର୍ଦ୍ରଭୂମି (Wetland) ଓ ପରିବେଶର ଜୈବ ବିବିଧତା (Biodiversity) ଦ୍ରୁତଗତିରେ ହ୍ରାସ ପାଇବାରେ ଲାଗିଛି । ଏହାର ମୁଖ୍ୟକାରଣ ହେଲା ଜଙ୍ଗଲ ତଥା ପରିବେଶରୁ ସୃଷ୍ଟ ଦ୍ରବ୍ୟ ଓ ସେବାର ସଠିକ୍ ମୂଲ୍ୟାଳୟର ଅଭାବ ଏବଂ ସେଗୁଡ଼ିକୁ ସୁରକ୍ଷା ଦେବାରେ ବିଫଳତା । ତେଣୁ ପରିବେଶର ବିବିଧ ଉପାଦେୟତା ଓ ପରିବ୍ୟୟକୁ ସଠିକ୍ ମୂଲ୍ୟାୟନ କରିବା ଆଜି ଜରୁରୀ ହୋଇପଡ଼ିଛି ।

**ପରିବେଶୀୟ ମୂଲ୍ୟାୟନ ଓ ଏହାର ଆବଶ୍ୟକତା।** (Environmental Evaluation and Its Necessity)

ପରିବେଶର ଉପକାର ଓ ଅପକାରର ତୁଳନାତ୍ମକ ଛବିକୁ ବିଶ୍ଳେଷଣ କରି ସିଦ୍ଧାନ୍ତ ନେବାପାଇଁ ପରିବେଶର ଆର୍ଥିକ ମୂଲ୍ୟାୟନ ହେଉଛି ଏକମାତ୍ର ମାପକ । ଅନ୍ୟପକ୍ଷରେ କହିବାକୁ ଗଲେ ଆର୍ଥିକ ମୂଲ୍ୟାୟନ ଏକ ପଦ୍ଧତି ଯାହାଦ୍ୱାରା ସିଦ୍ଧାନ୍ତକାରୀମାନେ ତର୍ଜମା କରି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିବାପାଇଁ ସୁବିଧା ହୋଇଥାଏ, କାରଣ ପରିବେଶରୁ ସୃଷ୍ଟ କିଛି ଦ୍ରବ୍ୟ ଓ ସେବାକୁ ବିକ୍ରୟ କରାଯାଏ ଓ ତାହାର ମୂଲ୍ୟ ଆକଳନ କରିବା ସହଜ ହୁଏ । ହେଲେ କେତେକ ଦ୍ରବ୍ୟ ବା ସେବା ପ୍ରତ୍ୟକ୍ଷ ଭାବରେ ବିକ୍ରି ନହୋଇ ପରୋକ୍ଷ ଭାବରେ ମାନବ ସମାଜ ପାଇଁ ଉପକାର ସୃଷ୍ଟି କରିଥାଏ ଯାହାକୁ ପ୍ରତ୍ୟକ୍ଷ ଭାବରେ ମୂଲ୍ୟାୟନ କରିବା କଷ୍ଟ ହୋଇଥାଏ । ତେଣୁ ସେସବୁ ଦ୍ରବ୍ୟର ପରୋକ୍ଷ ମୂଲ୍ୟାୟନ ବିଧେୟ ।

ପରିବେଶର ଆର୍ଥିକ ମୂଲ୍ୟାୟନର ଅନେକ ଆବଶ୍ୟକତା ରହିଛି । କାରଣ ଜ୍ଞାନ ଓ ସଚେତନତା ଅଭାବରୁ ପ୍ରାକୃତିକ ସମ୍ପଦର ପରିବେଶ ଓ ସମାଜ ଉପରେ ସୁପ୍ରଭାବ ନଜାଣିପାରି ମନୁଷ୍ୟ ଜଙ୍ଗଲ ବା ପ୍ରକୃତିକୁ ନଷ୍ଟକରି ସହର ବା ଶିଳ୍ପାନୁଷ୍ଠାନରେ ପରିଣତ କରୁଛି । ତେଣୁ ଜଙ୍ଗଲ ବା ପ୍ରକୃତିର ଆର୍ଥିକ ଓ ସାମାଜିକ ମୂଲ୍ୟକୁ ଜାଣିବା ଦରକାର । ଏହାଦ୍ୱାରା ସାମାଜିକ ସଚେତନତା ସୃଷ୍ଟି ହେବା ସଙ୍ଗେସଙ୍ଗେ ପରିବେଶୀୟ ନୀତି ନିର୍ଦ୍ଧାରଣ ସମୟରେ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ସୁବିଧା ହେବ । ଅଧିକନ୍ତୁ କହିବାକୁ ଗଲେ ଜଙ୍ଗଲ ବା ପ୍ରକୃତିକୁ ଉପଭୋଗ କରୁଥିବା ହୋଟେଲ ମାଲିକ ଓ ପର୍ଯ୍ୟଟକମାନେ ଏହାର ସୁରକ୍ଷା ଓ ପରିଚାଳନା ବ୍ୟୟ ବହନ କରନ୍ତି ନାହିଁ । ଏହାର ଅର୍ଥ ହେଲା ଉପଭୋଗ କରୁଥିବା ଉପଭୋକ୍ତା ବା ବ୍ୟକ୍ତି ଓ ବ୍ୟୟବହନ କରୁଥିବା ବ୍ୟକ୍ତି ସମାନ ନୁହନ୍ତି । ତେଣୁ ପ୍ରକୃତିଦତ୍ତ ଦ୍ରବ୍ୟର ସଠିକ୍ ମୂଲ୍ୟାୟନ କରି ଉପଭୋଗ କରୁଥିବା ଉପଭୋକ୍ତାଠାରୁ ଏହାର ମୂଲ୍ୟ ଆଦାୟ କରି ଏହାର ସୁରକ୍ଷା ଓ ପରିଚାଳନା କରିବା ନିହାତି ଜରୁରୀ ଅଟେ ।

ଏତଦ୍‌ବ୍ୟତୀତ ଅବମୂଲ୍ୟାୟନ (Undervaluation) ହିଁ ଜଙ୍ଗଲକ୍ଷୟ (Deforestation)ର ମୁଖ୍ୟକାରଣ । ପୁନଶ୍ଚ ଏହି ଅବମୂଲ୍ୟାୟନ ପାଇଁ ବଜାରର ବିଫଳତା (Market failure) ଓ ନୀତି ନିୟମର ବିଫଳତା (Policy failure) ସଂପୂର୍ଣ୍ଣ ଭାବରେ ଦାୟୀ । କାରଣ ଜଙ୍ଗଲକୁ ମୂଲ୍ୟାୟନ କଲାବେଳେ ସାଧାରଣତଃ ବଜାରରେ ବିକ୍ରି କରି ହେଉଥିବା (Marketable) ଦ୍ରବ୍ୟ ତଥା କାଠ, ବାଉଁଶ, ମହୁ, ଲାଖ ଇତ୍ୟାଦି ଜଙ୍ଗଲଜାତ ଦ୍ରବ୍ୟ (Forest Products)କୁ ହିସାବରେ ନିଆଯାଏ ଯାହାର ବାସ୍ତବ ମୂଲ୍ୟ ମୌଦ୍ରିକ ମୂଲ୍ୟଠାରୁ ଅଧିକ । କିନ୍ତୁ ବଜାରରେ ବିକ୍ରି ନହେଉଥିବା (Non-marketable) ଦ୍ରବ୍ୟର ମୂଲ୍ୟ କଳନା କରାଯାଏ ନାହିଁ । ଏହାକୁ ବଜାରର ବିଫଳତା କୁହାଯାଏ । ସେହିପରି ସରକାରୀ ଉଦାସୀନତାରୁ ଅନେକ ଜିନିଷର ହିସାବ ହୋଇପାରେ ନାହିଁ । ସରକାରୀ କଳର ପ୍ରଭାବ ଓ ଅପବ୍ୟବହାର, ରାଜନୈତିକ ଚାପ, ଦୁର୍ନୀତି ଓ ଯୋଗସୂତ୍ରର ଅଭାବ ଲାଗି ମଧ୍ୟ ଆର୍ଥିକ ମୂଲ୍ୟାୟନରେ ଅନେକ ତ୍ରୁଟି ପରିଲକ୍ଷିତ ହୁଏ । ଏହାକୁ ସଂକ୍ଷେପରେ ସରକାରୀ ବିଫଳତା ବା ନୀତିନିୟମର ବିଫଳତା କୁହାଯାଏ ।

**ଜଙ୍ଗଲ ଓ ପ୍ରକୃତିର ମୂଲ୍ୟାୟନ ପଦ୍ଧତି** (System of Evaluation of Forest and Nature)

ଜଙ୍ଗଲର ଆର୍ଥିକ ମୂଲ୍ୟାୟନ କରିବାକୁ ହେଲେ ମାନବ ସମାଜ ପାଇଁ ଏହାର ଗୁରୁତ୍ୱ ତଥା କାର୍ଯ୍ୟାବଳୀର ମୂଲ୍ୟାୟନ ପ୍ରଥମେ ଆବଶ୍ୟକ । ପରିବେଶବିତ୍ ଡି ଗ୍ରୁଟ୍ (De Groot)ଙ୍କ ମତରେ ଜଙ୍ଗଲ ବା ପ୍ରକୃତିର ମାନବସମାଜ ପାଇଁ ମୁଖ୍ୟତଃ ଚାରିଗୋଟି ଅବଦାନ ରହିଛି । ସେଗୁଡ଼ିକ ହେଲା ଉତ୍ପାଦନ କାର୍ଯ୍ୟ (Production Functions), ନିୟନ୍ତ୍ରଣ କାର୍ଯ୍ୟ (Regulation

Functions), ବସତି କାର୍ଯ୍ୟ (Habitat Functions) ଓ ତଥ୍ୟଭିତ୍ତିକ କାର୍ଯ୍ୟ (Information Functions) । ଏହି କାର୍ଯ୍ୟାବଳୀ ଅନୁଯାୟୀ ମୂଲ୍ୟାଙ୍କନ କଲେ ଆମେ ଜଙ୍ଗଲର ଆର୍ଥିକ ମୂଲ୍ୟ ପାଇପାରିବା । ହେଲେ ଏହି କାର୍ଯ୍ୟାବଳୀର ମୂଲ୍ୟ ସ୍ୱଳ୍ପତା (Scarcity), ବିକ୍ରୟ (Marketability), ପ୍ରତିବଦଳ (Substitutability) ଓ ପରିପୋଷଣକାରୀତା (Sustainability) ଉପରେ ନିର୍ଭର କରେ (ସାରଣୀ-୧) ।

ଜଙ୍ଗଲରୁ ଆମେ ସାଧାରଣତଃ ଖାଦ୍ୟ ଓ ପୁଷ୍ଟି, ଜଳ, ଅମ୍ଳଜାନ, ଜିନୀୟ ସମ୍ବଳ, ଜାଳେଣି, ପଶୁଖାଦ୍ୟ, ଜୈବସାର, ଜୈବ ରସାୟନ ଓ ଭେଷଜ ସମ୍ବଳ ଇତ୍ୟାଦି ପାଇଥାଉ । ଏହାକୁ ସଂକ୍ଷେପରେ ଜଙ୍ଗଲର ଉତ୍ପାଦନଭିତ୍ତିକ କାର୍ଯ୍ୟ କୁହାଯାଏ । ସେହିପରି ଜଙ୍ଗଲ ହିଁ ପରିବେଶରେ ଅନେକ ଜିନିଷ ନିୟନ୍ତ୍ରଣ କରିବାରେ ସାହାଯ୍ୟ କରେ । ସେଗୁଡ଼ିକ ହେଲା ଅଙ୍ଗାରକାମ୍ଳ, ସୌରଶକ୍ତି, ଜଳଛାୟା, ମୃତ୍ତିକାକ୍ଷୟ ଓ ଜୈବବିବିଧତା ଇତ୍ୟାଦି । ଏହାକୁ ଜଙ୍ଗଲର ନିୟନ୍ତ୍ରଣାତ୍ମକ କାର୍ଯ୍ୟ କୁହାଯାଏ । ବସତି କାର୍ଯ୍ୟ କହିଲେ ଜଙ୍ଗଲ ଅନେକ ଲୋକଙ୍କ ପାଇଁ ଚାଷବାସ କରିବାରେ ଓ ପର୍ଯ୍ୟଟକଙ୍କ ପାଇଁ ମନୋରଞ୍ଜନ କରିବାରେ ସାହାଯ୍ୟ କରିଥାଏ । ଏତଦ୍‌ବ୍ୟତୀତ ଜଙ୍ଗଲ ଆମ ପୂର୍ବ ଐତିହ୍ୟ, କଳା, ସ୍ଥାପତ୍ୟ, ଧର୍ମ ଓ ଆଧ୍ୟାତ୍ମିକତା ଉପରେ ତଥ୍ୟ ସଂଗ୍ରହ କରିବାରେ ସାହାଯ୍ୟ କରେ ଓ ଏହାକୁ ଆମେ ତଥ୍ୟଭିତ୍ତିକ କାର୍ଯ୍ୟ ହିସାବରେ ଗ୍ରହଣ କରୁ ।

**ମୂଲ୍ୟାୟନ ଏକକ (Valuation Tool)**

ଅଧୁନା ଜଙ୍ଗଲଜାତ ଦ୍ରବ୍ୟ ଓ ସେବାକୁ ମୂଲ୍ୟାୟନ କରିବା ପାଇଁ ଅନେକ ଏକକ ପ୍ରଚଳନ କରାଯାଉଛି । ପ୍ରସିଦ୍ଧ ପରିବେଶବିତ୍ ମୁନାସିଂଘେ (Munasinghe)ଙ୍କ ମତରେ ମୂଲ୍ୟାୟନ କରିବାକୁ ଯିବା ପୂର୍ବରୁ ଆମକୁ ଜଙ୍ଗଲଜାତ ଦ୍ରବ୍ୟ ଓ ସେବାକୁ ତା'ର ବ୍ୟବହାରିକ ମୂଲ୍ୟ ନେଇ ବର୍ଗୀକରଣ କରାଯିବା ଉଚିତ ଏବଂ ସେହି ବର୍ଗାନୁଯାୟୀ ମୂଲ୍ୟାୟନ ଏକକ (Valuation Tool) ପ୍ରୟୋଗ କରିବା ଉଚିତ (ସାରଣୀ-୨) । ପ୍ରଥମେ ମୋଟ ମୂଲ୍ୟକୁ ବର୍ଗୀକରଣ ଅନୁଯାୟୀ ଏହାକୁ ବ୍ୟବହାରିକ ମୂଲ୍ୟ (Use Values) ଓ ଅଣବ୍ୟବହାରିକ ମୂଲ୍ୟ (Unuse Values) ହିସାବରେ ବିଭାଜନ କରାଯାଇପାରେ । ପୁନଶ୍ଚ ବ୍ୟବହାରିକ ମୂଲ୍ୟ କହିଲେ ଆମେ ପ୍ରତ୍ୟକ୍ଷ ବ୍ୟବହାରିକ ମୂଲ୍ୟ (Direct Use Value) ଓ ପରୋକ୍ଷ ବ୍ୟବହାରିକ ମୂଲ୍ୟ (Indirect Use Value) ବୁଝୁ । ସେହିପରି ଅଣବ୍ୟବହାରିକ ମୂଲ୍ୟ କହିଲେ ଇଚ୍ଛାଧୀନ ମୂଲ୍ୟ (Optional Value), ଇଚ୍ଛାକୃତ ମୂଲ୍ୟ (Bequest) ଓ ସ୍ଥିତିଗତ ମୂଲ୍ୟ (Existence Value)କୁ ବୁଝାଇଥାଏ ଏବଂ ପ୍ରତ୍ୟେକ ମୂଲ୍ୟ ନିର୍ଦ୍ଧାରଣ ପାଇଁ ବିଭିନ୍ନ ପଦ୍ଧତି ଅବଲମ୍ବନ କରାଯାଏ (ସାରଣୀ-୨) ।

ପ୍ରତ୍ୟକ୍ଷ ଭାବରେ ବ୍ୟବହାରିକ କରାଯାଉଥିବା ଦ୍ରବ୍ୟ ଓ ସେବାକୁ ଆମେ ବଜାରଦର (Market Price) ଅନୁଯାୟୀ ବା ତାର ପ୍ରତିବଦଳ ଜିନିଷର ମୂଲ୍ୟ ଅନୁଯାୟୀ (Related goods approach) ବା ଏଥିପାଇଁ ହୋଇଥିବା ଗମନାଗମନ ଖର୍ଚ୍ଚକୁ ନେଇ ହିସାବ କରିପାରିବା । ସେହିପରି ପରୋକ୍ଷ ଭାବରେ ବ୍ୟବହୃତ ଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରଣ କରିବାକୁ ହେଲେ ପ୍ରତିରୋଧୀ ଖର୍ଚ୍ଚ (Preventive expenditure or Replacement Cost)କୁ ନେଇ ହିସାବ କରିପାରିବା । ସେହିପରି ଆମର ଭବିଷ୍ୟତ ସେବା ଓ ଭବିଷ୍ୟତ ବଂଶଧରଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ସେବା ନିମନ୍ତେ ସମ୍ଭାବ୍ୟ ମୂଲ୍ୟାୟନ ପଦ୍ଧତି (Contigent Valuation Method) ଅନୁଯାୟୀ ମୂଲ୍ୟାୟନ କରିବା ଉଚିତ ।

**ମୂଲ୍ୟାୟନ ପଦ୍ଧତିର ଜଟିଳତା (Difficulties in Valuation Tools)**

କାର୍ଯ୍ୟାବଳୀ ଅନୁଯାୟୀ ଜଙ୍ଗଲଜାତ ଦ୍ରବ୍ୟ ଓ ସେବାର ମୂଲ୍ୟାୟନ ସହଜ ଲାଗୁଥିଲେ ହେଁ ଏଥିରେ ଅନେକ ଅସୁବିଧା ରହିଛି । ସେଗୁଡ଼ିକ ନିମ୍ନରେ ଦିଆଗଲା ।

୧. କୌଣସି ମୂଲ୍ୟାୟନ ପଦ୍ଧତି ସମସ୍ତ ଦ୍ରବ୍ୟର ଓ ସେବାର ସଠିକ୍ କଳନା କରିପାରେ ନାହିଁ ।

୨. ବିଭିନ୍ନ ମୂଲ୍ୟାୟନ ପଦ୍ଧତିରେ ମୂଲ୍ୟାୟନ କରି ଏହାକୁ ଏକତ୍ର ମୁଦ୍ରାରେ ପ୍ରକାଶ କରିବା ନ୍ୟାୟ ସଙ୍ଗତ ନୁହେଁ । କାରଣ ଜଙ୍ଗଲର କ୍ଷତି ଆଞ୍ଚଳିକ ଲୋକଙ୍କୁ କଷ୍ଟ ଦିଏ । ହେଲେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଏହାର ଲାଭ ହୁଏ । ତେଣୁ ପାଖ ଲୋକଙ୍କୁ କିପରି ଓ କେତେ ପରିମାଣରେ ଭରଣା କରାଯିବ, ତାହା ଏକ ପ୍ରଶ୍ନବାଚୀ ଅଟେ ।

୩. ପରିବେଶୀୟ ଆର୍ଥିକ ଆକଳନ (Environmental Economic Valuation) ପଦ୍ଧତିକୁ ଅନେକ ସମାଲୋଚନା କରିଥାନ୍ତି । କାରଣ ଅନେକ ଦ୍ରବ୍ୟ ଓ ସେବାର ସଠିକ୍ ଦର ନଥିବାରୁ ସ୍ୱାର୍ଥାନ୍ୱେଷୀ ଲୋକଙ୍କର ଇଚ୍ଛା ମୁତାବକ ଏହାର ମୂଲ୍ୟାୟନ କରାଯାଇଥାଏ ।

ମୋଟାମୋଟି ଭାବେ କହିବାକୁ ଗଲେ ପ୍ରକୃତି ସୃଷ୍ଟି ପାଇଁ ଲାଗିଛି ଅନେକ ବର୍ଷ । ଆଉ ଏ ପ୍ରକୃତିରେ ରହିଛି ପାହାଡ଼, ପର୍ବତ, ନଦୀ, ଝରଣା, ବୃକ୍ଷଲତା ଓ ଗୁଳ୍ମ, ହ୍ରଦ, ସାଗର ଓ ଅନେକ କିଛି । ଏଗୁଡ଼ିକ ସୃଷ୍ଟିର ସମ୍ବଳ ଓ ଏହାର ମୂଲ୍ୟ ନିର୍ଦ୍ଧାରଣ ବାସ୍ତବିକ କଷ୍ଟକର ବ୍ୟାପାର । ତଥାପି ଏହାର ମୂଲ୍ୟାୟନ ଜରୁରୀ ଅଟେ । ମୂଲ୍ୟାୟନ ସମୟରେ ପଦ୍ଧତିଗୁଡ଼ିକର ସୀମାବଦ୍ଧତା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବା ଆବଶ୍ୟକ ଏବଂ ଏହାକୁ ସତର୍କତାର ସହିତ ବ୍ୟବହାର କଲେ ଆମେ ଆପାତତଃ ଜଙ୍ଗଲ ଓ ପ୍ରକୃତିର ସ୍ୱଚ୍ଛମୂଲ୍ୟ ପାଇପାରିବା । କାରଣ ଏହାର ମୂଲ୍ୟପ୍ରତି ସଚେତନ ରହିଲେ ଆମେ ଏହାର ଅପବ୍ୟବହାର ଓ ଦୁର୍ବ୍ୟବହାରକୁ ରୋକିପାରିବା । ଯାହାଦ୍ୱାରାକି ଆମର ପରିପୋଷଣକାରୀ ବିକାଶ (Sustainable Development) ସମ୍ଭବ ହୋଇପାରିବ । ଆମେ ଓ ଆମର ଆଗାମୀ ବଂଶଧର ଏ ପୃଥିବୀ ଉପରେ ବଂଚିବା ସମ୍ଭବ ହେବ । ତେଣୁ ଏତିକି ବେଳୁ ସାବଧାନ ହୋଇ ପ୍ରକୃତି ସୁରକ୍ଷା ଦିଗରେ ଚିନ୍ତା କରିବା ବାଞ୍ଛନୀୟ ନୁହେଁ କି ?

**ସାରଣୀ-୧ : ଜଙ୍ଗଲ ଅବଦାନର ବର୍ଗୀକରଣ**

| ଉତ୍ପନ୍ନ କାର୍ଯ୍ୟ (Production Function) | ନିୟନ୍ତ୍ରଣାତ୍ମକ କାର୍ଯ୍ୟ (Regulatory Function) | ବସତି କାର୍ଯ୍ୟ (Habitat Function) | ତଥ୍ୟ ଭିତ୍ତିକ କାର୍ଯ୍ୟ (Information Function) |
|---|---|---|---|
| ଖାଦ୍ୟ ଓ ପୁଷ୍ଟି | ଅଙ୍ଗାରକାମ୍ଳର ନିୟନ୍ତ୍ରଣ | ଜଙ୍ଗଲିଲୋକ, ପଶୁ ଓ ଉଦ୍ଭିଦର ପ୍ରାକୃତିକ ବାସସ୍ଥାନ | କଳା, ସ୍ଥାପତ୍ୟ, ଧର୍ମ, ଆଧ୍ୟାତ୍ମିକତା ଓ ଐତିହ୍ୟ ବିଷୟରେ ତଥ୍ୟ ପ୍ରଦାନ |
| ଅମ୍ଳଜାନ | ସୌରଶକ୍ତି ସଂଗ୍ରହ ଓ ଜୈବପିଣ୍ଡ ଉତ୍ପାଦନ | | |
| ଜଳ | ଜଳଛାୟା ନିୟନ୍ତ୍ରଣ | ପର୍ଯ୍ୟଟକଙ୍କର ଆମୋଦ ପ୍ରମୋଦ | ଶିକ୍ଷା ଓ ବିଜ୍ଞାନଭିତ୍ତିକ ତଥ୍ୟ ପ୍ରଦାନ |
| ଜିନୀୟ ସମ୍ବଳ ଜାଳେଣି ଓ ଶକ୍ତି ଉତ୍ପନ୍ନ ପାଇଁ କଞ୍ଚାମାଲ | ମୃତ୍ତିକାକ୍ଷୟର ନିୟନ୍ତ୍ରଣ | | |
| ପଶୁଖାଦ୍ୟ ଓ ସାର | ଜୈବଦ୍ରବ୍ୟ ସଂରକ୍ଷଣ ଓ ପୁନର୍ବ୍ୟବହାର | ଚାଷ | ଐତିହାସିକ ତଥ୍ୟ ପ୍ରଦାନ |
| ଜୈବ ରସାୟନ | ଜୈବ ବିବିଧତାର ନିୟନ୍ତ୍ରଣ | | |
| ଭେଷଜ ସମ୍ବଳ | ଉର୍ବରତା ସଂରକ୍ଷଣ ଓ ଉପର ମୃତ୍ତିକାର ସୁରକ୍ଷା | | |

**ସାରଣୀ-୨ : ମୂଲ୍ୟର ବର୍ଗୀକରଣ, କାର୍ଯ୍ୟାବଳୀ ଓ ମୂଲ୍ୟାୟନ ପଦ୍ଧତି**

| | ବ୍ୟବହାରିକ ମୂଲ୍ୟ (Use Values) | | ଅଣବ୍ୟବହାରିକ ମୂଲ୍ୟ (Non-use Values) | | |
|---|---|---|---|---|---|
| ବ୍ୟବହାର | ପ୍ରତ୍ୟକ୍ଷ ବ୍ୟବହାରିକ ମୂଲ୍ୟ (Direct Use Values) | ପରୋକ୍ଷ ବ୍ୟବହାରିକ ମୂଲ୍ୟ (Indirect Use Values) | ଇଚ୍ଛାଧୀନ ମୂଲ୍ୟ (Optional Value) | ଇଚ୍ଛାକୃତ ଦ୍ୱାରା ପ୍ରଦତ୍ତ ମୂଲ୍ୟ (Bequest Value) | ସ୍ଥିତିଗତ ମୂଲ୍ୟ (Existence Value) |
| କାର୍ଯ୍ୟାବଳୀ | କାଠଜାତ ଦ୍ରବ୍ୟ ଫଳମୂଳ, ଜିନୀୟ ବସ୍ତୁ ଭେଷଜ ଦ୍ରବ୍ୟ ଜନବସତି ଶିକ୍ଷା ଓ ଆମୋଦ ପ୍ରମୋଦ ପାଇଁ ବ୍ୟବହାର | ଜଳଛାୟା ନିୟନ୍ତ୍ରଣ ବାୟୁ ପ୍ରଦୂଷଣ ନିୟନ୍ତ୍ରଣ ଜଳବାୟୁ ନିୟନ୍ତ୍ରଣ ଅଙ୍ଗାରକାମ୍ଳ ନିୟନ୍ତ୍ରଣ | ବର୍ତ୍ତମାନ ସମାଜର ଭବିଷ୍ୟତରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଦ୍ରବ୍ୟର ଓ ସେବାର ବ୍ୟବହାର | ଭବିଷ୍ୟତ ବଂଶଧରମାନଙ୍କ ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଦ୍ରବ୍ୟ ଓ ସେବାର ସଂରକ୍ଷଣ | ଜୈବ ବିବିଧତା, ଐତିହ୍ୟ, ସଂସ୍କୃତି, କଳା ଓ ଜଙ୍ଗଲ-ଜାତଦ୍ରବ୍ୟ ଓ ସେବା ବିଷୟରେ ଜ୍ଞାନ ପ୍ରଦାନ |
| | **ପଦ୍ଧତି** | **ପଦ୍ଧତି** | **ପଦ୍ଧତି** | **ପଦ୍ଧତି** | **ପଦ୍ଧତି** |
| ମୂଲ୍ୟାୟନ ପଦ୍ଧତି | ବଜାର ଦର ସଂପର୍କିତ ଦ୍ରବ୍ୟର ମୂଲ୍ୟ ଭ୍ରମଣ ଖର୍ଚ୍ଚ (Travelling Cost) | ସଂରକ୍ଷୟ ପରିବ୍ୟୟ (Conservation Expenditure) ପ୍ରତିରୋଧୀ ଖର୍ଚ୍ଚ ପୁନଃସ୍ଥାପନ ଖର୍ଚ୍ଚ Rehabilitation Expenditure) | ସମ୍ଭାବ୍ୟ ମୂଲ୍ୟାୟନ ପଦ୍ଧତି (Contigent Valuation Method) ବା ଦ୍ରବ୍ୟ ଓ ସେବା ପାଇଁ ଇଚ୍ଛାକୃତ ମୂଲ୍ୟର ପ୍ରଦାନ Willingness to pay for goods and service | ସମ୍ଭାବ୍ୟ ମୂଲ୍ୟାୟନ ପଦ୍ଧତି (Contingent Valuation Method) ବା ଦ୍ରବ୍ୟ ଓ ସେବା ପାଇଁ ଇଚ୍ଛାକୃତ ମୂଲ୍ୟର ପ୍ରଦାନ Willingness to pay for goods and service | ସମ୍ଭାବ୍ୟ ମୂଲ୍ୟାୟନ (Contingent Valuation Method) ବା ଦ୍ରବ୍ୟ ଓ ସେବା ପାଇଁ ଇଚ୍ଛାକୃତ ମୂଲ୍ୟର ପ୍ରଦାନ Willingness to pay for goods and services |

ଅଧ୍ୟାପିକା, ଅର୍ଥନୀତି ବିଭାଗ
ପ୍ରାଣନାଥ ମହାବିଦ୍ୟାଳୟ, ଖୋର୍ଦ୍ଧା - ୭୫୨୦୫୫

# ସୂଚନା ଅଧିକାର ଆଇନ : ୨୦୦୫ ଏକ ବିହଙ୍ଗାବଲୋକନ

ଅମିତା ପାତ୍ର

ଭାରତୀୟ ସମ୍ବିଧାନ ପୃଥିବୀର ସର୍ବବୃହତ୍ତମ ସମ୍ବିଧାନ, ଯେଉଁଥିରେ କି ୩୯୫ଟି ଅନୁଚ୍ଛେଦ ଓ ୧୦ଟି ଅନୁସୂଚୀ ରହିଛି । ଏହାର ତୃତୀୟ ଭାଗରେ ଧାରା ୧୨ରୁ ୩୫ ମଧ୍ୟରେ ପ୍ରତ୍ୟେକ ନାଗରିକଙ୍କୁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ପ୍ରଦତ୍ତ ଛଅ ଗୋଟି ମୌଳିକ ଅଧିକାର ସଂପର୍କରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ନାଗରିକ ଅଧିକାର ଗଣତନ୍ତ୍ରର ମୂଳଭିତ୍ତି । ଏହି ଅଧିକାର ଫଳରେ ବ୍ୟକ୍ତି ବିଶେଷଙ୍କୁ ଯେଉଁ ସ୍ୱାଧୀନତା ମିଳେ, ସେଥିରେ ସେ ସର୍ବବିଧ ଉନ୍ନତି ପାଇଁ ଚେଷ୍ଟା କରେ । ମୌଳିକ ଅଧିକାର ଯେତେ ସୁରକ୍ଷିତ ହେଲେ ମଧ୍ୟ ନିରଙ୍କୁଶ ନୁହେଁ । ଧାରା ୧୯ରେ ଥିବା 'ସ୍ୱାଧୀନତାର ଅଧିକାର'ରେ ମଧ୍ୟ କେତେକ ଯୁକ୍ତିସଙ୍ଗତ ପ୍ରତିବନ୍ଧକ ଆରୋପ କରାଯାଇଛି, ଯାହାଫଳରେ କି ସ୍ୱାଧୀନତାର ଦ୍ୱାହି ଦେଇ କୌଣସି ନାଗରିକ ଦେଶର ସାର୍ବଭୌମତ୍ୱ, ସଂହତି, ନିରାପତ୍ତା, ଗୁପ୍ତ ବୈଦେଶିକ ବ୍ୟାପାର ଆଦିରେ ହସ୍ତକ୍ଷେପ କରିପାରିବ ନାହିଁ । ମୌଳିକ ଅଧିକାର ସହିତ ସମ୍ବିଧାନର ଚତୁର୍ଥ ଭାଗରେ ଧାରା ୩୬ରୁ ୫୧ ମଧ୍ୟରେ ରାଷ୍ଟ୍ରିୟ ନିର୍ଦ୍ଦେଶମୂଳକ ନୀତିମାନ ଉଲ୍ଲେଖ ରହିଛି । ଏହି ନୀତିଗୁଡ଼ିକ ମୁଖ୍ୟତଃ ସମାଜବାଦୀ, ଗାନ୍ଧିବାଦୀ ଓ ଉଦାରବାଦୀ ଚିନ୍ତାଧାରା ବା ଆଦର୍ଶ ଉପରେ ପର୍ଯ୍ୟବସିତ । ତେବେ ନୀତିଗୁଡ଼ିକୁ ଆବଶ୍ୟକତା ଅନୁସାରେ ରାଷ୍ଟ୍ର ଭବିଷ୍ୟତରେ ଅନୁସରଣ କରିବ ବୋଲି ସମ୍ବିଧାନ ପ୍ରଣେତାମାନେ ଆଶା ପ୍ରକଟ କରିଥିଲେ । ଏହି ନୀତି ମଧ୍ୟରେ ଇଙ୍ଗିତପୂର୍ଣ୍ଣ ଭାବେ ରହିଥିବା ଓ ମୌଳିକ ଅଧିକାରରେ ସ୍ଥାନ ପାଇ ନଥିବା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଲା 'ନାଗରିକଙ୍କ ସୂଚନାର ଅଧିକାର' ବା 'ତଥ୍ୟ ଜାଣିବାର ଅଧିକାର' । ଦୀର୍ଘ ପ୍ରତୀକ୍ଷା ପରେ ସାଂପ୍ରତିକ ପରିସ୍ଥିତିରେ ସୂଚନାର ଅଧିକାରର ଗୁରୁତ୍ୱକୁ ବିଶେଷ ଭାବରେ ଉପଲବ୍ଧ କରି ଏହାକୁ ଏକ ଆଇନ ରୂପେ କାର୍ଯ୍ୟକାରୀ କରିବାକୁ କେନ୍ଦ୍ର ସରକାର ନିର୍ଦ୍ଧାରଣ କଲେ ।

ସୂଚନା ଅଧିକାର ବିଲ୍, ଡିସେମ୍ବର ୨୦୦୪ରେ ସଂସଦ ଅଧିବେଶନରେ ଉପସ୍ଥାପିତ ହେବା ପରେ ମେ ୧୨ ତାରିଖ ୨୦୦୫ରେ ଗୃହୀତ ହୋଇଥିଲା ଓ ଜୁନ୍ ୧୫ ତାରିଖଦିନ ରାଷ୍ଟ୍ରପତି ଶ୍ରୀଯୁକ୍ତ ଅବଦୁଲ୍ କାଲାମଙ୍କ ଅନୁମୋଦନ ଲାଭ କରିଥିଲା । ଏହି କେନ୍ଦ୍ରୀୟ ଆଇନଟି ଚଳିତ ବର୍ଷ ଅକ୍ଟୋବର ୧୨ ତାରିଖରୁ ଜାମ୍ମୁ-କାଶ୍ମୀର ବ୍ୟତୀତ ଭାରତବର୍ଷର ସମସ୍ତ ରାଜ୍ୟରେ କାର୍ଯ୍ୟକାରୀ ହେଉଛି । ସୂଚନା ଅଧିକାର ଆଇନ : ୨୦୦୫ ହେଉଛି ଗତ ୨୦୦୨ ମସିହାରେ ସଂସଦରେ ଆଗତ କରାଯାଇଥିବା ତଥ୍ୟ ଜାଣିବାର ସ୍ୱାଧୀନତା ଆଇନ (ଯାହାକି ଆଦୌ କାର୍ଯ୍ୟକାରୀ କରାଯାଇନାହିଁ)ର ଏକ ନୂତନ କଳେବର ।

ସୂଚନା ଅଧିକାର ଆଇନ ପ୍ରଣୟନର ମୁଖ୍ୟ ଉଦ୍ଦେଶ୍ୟ ହେଲା ପ୍ରଶାସନରେ ସ୍ୱଚ୍ଛତା ଓ ଦାୟିତ୍ୱବୋଧତା ସୃଷ୍ଟି କରିବା । ସୂଚନା ଅଧିକାର ବଳରେ ସାଧାରଣ ଜନତା ସରକାରଙ୍କ କୌଣସି ନୀତି ନିର୍ଦ୍ଧାରଣ ବା ନିଷ୍ପତ୍ତିଗତ ତ୍ରୁଟି ସୁଧାରିବାରେ ସକ୍ରିୟ ଭାବେ ଅଂଶ ଗ୍ରହଣ କରିପାରିବେ ଓ ନିଜର ସ୍ୱଷ୍ଟମତ ବ୍ୟକ୍ତ କରିପାରିବେ । ଏହି ଆଇନ ଏକ ସଂବେଦନଶୀଳ ପ୍ରଶାସନ ଗଠନ କରିବା ସହ ପରିଚାଳନାଗତ ସମସ୍ୟା ଦୂର କରି ସରକାରଙ୍କୁ ଯୁକ୍ତିଯୁକ୍ତ ନିଷ୍ପତ୍ତି ଗ୍ରହଣ କରିବାରେ ସହାୟକ ହେବ । କେବଳ ସେତିକି ନୁହଁ, ଯୁଗ ଯୁଗ ଧରି ଅମଲାତନ୍ତ୍ର ମଧ୍ୟରେ ପୂରି ରହିଥିବା ଗୋପନୀୟତାର ସଂସ୍କୃତିରେ ଯବନିକା ପଡ଼ି ଏକ ସୁସ୍ଥ ଖୋଲାମେଲା ବାତାବରଣ ସୃଷ୍ଟି କରାଯାଇପାରିବ । ଏହି ଆଇନ ଏଭଳି ଏକ ଅମୋଘ ଅସ୍ତ୍ର ଯାହାକୁ ପ୍ରୟୋଗ କରି ଦୁର୍ନୀତି, ଭ୍ରଷ୍ଟାଚାର ଆଦିକୁ କିଛିକାଂଶରେ ହ୍ରାସ କରିବା ସଂଗେସଂଗେ ସାଧାରଣ ଜନତାଙ୍କ ସଶକ୍ତିକରଣ ମଧ୍ୟ କରିହେବ । ଆନ୍ତର୍ଜାତୀୟ ସ୍ତରରେ ଏହି ଅଧିକାରକୁ ବିଶେଷ ପ୍ରାଧାନ୍ୟ ଦେବା ଫଳରେ କ୍ରମଶଃ ଦେଶ ବିଦେଶରେ ସୂଚନା ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଆଗ୍ରହ ପ୍ରକାଶ ପାଇଥିଲା । ପ୍ରଥମ ପର୍ଯ୍ୟାୟରେ ପ୍ରାୟ ୫୦ଟି ଦେଶ ଏହାକୁ ପ୍ରଣୟନ କରି ସାରିଛନ୍ତି ଓ ୨୫ଟି ଦେଶ ଏହାକୁ ପ୍ରଣୟନ କରିବାର ପ୍ରକ୍ରିୟାରତ । ଆମ ଦେଶରେ କେନ୍ଦ୍ର ସରକାରଙ୍କ ସହିତ ଆଠଗୋଟି ରାଜ୍ୟ ମଧ୍ୟ ସୂଚନା ଆଇନକୁ କାର୍ଯ୍ୟକାରୀ କରିସାରିଛନ୍ତି । କେନ୍ଦ୍ରୀୟ ଆଇନର ବ୍ୟବସ୍ଥା ଅନୁସାରେ ଯଦି ରାଜ୍ୟ ଆଇନ କେନ୍ଦ୍ରୀୟ ଆଇନର ବିରୁଦ୍ଧାଚରଣ କରୁଥିବ ତେବେ ସେ କ୍ଷେତ୍ରରେ କେନ୍ଦ୍ରୀୟ ଆଇନ ବଳବତ୍ତର ରହିବ ।

ଏହି ଆଇନର ପରିଧି ମଧ୍ୟରେ ସର୍ବସାଧାରଣ କର୍ତ୍ତୃପକ୍ଷ ଅର୍ଥାତ୍ ସମ୍ବିଧାନ, ସଂସଦ ବା ବିଧାନସଭା ଦ୍ୱାରା ପ୍ରଣୀତ ଆଇନରେ ଗଠିତ ଯେକୌଣସି ସଂସ୍ଥା ବା ଅନୁଷ୍ଠାନ, କେନ୍ଦ୍ର ବା ରାଜ୍ୟ ସରକାରଙ୍କ ଦ୍ୱାରା ନିୟନ୍ତ୍ରିତ ସରକାରୀ କାର୍ଯ୍ୟାଳୟ ବା ସରକାରୀ ଉଦ୍ୟୋଗ ବା ସରକାରଙ୍କଠାରୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଆର୍ଥିକ ସହାୟତା / ଅନୁଦାନ ପ୍ରାପ୍ତ ଯେ କୌଣସି ବେସରକାରୀ ସଂଗଠନ ଅନ୍ତର୍ଭୁକ୍ତ । ଏହି ଜନ କର୍ତ୍ତୃପକ୍ଷମାନେ ଆଇନ କାର୍ଯ୍ୟକାରୀ ହେବାର ୧୨୦ ଦିନ / ୪ ମାସ ଭିତରେ ସମସ୍ତ ତଥ୍ୟକୁ କ୍ରମାଙ୍କିତ କରି ସଜାଡ଼ି ରଖିବେ ଯାହା ଫଳରେ କୌଣସି ସାଧାରଣ ନାଗରିକଙ୍କୁ ସୂଚନା ଯୋଗାଇବା ସହଜସାଧ୍ୟ ହେବ । ସୂଚନାକୁ କାର୍ଯ୍ୟାଳୟମାନେ ଯଥାସାଧ୍ୟ କମ୍ପ୍ୟୁଟରୀକରଣ କରିବେ ଓ ୱେବସାଇଟ୍‌ରେ ଦେବେ । କେବଳ ତଥ୍ୟଗୁଡ଼ିକୁ ଥରକ ପାଇଁ ସଜାଡ଼ି ରଖିଲେ ହେବ ନାହିଁ, ପ୍ରତିବର୍ଷ ଏହି ପ୍ରକାଶନର ନବୀକରଣ କରାଯିବା ଜରୁରୀ । ଏତଦ୍‌ବ୍ୟତୀତ ଯଦି ସେମାନଙ୍କ ସଂସ୍ଥା ଦ୍ୱାରା କୌଣସି ଜନସ୍ୱାର୍ଥ ଜଡ଼ିତ ଗୁରୁତ୍ୱପୂର୍ଣ୍ଣ ନୀତି ବା ନିଷ୍ପତ୍ତି ଗ୍ରହଣ କରାଯାଇଥାଏ ତେବେ ତାହା ମଧ୍ୟ ପ୍ରକାଶିତ କରିବେ । ଏହି ସମସ୍ତ ସୂଚନା ନିଜ ତରଫରୁ କିଭଳି ବ୍ୟାପକ ଭାବେ ସର୍ବନିମ୍ନ ଖର୍ଚ୍ଚରେ ଆଞ୍ଚଳିକ ଭାଷାରେ ନିୟମିତ ଭାବରେ ଜନସାଧାରଣଙ୍କ ପାଖରେ ପହଞ୍ଚିପାରିବ ସେଥିପାଇଁ ଦୃଷ୍ଟି ଦେବେ ।

ଏହି ଆଇନ ଅନୁସାରେ କେତୋଟି ଅତ୍ୟନ୍ତ ଜରୁରୀ ସୂଚନା ଯାହାର ପ୍ରକାଶ୍ୟରେ ରାଜ୍ୟ ବା ଦେଶର ସାର୍ବଭୌମତ୍ୱ, ଅଖଣ୍ଡତା, ସୁରକ୍ଷା, ଆଭ୍ୟନ୍ତରୀଣ ଆଇନ ଶୃଙ୍ଖଳା, ବୈଜ୍ଞାନିକ ତଥା ଅର୍ଥନୈତିକ ସ୍ୱାର୍ଥରେ ବାଧା ସୃଷ୍ଟି ହେବ ବା ଯାହା କୌଣସି ଅନୁସନ୍ଧାନରେ ଅନ୍ତରାୟ ସୃଷ୍ଟି କରୁଥିବ, ଡ୍ରାଫ୍ଟ ଫର୍ମ ଆକାରରେ ଥିବ ବା କୌଣସି ନ୍ୟାୟାଳୟର ବିଚାର ଅଧୀନସ୍ଥ ଥିବ ବା କୌଣସି ବ୍ୟକ୍ତିର ଅନ୍ତରଙ୍ଗତା, ମାନହାନି, ଅଶ୍ଳୀଳତା, ଅସଦାଚାର ବା ବ୍ୟବସାୟିକ କାର୍ଯ୍ୟଶୈଳୀ, ବୌଦ୍ଧିକ ଚିନ୍ତା ବିକାଶର ବାଧା ସୃଷ୍ଟି କରୁଥିବ, ତେବେ ସେଭଳି ତଥ୍ୟକୁ ଛାଡ଼ି ଅନ୍ୟ ସମସ୍ତ ତଥ୍ୟ ସାଧାରଣ ଜନତାଙ୍କ ଜାଣିବାର ଅଧିକାର ରହିଛି । ସୂଚନା ଅଧିକାର ଆଇନ ଅନୁସାରେ ପ୍ରତ୍ୟେକ ଜନ କର୍ତ୍ତୃପକ୍ଷ ନିଜ ସଂସ୍ଥାର ସଂଗଠନ, କାର୍ଯ୍ୟାବଳୀ, କାର୍ଯ୍ୟରତ ଅଧିକାରୀ ଓ କର୍ମଚାରୀମାନଙ୍କ ସମ୍ବନ୍ଧରେ ସୂଚନା, ସେମାନଙ୍କ ଦାୟିତ୍ୱ ଓ କ୍ଷମତା ସଂପର୍କରେ ସବିଶେଷ ବିବରଣୀ, ସଂସ୍ଥାରେ ନିଆଯାଉଥିବା ନିଷ୍ପତ୍ତି, କାର୍ଯ୍ୟ ତଦାରଖ ପାଇଁ ଥିବା ବ୍ୟବସ୍ଥା, କର୍ମକର୍ତ୍ତାଙ୍କ କାର୍ଯ୍ୟ ସଂପାଦନ ପାଇଁ ଥିବା ନିୟମ କାନୁନ, ନିର୍ଦ୍ଦେଶାବଳୀ, ପ୍ରୟୋଗବିଧି, ସଂସ୍ଥାଦ୍ୱାରା ନିର୍ଦ୍ଧାରଣ କରାଯାଉଥିବା କୌଣସି ନୀତିକୁ କାର୍ଯ୍ୟକାରୀ କରାଯିବାବେଳେ ସାଧାରଣ ନାଗରିକ ଯଦି କିଛି ପରାମର୍ଶ ବା ମତାମତ ଦେବାକୁ ଚାହାନ୍ତି ତେବେ ସେଥି ନିମନ୍ତେ କିଭଳି ବ୍ୟବସ୍ଥା ରହିଛି ତାହାର ଏକ ବିବରଣୀ, ସଂସ୍ଥା ସହ ଯଦି ଅନ୍ୟ କୌଣସି କମିଟି, ବୋର୍ଡ଼, କାଉନସିଲ ବା ଉପସଂସ୍ଥା ଜଡ଼ିତ ଅଛନ୍ତି, ସେମାନଙ୍କ ସମ୍ବନ୍ଧରେ ସଂପୂର୍ଣ୍ଣ ବିବରଣୀ ଯଥା- ସେଥିପାଇଁ ଉଦ୍ଦିଷ୍ଟ ବଜେଟ୍, କର୍ମଯୋଜନା, ବ୍ୟୟବରାଦ, ବ୍ୟୟିତ ଅର୍ଥର ବିବରଣୀ ସେହି ସଂସ୍ଥାର ଅଧିକାରୀ ଓ କର୍ମଚାରୀମାନଙ୍କ ମାସିକ ଦରମା ତଥା ଅନ୍ୟାନ୍ୟ ଭତ୍ତା, ସେମାନଙ୍କ ବୈଠକ ସର୍ବସାଧାରଣଙ୍କ ଯୋଗଦାନ ପାଇଁ ଉଦ୍ଦିଷ୍ଟ କି ନୁହେଁ, ସେହି ବୈଠକର ବିବରଣୀ ସାଧାରଣ ଲୋକ ଦେଖିପାରିବେ କି ନାହିଁ ସେ ସମ୍ବନ୍ଧରେ ବିବୃତ୍ତି, ସଂସ୍ଥା ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ସବ୍‌ସିଡିଯୁକ୍ତ ଯୋଜନାର କାର୍ଯ୍ୟ ପ୍ରଣାଳୀ, ହିତାଧିକାରୀ, ମଂଜୁରୀ ହୋଇଥିବା ବିଭିନ୍ନ ରିହାତି, ପରମିଟ୍, ପ୍ରାଧିକରଣ ସଂପର୍କରେ ତଥ୍ୟ, ସଂସ୍ଥାକୁ ବିଭିନ୍ନ ସୂତ୍ରରୁ ମିଳୁଥିବା ତଥ୍ୟାବଳୀ, ଯଦି ସଂସ୍ଥା ଅଧୀନରେ ସର୍ବସାଧାରଣଙ୍କ ନିମନ୍ତେ କୌଣସି ପାଠାଗାର ଥାଏ, ତେବେ ତା'ର କାର୍ଯ୍ୟ ନିର୍ଘଣ୍ଟ ତଥା ଅନ୍ୟାନ୍ୟ ସୁବିଧା, ସୁଯୋଗ ଓ ସର୍ବଶେଷରେ ସଂସ୍ଥା ପାଇଁ ଥିବା ସୂଚନା ଅଧିକାରୀଙ୍କ ନାମ, ଉପାଧି ଓ ଅନ୍ୟାନ୍ୟ ସବିଶେଷ ବିବରଣୀ ପୂରଣ କରି ରଖାଯିବ ।

ଉପରୋକ୍ତ ତଥ୍ୟରୁ ଯଦି କୌଣସି ସୂଚନା ପାଇବା ନିମନ୍ତେ ଜଣେ ନାଗରିକ ଇଚ୍ଛା କରନ୍ତି, ତେବେ ସେ ସଂପୃକ୍ତ କାର୍ଯ୍ୟାଳୟର ଜନସୂଚନା ଅଧିକାରୀଙ୍କୁ ଉଦ୍ଦିଷ୍ଟ ଫର୍ମରେ କେଉଁ ସୂଚନା ପାଇବାକୁ ଚାହୁଁଛନ୍ତି, ତାହା ସ୍ପଷ୍ଟ ଉଲ୍ଲେଖ କରି ଆବେଦନ କରିପାରିବେ । ଓଡ଼ିଶା ସରକାରଙ୍କ ଦ୍ୱାରା ନିର୍ଦ୍ଧାରିତ ନିୟମାବଳୀ ଅନୁସାରେ ତାଙ୍କୁ ଏଥିନିମନ୍ତେ ୨୦ଟଙ୍କା ଆବେଦନ ଶୁଳ୍କ ଦାଖଲ କରିବାକୁ ପଡ଼ିବ । ତେବେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ତାଲିକାଭୁକ୍ତ ବ୍ୟକ୍ତିବିଶେଷଙ୍କୁ ଏହି ଶୁଳ୍କ ଦାଖଲ କରିବାକୁ ପଡ଼ିବ ନାହିଁ । ଆବେଦନକାରୀଙ୍କୁ ୩୦ ଦିନ ମଧ୍ୟରେ ସଂପୃକ୍ତ ସୂଚନା ଅଧିକାରୀ ତଥ୍ୟ ପ୍ରଦାନ କରିବେ ତେବେ ଆବଶ୍ୟକ ତଥ୍ୟକୁ ଦେଖି ୟୁଜର୍ସ ଫି ଧାର୍ଯ୍ୟ କରାଯିବ । ଏକ ପୃଷ୍ଠାର ତଥ୍ୟ ପାଇଁ ୫ ଟଙ୍କା, ପ୍ରାମାଣିକ ନକଲ ପାଇଁ ୧୦ ଟଙ୍କା, ସିଡି / ଫ୍ଲପି ପାଇଁ ଶହେ ଟଙ୍କା ହିସାବରେ ଫି ଦେବାକୁ ପଡ଼ିବ । ଫିର ଧାର୍ଯ୍ୟ ମୂଲ୍ୟ ଆବେଦନକାରୀଙ୍କୁ ଜଣାଇବା ଓ ଆବେଦନକାରୀ ଫି ଦାଖଲ କରିବା ସମୟ ଏହି ୩୦ ଦିନକୁ ବାଦ ଦେଇ ଗଣାଯିବ । ତେବେ ଯେଉଁଠି ଆବେଦନକାରୀଙ୍କ ଧନ ଓ ଜୀବନ ପ୍ରତି ବିପଦ ଆଶଙ୍କା ଥିବ ସେଠାରେ ସଂପୃକ୍ତ ସୂଚନା ଅଧିକାରୀଙ୍କୁ ୪୮ ଘଣ୍ଟା ମଧ୍ୟରେ ତଥ୍ୟ ଯୋଗାଇ ଦେବାକୁ ପଡ଼ିବ । ଯଦି କୌଣସି କାରଣରୁ ସୂଚନା ଅଧିକାରୀ ଆବେଦନକାରୀଙ୍କୁ ତଥ୍ୟ ପ୍ରଦାନ କରିବାକୁ ଅସମର୍ଥ ହୁଅନ୍ତି, ତେବେ ଖାରଜର କାରଣ ଦର୍ଶାଇ ଆବେଦନକୁ ପ୍ରତ୍ୟାଖାନ କରିପାରିବେ ଓ ଏଥିପାଇଁ ଆବେଦନକାରୀ ୪୦ ଟଙ୍କା ଫି ଦେଇ ପୁଣି ପ୍ରଥମ ଅପିଲ ପ୍ରାଧିକାରୀଙ୍କୁ ଅପିଲ କରିପାରିବେ ବୋଲି ଜଣାଇଦେବେ । ଯେଉଁ କ୍ଷେତ୍ରରେ ଆବେଦନକାରୀ ଚାହୁଁଥିବା ତଥ୍ୟ ସଂପୂର୍ଣ୍ଣ ଭାବରେ ଦିଆନଯାଇ ପାରି କିଛି ଅଂଶ ଦିଆଯିବ, ସେଠାରେ ମଧ୍ୟ ସୂଚନା ଅଧିକାରୀ ଏ ବିଷୟରେ ଜଣାଇବେ । ଯଦି କୌଣସି ଆବେଦନକାରୀ ଚାହୁଁଥିବା ତଥ୍ୟ ସୂଚନା ଅଧିକାରୀଙ୍କୁ ତୃତୀୟ

ପକ୍ଷଠାରୁ ମିଳିଥାଏ ବା ତୃତୀୟ ପକ୍ଷ ସେହି ତଥ୍ୟ ଗୋପନୀୟ ବୋଲି ମନେ କରୁଥାଆନ୍ତି ସେଠାରେ ଆବେଦନ ପତ୍ର ମିଳିବାର ୫ ଦିନ ମଧରେ ସଂପୃକ୍ତ ସୂଚନା ଅଧିକାରୀ ତୃତୀୟ ପକ୍ଷଙ୍କୁ ଏ ବିଷୟରେ ତଥ୍ୟ ଜଣାଇବାକୁ ଅନୁରୋଧ କରିବେ । ଏଭଳି ସୂଚନା ପ୍ରଦାନ ଲାଗି ୪୫ ଦିନ ସମୟସୀମା ଧାର୍ଯ୍ୟ କରାଯାଇଛି । ପ୍ରଥମ ଅପିଲ୍ ପ୍ରାଧିକାରୀଙ୍କଠାରୁ ନ୍ୟାୟ ନପାଇଲେ ୫୦ ଟଙ୍କା ଦାଖଲ କରି ଜଣେ ଦ୍ୱିତୀୟ ଅପିଲ୍ ପ୍ରାଧିକାରୀଙ୍କୁ ଅଭିଯୋଗ କରିପାରିବେ । ଦ୍ୱିତୀୟ ଅପିଲ୍ ପ୍ରାଧିକାରୀ ହେଉଛନ୍ତି ରାଜ୍ୟ ସୂଚନା କମିଶନ ।

ଏଇ ଆଇନ ବଳରେ ରାଜ୍ୟରେ ସୂଚନା କମିଶନ ଗଠନ କରାଯାଇଛି, ଯାହାର କାର୍ଯ୍ୟକାଳ ହେଉଛି ପାଞ୍ଚବର୍ଷ । ଏହି କମିଶନରେ ଜଣେ ମୁଖ୍ୟ ସୂଚନା କମିଶନର ଓ ସର୍ବାଧିକ ଦଶ ଜଣ କମିଶନ ରହିପାରିବେ । ରାଜ୍ୟର ବୁଦ୍ଧିଜୀବୀ, ସାମ୍ବାଦିକ, ସମାଜସେବୀ, ଆଇନଜ୍ଞ, ଶିକ୍ଷାବିତ୍‌ମାନଙ୍କୁ ନେଇ ସୂଚନା କମିଶନ ଗଠନ କରାଯାଇପାରିବ । ଆମ ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ଜଣେ ମୁଖ୍ୟ ସୂଚନା କମିଶନର ଓ ଜଣେ କମିଶନରଙ୍କୁ ମୁଖ୍ୟମନ୍ତ୍ରୀ ନିଯୁକ୍ତି ଦେଇଛନ୍ତି । ରାଜ୍ୟ ସୂଚନା କମିଶନର ନିଜ ସ୍ୱତନ୍ତ୍ର କ୍ଷମତା ବଳରେ କୌଣସି ସୂଚନା ଅଧିକାରୀ ଯଦି ଭୁଲ ବା ଅସଂପୂର୍ଣ୍ଣ ତଥ୍ୟ ଆବେଦନକାରୀଙ୍କୁ ଦେଇଛନ୍ତି ବୋଲି ଅନୁଭବ କରନ୍ତି ତେବେ ଅଭିଯୁକ୍ତଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିବେ । ସେଥିପାଇଁ ସୂଚନା ଅଧିକାରୀଙ୍କ ପ୍ରତ୍ୟହ ୨୫୦ ଟଙ୍କା ହାରରେ ସର୍ବାଧିକ ୨୫ ହଜାର ଟଙ୍କାର ଜୋରିମାନା ଦେବାକୁ ପଡ଼ିପାରେ । ସେହିଭଳି କମିଶନ ଚାହିଁଲେ ବିନା ଫିରେ କୌଣସି ଆବେଦନକୁ ସିଧାସଳଖ ଗ୍ରହଣ କରି ତା' ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିବେ ।

ତେବେ ସବୁଠାରୁ ବଡ଼ କଥା ହେଲା ଆଇନଟିର ଫଳପ୍ରସୂ କାର୍ଯ୍ୟକାରିତା । ଆମ ରାଜ୍ୟରେ ବସବାସ କରୁଥିବା ଦାରିଦ୍ର୍ୟ ନିରକ୍ଷରତା କବଳିତ ସାଧାରଣ ଜନତା ଯଦି ଏହାର ସୁଫଳ ନ ପାଆନ୍ତି ତେବେ ଏହି ଆଇନଟି ଅନେକ ଭଲ ଆଇନ ଭଳି କେବଳ କାଗଜ କଲମ ଭିତରେ ସୀମିତ ରହିଯିବ ଓ ଅନ୍ୟପକ୍ଷରେ କେତେକ ନ୍ୟସ୍ତ ସ୍ୱାର୍ଥବ୍ୟକ୍ତିଙ୍କ ଦ୍ୱାରା ଆଇନର ଦୁରୁପଯୋଗ ହେବ, ତେଣୁ ଆଇନ କାର୍ଯ୍ୟକାରିତା ହେବା ସହିତ ଏହାର ବହୁଳ ପ୍ରସାର ପ୍ରଚାରର ପ୍ରୟୋଜନ ରହିଛି । ଲୋକଙ୍କ ମଧରେ ସୂଚନା ଅଧିକାର ସମ୍ବନ୍ଧରେ ସଚେତନତା ସୃଷ୍ଟି କରିବା ପାଇଁ ଉଭୟ ସରକାରୀ ଓ ବେସରକାରୀ ସଂଗଠନ ଆଗେଇ ଆସିବା ଉଚିତ, ତେବେ ଏହି ଆଇନର ମୁଖ୍ୟ ଆଭିମୁଖ୍ୟ ପୂରଣ ହୋଇପାରିବ ।

ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରତିଷ୍ଠାନ
ଭୁବନେଶ୍ୱର

---

# ଲିଟର ପ୍ରତି ୧୬ ଟଙ୍କା ଦରରେ ବାୟୋ-ଡିଜେଲ୍ ବ୍ୟବହାର କରାଯାଇ ଡିଜେଲ ଗାଡ଼ି ଚାଲିବ

## (ବାୟୋ-ଡିଜେଲ୍ ପ୍ରସ୍ତୁତିରେ ଓରେଡ଼ାର ସଫଳତା)

ବିଜ୍ଞାନ ଓ ବୈଷୟିକ ବିଭାଗ ଅଧୀନସ୍ଥ ଓଡ଼ିଶା ଅକ୍ଷୟ ଉର୍ଜା ବିକାଶ ସଂସ୍ଥା (ଓରେଡ଼ା) ପକ୍ଷରୁ ପ୍ରାକୃତିକ ଶକ୍ତି ଉତ୍ସର ବିକାଶ ତଥା ବିନିଯୋଗ ନିମନ୍ତେ ବୈଜ୍ଞାନିକ ପଦ୍ଧତିର ବହୁବିଧ ପରୀକ୍ଷା ନିରୀକ୍ଷା ଚାଲୁ ରହିଛି । ଏ ପ୍ରସଙ୍ଗରେ ସୌରଶକ୍ତିର ବିନିଯୋଗ ଓ ପବନ ଶକ୍ତିର ବିନିଯୋଗ କ୍ଷେତ୍ରରେ ବେଶ୍ ସଫଳତା ହାସଲ କରାଯାଇ ପାରିଛି । ସଂପ୍ରତି ବନସ୍ପତି ଉତ୍ସରୁ ଉର୍ଜା ଉତ୍ପାଦନ ନିମନ୍ତେ ଯେଭଳି ବୈଷୟିକ ଓ ବୌଦ୍ଧିକ ସ୍ତରରେ ବୈପ୍ଳବିକ ଉଦ୍ୟମ ସମଗ୍ର ବିଶ୍ୱରେ ଆରମ୍ଭ ହୋଇଛି, ସେଥିରୁ ଓଡ଼ିଶା ଅକ୍ଷୟ ଉର୍ଜା ବିକାଶ ସଂସ୍ଥା ପଛେଇ ଯାଇ ନାହିଁ ।

ନିକଟରେ ଓରେଡ଼ା ପକ୍ଷରୁ ବନସ୍ପତି ଉତ୍ସରୁ ଶକ୍ତି ଉତ୍ପାଦନ ନିମନ୍ତେ ଚାଲିଆସିଥିବା ଗବେଷଣା ଫଳବତୀ ହେବାକୁ ଯାଉଛି । ସଂପ୍ରତି ଓରେଡ଼ା ଦୈନିକ ୬୦୦ ଲିଟର ବାୟୋ-ଡିଜେଲ୍ ପ୍ରସ୍ତୁତ କରିବାର ସାମର୍ଥ୍ୟ ହାସଲ କରିଛି । ଯାହାକି ଲିଟର ପିଛା ପ୍ରାୟ ୧୬ ଟଙ୍କା ଦରରେ ବଜାରରେ ଉପଲବ୍ଧ ହେବ ଏବଂ ତୁଳନାତ୍ମକ ଭାବେ ଏହା ପାରମ୍ପରିକ ଡିଜେଲ ଦରଠାରୁ ଢେର କମ୍ ହେବା ସଂଗେ ସଂଗେ ଏହା ପରିବେଶ ପ୍ରଦୂଷଣ ନିରୋଧକ ।

ମୁଖ୍ୟମନ୍ତ୍ରୀଙ୍କ ପ୍ରୋତ୍ସାହନ ଓ ବିଭାଗୀୟ ମନ୍ତ୍ରୀ ଶ୍ରୀ ରବି ନାରାୟଣ ନନ୍ଦଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଏହି ବାୟୋ-ଡିଜେଲ୍ ସରକାରୀ ଭାବେ ବିଜ୍ଞାନ ଓ ବୈଷୟିକ ବିଭାଗରେ ବର୍ତ୍ତମାନ ବ୍ୟବହାର ହେଉଥିବା ଡିଜେଲ୍ ଗାଡ଼ିଗୁଡ଼ିକରେ ଡିଜେଲ ପରିବର୍ତ୍ତେ ବାୟୋ-ଡିଜେଲ୍ ଚଳିତ ମାସ ୨୦ ତାରିଖଠାରୁ ବ୍ୟବହାର କରାଯିବ ବୋଲି ନୀତିଗତ ଭାବେ ନିଷ୍ପତ୍ତି ନିଆଯାଇଛି । ଉଲ୍ଲେଖଯୋଗ୍ୟ ଯେ ବାୟୋ-ଡିଜେଲ୍ ଲିଟର ପ୍ରତି ସମ ପରିମାଣର ଗତି ଏବଂ ମାଇଲେଜ୍ ଦର୍ଶାଇବ ।

# ଓଡ଼ିଶା ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ଆଇନ୍ - ୨୦୦୫ କ'ଣ ଓ କାହିଁକି ?

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

**ବ**ହୁଚର୍ଚ୍ଚିତ ଓଡ଼ିଶା ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ବିଲ୍ ୨୦୦୫ ଏପ୍ରିଲ୍ ୫ ତାରିଖ ଦିନ ବିଧାନସଭାର ଅନୁମୋଦନ ଲାଭ କରିଛି । ଇତିମଧ୍ୟରେ ଏହା ମାନ୍ୟବର ରାଜ୍ୟପାଳଙ୍କ ସ୍ୱୀକୃତି ମଧ୍ୟ ଲାଭ କରି ଆଇନରେ ପରିଣତ ହୋଇଛି । ଏଠାରେ ଏକ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ଆଇନ କ'ଣ ଏବଂ ଏହାଦ୍ୱାରା ଓଡ଼ିଶାର ସ୍ୱାର୍ଥରକ୍ଷା କିପରି ହୋଇପାରିବ ? ଏ ବିଷୟରେ ଆଲୋଚନା କରିବାକୁ ହେଲେ ଏକ ତଥ୍ୟଭିତ୍ତିକ ଅନୁଶୀଳନର ଆବଶ୍ୟକତା ଅଛି ।

ଗୋଟିଏ ରାଜ୍ୟର ରାଜସ୍ୱ ସାଧାରଣତଃ ଆୟ ରାଜସ୍ୱ ଖର୍ଚ୍ଚକୁ ମେଣ୍ଟାଇବା ଆବଶ୍ୟକ ବା ରାଜସ୍ୱ ଖର୍ଚ୍ଚଠାରୁ ଅଧିକ ହେବା ଉଚିତ । ଏହାଦ୍ୱାରା ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଅଣାଯାଉଥିବା ଅର୍ଥ ସଠିକ୍ ଭାବରେ ବିନିଯୋଗ ହୋଇ ପୁଞ୍ଜି ସମ୍ପତ୍ତି ସୃଷ୍ଟି କରିବାରେ ସାହାଯ୍ୟ କରିବ । ମାତ୍ର ଏହି ବାସ୍ତବ ସତ୍ୟଟିକୁ କୌଣସି ଲୋକପ୍ରିୟ ସରକାର ହୃଦୟଙ୍ଗମ କଲେ ନାହିଁ । ଫଳ ସ୍ୱରୂପ ୧୯୮୦-୮୧ ମସିହାରେ ୭୪.୫୦ କୋଟି ଟଙ୍କାର ବଳକା ରାଜସ୍ୱ ଥିବା ଏହି ରାଜ୍ୟ ପରବର୍ତ୍ତୀ ସମୟରେ ଏକ ନିଅଣ୍ଟିଆ ରାଜସ୍ୱ ରାଜ୍ୟରେ ପରିଣତ ହୋଇଛି । ୧୯୯୯-୨୦୦୦ ମସିହାରେ ରାଜସ୍ୱ ନିଅଣ୍ଟ ଆଶାତୀତ ଭାବରେ ବୃଦ୍ଧି ପାଇ ୨୫୭୪.୧୯ କୋଟି ଟଙ୍କାରେ ପହଞ୍ଚିଥିଲା । ମାତ୍ର ସରକାର ଇତିମଧ୍ୟରେ କିଛି ସକାରାତ୍ମକ ପଦକ୍ଷେପ ଗ୍ରହଣ କରିବାରୁ ୨୦୦୫-୦୬ ଆର୍ଥିକ ବର୍ଷରେ ବଜେଟ୍ ଆକଳନ ଅନୁସାରେ ରାଜସ୍ୱ ନିଅଣ୍ଟ ୧୦୯୦.୭୨ କୋଟି ଟଙ୍କା ଅଟେ । କିନ୍ତୁ ଧ୍ୱଂସାଭିମୁଖୀ ଅର୍ଥନୀତିକୁ ସଜାଡ଼ିବା ପାଇଁ ଏହି ସାମୟିକ ବ୍ୟବସ୍ଥା ଯଥେଷ୍ଟ ନୁହେଁ । ଏଥିପାଇଁ ନିରନ୍ତର ଉଦ୍ୟମ ଆବଶ୍ୟକ । ଖାଲି ଯେ ରାଜସ୍ୱ ନିଅଣ୍ଟ ବୃଦ୍ଧି ପାଉଛି ତାହା ନୁହେଁ, ଏହି ରାଜସ୍ୱ ନିଅଣ୍ଟକୁ ପ୍ରତିହତ କରିବା ପାଇଁ ଉନ୍ନୟନ ମୂଳକ କାର୍ଯ୍ୟପାଇଁ ଅଣାଯାଉଥିବା ଋଣକୁ ସରକାର ବାଧ୍ୟ ହୋଇ ବିନିଯୋଗ କରୁଛନ୍ତି । ଏଠାରେ ଏକ ଉଦାହରଣ ଦେଲେ ଆମର କଥାଟି ସ୍ପଷ୍ଟ ହୋଇଯିବ । ୧୯୯୯-୨୦୦୦ ମସିହା ଆର୍ଥିକ ବର୍ଷରେ ଅଣାଯାଇଥିବା ଋଣର ପ୍ରାୟ ୬୯ ପ୍ରତିଶତ ସେହିବର୍ଷର ରାଜସ୍ୱ ନିଅଣ୍ଟକୁ ପ୍ରତିହତ କରିବାପାଇଁ ବ୍ୟବହୃତ ହୋଇଥିଲା ଏବଂ ୨୦୦୩-୦୪ ଆର୍ଥିକ ବର୍ଷରେ ମୋଟ ଋଣର ୨୯ ପ୍ରତିଶତ ରାଜସ୍ୱ ନିଅଣ୍ଟକୁ ଭରଣା କରିବାକୁ ବ୍ୟବହୃତ ହୋଇଥିଲା । ଏକଥା ସ୍ୱୀକାର୍ଯ୍ୟ ଯେ ରାଜସ୍ୱ ନିଅଣ୍ଟ ପ୍ରତିବର୍ଷ ବଢୁଥିବାରୁ ଓ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟପାଇଁ ଅଣାଯାଉଥିବା ଋଣର ଏକ ପ୍ରମୁଖାଂଶ ଏହି ରାଜସ୍ୱ ନିଅଣ୍ଟକୁ ପ୍ରତିହତ କରିବା ପାଇଁ ବ୍ୟବହାର କରାଯାଉଥିବାରୁ ଉନ୍ନୟନମୂଳକ କାର୍ଯ୍ୟ ପାଇଁ ଅର୍ଥର ଆବଶ୍ୟକତା ବଢ଼ି ବଢ଼ି ଚାଲିଛି ।

ଏଠାରେ ଆଉ ଏକ ଦିଗପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ । ୧୯୮୦-୮୧ ମସିହାରେ ରାଜ୍ୟର ଋଣଭାର ମୋଟ ରାଜସ୍ୱ ପ୍ରାପ୍ତିର ୨୦୬ ପ୍ରତିଶତ ଥିବାବେଳେ ୨୦୦୩-୦୪ ଆର୍ଥିକ ବର୍ଷରେ ଏହା ୩୩୫ ପ୍ରତିଶତ ଅଟେ । ଅନ୍ୟପକ୍ଷରେ ଦେଖିବାକୁ ହେଲେ ବର୍ଷକୁ ବର୍ଷ ପୁଞ୍ଜି ନିର୍ମାଣ ଖର୍ଚ୍ଚ ମଧ୍ୟ କମିବାରେ ଲାଗିଛି । ଉଦାହରଣ ସ୍ୱରୂପ ୧୯୮୦-୮୧ ମସିହାରେ ପୁଞ୍ଜି ଖର୍ଚ୍ଚ (Capital Expenditure) ମୋଟ ଖର୍ଚ୍ଚର ୨୧ ପ୍ରତିଶତ ଥିବାବେଳେ ୨୦୦୩-୦୪ ମସିହା ବେଳକୁ ଏହା କମି ପାଞ୍ଚ ପ୍ରତିଶତରେ ପହଞ୍ଚିଲାଣି ।

ଓଡ଼ିଶାର ଭୌଗଳିକ ଅବସ୍ଥିତ ଯୋଗୁଁ ଏହା ପ୍ରାୟ ପ୍ରତିବର୍ଷ ବାତ୍ୟା, ବନ୍ୟା ଓ ମରୁଡ଼ି ଆଦି କୌଣସି ନା କୌଣସି ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ । ଏହା ସାଙ୍ଗକୁ ଦରମା, ପେନ୍‌ସନ, ସୁଧଦେୟ ଓ ଋଣ ପୈଠ ପରିମାଣ ରାଜ୍ୟର ମୋଟ ରାଜସ୍ୱକୁ ମଧ୍ୟ ଟପି ଗଲାଣି । ଏଠାରେ ସୂଚାଇ ଦେବା ଉଚିତ ହେବ ଯେ ପ୍ରତିବର୍ଷ ରାଜ୍ୟର ଋଣଭାର ହାରାହାରି ୩୦୦୦ କୋଟି ଟଙ୍କାକୁ ବୃଦ୍ଧି ପାଉଛି । ଏହି ପଦିଏ କଥାରୁ ରାଜ୍ୟ ଅର୍ଥନୀତିରେ ଭୟାଭୟତା ବିଷୟରେ ବେଶ୍ କିଛି ଅନୁମାନ କରିହେବ ।

ଅବଶ୍ୟ ଆମ ରାଜ୍ୟ ଯେ ଏକୁଟିଆ ଆର୍ଥିକ ଦୁରବସ୍ଥାରେ ସମ୍ମୁଖୀନ - ଏକଥା କେହି କହୁ ନାହିଁ, ଓଡ଼ିଶା ଭଳି ଅନ୍ୟାନ୍ୟ ବହୁ ରାଜ୍ୟ ମଧ୍ୟ ଋଣଯନ୍ତାରେ ପଡ଼ିଛନ୍ତି । ଏହି ଆର୍ଥିକ ସଂକଟରୁ ମୁକ୍ତି ପାଇବା ପାଇଁ ରାଜ୍ୟ ଅର୍ଥ ସଚିବମାନଙ୍କର ୨୦୦୩ ମସିହା ଅଗଷ୍ଟ ୧ ତାରିଖରେ ଅନୁଷ୍ଠିତ ବୈଠକରେ ବିଚାରବିମର୍ଷ କରାଯାଇଥିଲା ।

ତଦନୁସାରେ ଭାରତୀୟ ରିଜର୍ଭ ବ୍ୟାଙ୍କ ସମସ୍ତଙ୍କ ଅବଗତି ନିମନ୍ତେ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ସଂକ୍ରାନ୍ତରେ ଏକ ମଡେଲ୍ ବିଲ୍ ପ୍ରସ୍ତୁତ କରିଥିଲେ । ଏଠାରେ ସୂଚାଇ ଦେବା ଉଚିତ ହେବ ଯେ ଭାରତ ସରକାର ୨୦୦୩ ମସିହାଠାରୁ ବିତ୍ତୀୟ ଦାୟିତ୍ୱବୋଧ ଓ ବେଜଟ୍ ପରିଚାଳନା ଆଇନ୍ ପ୍ରଣୟନ କରିଛନ୍ତି । ଏତଦ୍‌ବ୍ୟତୀତ ପଞ୍ଜାବ, ଗୁଜରାଟ, କେରଳ, ତାମିଲନାଡୁ, ମହାରାଷ୍ଟ୍ର ଓ ଉତ୍ତରପ୍ରଦେଶ ରାଜ୍ୟମାନେ ମଧ ସେମାନଙ୍କ ରାଜ୍ୟରେ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ଆଇନ ପ୍ରଣୟନ କରିଛନ୍ତି ।

ଇତିମଧରେ ଦ୍ୱାଦଶ ଅର୍ଥ କମିଶନଙ୍କ ରିପୋର୍ଟ ଆମର ହସ୍ତଗତ ହୋଇଛି । ଅନ୍ୟାନ୍ୟ ବହୁ କଥା ମଧରେ କମିଶନ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ଆଇନ ପ୍ରଣୟନ କରିବାକୁ ସୁପାରିଶ କରିଛନ୍ତି । କମିଶନ ଅନେକ କେନ୍ଦ୍ରୀୟ ଋଣଛାଡ଼ ଓ ଋଣ ପୁନର୍ବିନ୍ୟାସ ପାଇଁ କିଛି ସର୍ତ୍ତ ଆରୋପ କରିଛନ୍ତି । ଏହିସବୁ ସୁବିଧା ହାସଲ କରିବାକୁ ହେଲେ ପ୍ରତ୍ୟେକ ରାଜ୍ୟ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ବିଲ୍ ଆଇନ ପ୍ରଣୟନ କରିବାକୁ ବାଧ ବୋଲି କମିଶନ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ।

ଦ୍ୱାଦଶ ଅର୍ଥ କମିଶନ ତାଙ୍କ ରିପୋର୍ଟରେ ରାଜ୍ୟମାନଙ୍କ କ୍ଷେତ୍ରରେ ଋଣଛାଡ଼ ପାଇଁ ଏକ ବ୍ୟାପକ ଯୋଜନା ପ୍ରସ୍ତୁତ କରିଛନ୍ତି । ଓଡ଼ିଶା କ୍ଷେତ୍ରରେ ନିମ୍ନଲିଖିତ ଉପାୟରେ ୩୬୩୨.୫୭ କୋଟି ଟଙ୍କା ଋଣ ଛାଡ଼ ପାଇଁ କମିଶନ ପ୍ରସ୍ତାବ ରଖିଛନ୍ତି ।

(କୋଟି ଟଙ୍କା ହିସାବରେ)

| | | |
|---|---|---|
| ୧. | ପୁନର୍ବିନ୍ୟାସ ମାଧମରେ ମୂଳ ଋଣ ପରିଶୋଧ ହ୍ରାସ | ୮୭୨.୮୫ |
| ୨. | ତା.୧.୦୪.୦୫ରିଖ ସୁଦ୍ଧା ବାକିଥିବା ଉଚ୍ଚହାର କେନ୍ଦ୍ରୀୟ ଋଣ ଯଥା ୯ ପ୍ରତିଶତରୁ ୧୩.୦୫ ପ୍ରତିଶତ ସୁଧହାରକୁ ଆଣିବା (ଏଥିପାଇଁ ପ୍ରତ୍ୟେକ ରାଜ୍ୟକୁ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ବିଲ୍ ପ୍ରଣୟନ କରିବାକୁ ପଡ଼ିବ) । | ୧୦୦୮.୩୪ |
| ୩. | ଧୀରେ ଧୀରେ ରାଜସ୍ୱ ନିଅଣ୍ଟକୁ କମାଇ ୨୦୦୮-୦୯ ସୁଦ୍ଧା ଏହାକୁ ଯଦି ଶୂନ କରାଯାଏ ତାହା ହେଲେ ସଂପୂର୍ଣ୍ଣ ଋଣଛାଡ଼ | ୧୭୫୧.୨୯ |
| | **ମୋଟ** | **୩୬୩୨.୫୭** |

କମିଶନ ଏକଥା ମଧ ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି ଯେ ଯେଉଁ ରାଜ୍ୟ ଯେଉଁ ଦିନଠାରୁ ଏହି ଆଇନ୍ ପ୍ରଣୟନ କରିବେ, ସେହି ଦିନଠାରୁ ଏହି ସୁବିଧା ପାଇବାକୁ ଯୋଗ୍ୟ ବିବେଚିତ ହେବେ ।

ବର୍ତ୍ତମାନ ଆମେ ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ଆଇନ୍‌ରେ ଥିବା ବ୍ୟବସ୍ଥା ଉପରେ କିଛି ଆଲୋଚନା କରିବା । ଅନ୍ୟାନ୍ୟ ବହୁ କଥା ମଧରେ ଉକ୍ତ ଆଇନ୍‌ରେ ମୁଖ୍ୟତଃ ବିଧାନସଭାରେ ଆଗତ ହେବାକୁ ଥିବା ମଧମକାଳୀନ ଆର୍ଥିକ ଯୋଜନା, ଆର୍ଥିକ ପରିଚାଳନା ନିୟମ, ଆର୍ଥିକ ପରିଚାଳନା ଲକ୍ଷ୍ୟ, ଆର୍ଥିକ ସ୍ୱଚ୍ଛତା ପାଇଁ ପଦକ୍ଷେପ, ଆର୍ଥିକ ବୋଝର ସ୍ୱୀକୃତି ଇତ୍ୟାଦି ଉପରେ ବ୍ୟବସ୍ଥା ଅଛି ।

ଆଇନର ତୃତୀୟ ପରିଚ୍ଛେଦରେ ଉଲ୍ଲେଖ ଅଛି ଯେ ରାଜ୍ୟ ସରକାର ପ୍ରତ୍ୟେକ ବର୍ଷ ବିଧାନସଭାରେ ବଜେଟ୍ ଆଗତ କଲାବେଳେ ଏକ ମଧମକାଳୀନ ଆର୍ଥିକ ଯୋଜନା ମଧ ଉପସ୍ଥାପନ କରିବେ । ଏହି ମଧମକାଳୀନ ଆର୍ଥିକ ଯୋଜନା ଆଗାମୀ ତିନି ବର୍ଷ ପାଇଁ ରାଜସ୍ୱ ନିଅଣ୍ଟ, ଖୋଲାବଜାର ଋଣ ସମେତ ପୁଞ୍ଜି ପ୍ରାପ୍ତିର ବିନିଯୋଗ ଦ୍ୱାରା ଉନ୍ନୟନମୂଳକ ସମ୍ପତ୍ତି ସୃଷ୍ଟି, ସରକାରଙ୍କ ମଧମକାଳୀନ ଆର୍ଥିକ ଯୋଜନା ଲକ୍ଷ୍ୟ, ଗ୍ୟାରେଣ୍ଟି ଓ ବିନିଯୋଗ ସମ୍ବନ୍ଧୀୟ ବିଭିନ୍ନ ସରକାରୀ ନୀତି, ଯାହାର ବଜେଟ୍ ଉପରେ ଏକ ସୁଦୂରପ୍ରସାରୀ ପ୍ରଭାବ ଅଛି ସେ ସମ୍ବନ୍ଧରେ ପର୍ଯ୍ୟାଲୋଚନା କରିବ ।

ଆଇନର ଚତୁର୍ଥ ପରିଚ୍ଛେଦରେ ଆର୍ଥିକ ପରିଚାଳନା ନିୟମ ବିଷୟରେ ଉଲ୍ଲେଖ ଅଛି । ରାଜସ୍ୱ ନିଅଣ୍ଟକୁ ଧୀରେ ଧୀରେ କମାଇ ରାଜକୋଷୀୟ ସଙ୍କଟକୁ ଏକ ପୋଷଣୀୟ ସ୍ତରରେ ପହଞ୍ଚାଇବାକୁ ହେଲେ ଯେଉଁ ପଦକ୍ଷେପମାନ ନେବାକୁ ହେବ ସେ ବିଷୟରେ ସୂଚନା ପ୍ରଦାନ କରାଯାଇଛି । ରାଜ୍ୟ ଋଣକୁ ଏକ ପୋଷଣୀୟ ସ୍ତରରେ ପହଞ୍ଚାଇବା, ଗ୍ୟାରେଣ୍ଟିର ସୁପରିଚାଳନା ଏବଂ ଟିକସ ରିହାତି ବିଷୟ ଆଦି ଅନେକ ପଦକ୍ଷେପ ବିଷୟରେ ଉଲ୍ଲେଖ ଅଛି ।

ଆଇନର ପଞ୍ଚମ ପରିଚ୍ଛେଦ ଆର୍ଥିକ ପରିଚାଳନା ଲକ୍ଷ୍ୟ ଉପରେ ଆଲୋକପାତ କରିଥାଏ । ଏହା ମଧମକାଳୀନ ଆର୍ଥିକ ଯୋଜନାରେ ଧାର୍ଯ୍ୟ କରାଯାଇଥିବା ଲକ୍ଷ୍ୟ ଉପରେ ପର୍ଯ୍ୟବସିତ ଅଟେ । ଏହାର ଦୁଇଟି ମୁଖ୍ୟ ଲକ୍ଷ୍ୟ ମଧ ଦ୍ୱାଦଶ ଅର୍ଥ କମିଶନଙ୍କ ସୁପାରିଶ ଉପରେ ପର୍ଯ୍ୟବସିତ ଅଟେ । ଏହି ଦୁଇଟି ଲକ୍ଷ୍ୟ ହେଲା -

୧. ୨୦୦୮-୦୯ ଆର୍ଥିକ ବର୍ଷ ଶେଷ ସୁଦ୍ଧା ରାଜସ୍ୱ ନିଅଣ୍ଟ ଶୂନ୍ୟ ହେବ ।

୨. ୨୦୦୮-୦୯ ଆର୍ଥିକ ବର୍ଷ ଶେଷ ସୁଦ୍ଧା ରାଜକୋଷୀୟ ନିଅଣ୍ଟ ସାମଗ୍ରିକ ଘରୋଇ ଉତ୍ପାଦନର ତିନି ପ୍ରତିଶତକୁ କମାଯିବ ।

ଆଇନର ଷଷ୍ଠ ପରିଚ୍ଛେଦରେ ଆର୍ଥିକ ସ୍ୱଚ୍ଛତା ପଦକ୍ଷେପ ବିଷୟରେ ଉଲ୍ଲେଖ ଅଛି । ଯଥାସମ୍ଭବ ଗୋପନୀୟତା ରକ୍ଷା କରି ରାଜ୍ୟ ସରକାର ବଜେଟ୍ ପ୍ରସ୍ତୁତି ସମୟରେ ଜନସାଧାରଣଙ୍କ ଅବଗତି ନିମନ୍ତେ ଆର୍ଥିକ ନୀତି ଓ ଆଭିମୁଖ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରିବେ ।

ପ୍ରତ୍ୟେକ ବିଭାଗର ଆର୍ଥିକ ସ୍ଥିତି, ସରକାରଙ୍କ ବାର୍ଷିକ ବୋଝ ଟିକସ ଓ ଅଣ-ଟିକସ ବକେୟା ରାଜସ୍ୱ ଇତ୍ୟାଦିର ସ୍ପଷ୍ଟ ଚିତ୍ର ସହ କେଉଁ ସଂସ୍ଥାମାନଙ୍କୁ ସରକାର କେତେ ପରିମାଣର ଗ୍ୟାରେଣ୍ଟି ପ୍ରଦାନ କରିଛନ୍ତି ଏବଂ କେଉଁ ସଂସ୍ଥା ଗ୍ୟାରେଣ୍ଟି ପରିଶୋଧ କରିନାହାନ୍ତି, ସେ ସମସ୍ତ ବିଷୟ ମଧ୍ୟ 'Budget at a Glance'ରେ ପ୍ରକାଶିତ ହେବ ।

ଦିନକୁ ଦିନ ସରକାରଙ୍କ ଆର୍ଥିକ ବୋଝ ବଢ଼ି ଚାଲିଛି । ଏହି ଆର୍ଥିକ ବୋଝର ସ୍ୱୀକାରୋକ୍ତି ଓ ଏହାକୁ ବିଧାନସଭାରେ ଉପସ୍ଥାପିତ କରିବା ପାଇଁ ପରିଚ୍ଛେଦ ୭ରେ ଉଲ୍ଲେଖ ଅଛି । ପ୍ରତ୍ୟେକ ବର୍ଷ ବଜେଟ୍ ଉପସ୍ଥାପନ କଲାବେଳେ ରାଜ୍ୟ ସରକାର ଖର୍ଚ୍ଚ ନହୋଇ ସିଭିଲ୍ ଡିପୋଜିଟ୍‌ରେ ରହୁଥିବା ଟଙ୍କା ଖର୍ଚ୍ଚ ନହୋଇ ପଡ଼ି ରହିଥିବା କେନ୍ଦ୍ରୀୟ ସାହାଯ୍ୟ ପରିମାଣ, କୋଷାଗାରରେ ବିଲ୍ ଉପସ୍ଥାପିତ ହୋଇ ଉଠାଣ ହୋଇପାରିନଥିବା ଟଙ୍କାର ବିବରଣୀ ଏବଂ କେନ୍ଦ୍ରୀୟ ଅନୁଦାନ ବାବଦକୁ ରାଜ୍ୟ ସରକାର ତାଙ୍କ ଅଂଶ ବାବଦ ପ୍ରଦାନ କରିପାରୁନଥିବା ଅର୍ଥ ବିଷୟରେ ଏକ ସ୍ପଷ୍ଟ ଚିତ୍ର ପ୍ରଦାନ କରିବାକୁ ଆଇନରେ ବ୍ୟବସ୍ଥା ଅଛି ।

ରାଜ୍ୟର ଆର୍ଥିକ ଅବସ୍ଥାର ଉନ୍ନତି ଆର୍ଥିକ ମାନଦଣ୍ଡର ଲକ୍ଷ୍ୟ ହାସଲ ଉପରେ ନିର୍ଭର କରେ । ବିତ୍ତୀୟ ଦାୟିତ୍ୱବୋଧ ଓ ବଜେଟ୍ ପରିଚାଳନା ବିଲ୍‌ରେ ଏଥିପାଇଁ ବିଭିନ୍ନ ବ୍ୟବସ୍ଥା ଅଛି । ଏକଥା ସତ୍ୟ ଯେ ଓଡ଼ିଶା ହେଉଛି ଭାରତବର୍ଷର ଦରିଦ୍ରତମ ରାଜ୍ୟ । ରାଜ୍ୟର ଆର୍ଥିକ ସ୍ଥିତି ଉପରେ ଜନସାଧାରଣଙ୍କୁ ଅବଗତ କରିବା ଉଦ୍ଦେଶ୍ୟରେ ସରକାର ୧୯୯୯ ମସିହା ଏବଂ ୨୦୦୧ ମସିହାରେ ଏହିପରି ଦୁଇ ଥର ଶ୍ୱେତପତ୍ର ପ୍ରକାଶ କରିଛନ୍ତି । ଖାଲି ଶ୍ୱେତପତ୍ର ପ୍ରକାଶ କରିଦେଲେ ରାଜ୍ୟର ଆର୍ଥିକ ସମସ୍ୟା ଦୂର ହେବ ନାହିଁ, ଏହି ଆର୍ଥିକ ସମସ୍ୟାକୁ ପ୍ରତିହତ କରିବାକୁ ହେଲେ ଆମର ମାନସିକତାର ପରିବର୍ତ୍ତନର ଆବଶ୍ୟକତା ଅଛି । ବିଳମ୍ବରେ ହେଲେ ମଧ୍ୟ ଏ ଦିଗରେ ସଚେତନତା ଆସିଛି । କଠୋର ଆର୍ଥିକ ଶୃଙ୍ଖଳା ସାଙ୍ଗକୁ ବିଭିନ୍ନ କ୍ଷେତ୍ରରେ ଆଦାୟ ହୋଇପାରୁନଥିବା ଅର୍ଥ କିପରି ଆଦାୟ ହେବ, ସେଥି ନେଇ ସୁଚିନ୍ତିତ ପଦକ୍ଷେପ ସହ କୃଷି, ଶିଳ୍ପ ଓ ଗମନାଗମନ ଇତ୍ୟାଦିର ସମନ୍ୱିତ ବିକାଶ ଦ୍ୱାରା ଏ ରାଜ୍ୟର ବିକାଶ ହୋଇପାରିବ ।

ଅନୁଶାସନ ସଚିବ
ଅର୍ଥ ବିଭାଗ, ଭୁବନେଶ୍ୱର

---

## ପଛୁଆବର୍ଗଙ୍କ ଉନ୍ନତି ପାଇଁ 'ସ୍ୱର୍ଣ୍ଣିମା ଯୋଜନା'

ରାଜ୍ୟରେ ବସବାସ କରୁଥିବା ପଛୁଆବର୍ଗ ଲୋକମାନଙ୍କର ଉନ୍ନତି ସାଧନ ପାଇଁ ସରକାର ବିଭିନ୍ନ ପ୍ରକାରର ଉଦ୍ୟମ କରୁଛନ୍ତି । ସେମାନଙ୍କର ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ସହିତ ସେମାନଙ୍କୁ ସ୍ୱରୋଜଗାରକ୍ଷମ କରିବା ପାଇଁ ଓଡ଼ିଶା ପଛୁଆବର୍ଗ ଉନ୍ନୟନର 'ସ୍ୱର୍ଣ୍ଣିମା ଯୋଜନା' ରାଜ୍ୟ ଅନୁସୂଚିତ ଜାତି / ଜନଜାତି ଉନ୍ନୟନ ଅର୍ଥ ସମବାୟ ନିଗମ ଦ୍ୱାରା ରାଜ୍ୟରେ କାର୍ଯ୍ୟକାରୀ ହେଉଅଛି ।

ଏହି ଯୋଜନାରେ ହିତାଧିକାରୀମାନେ ନିଗମଠାରୁ ଋଣ ନେଇ କ୍ଷୁଦ୍ର ବ୍ୟବସାୟ ଦ୍ୱାରା ନିଜର ଆର୍ଥିକ ଅବସ୍ଥାର ଉନ୍ନତି କରିପାରିବେ ତଥା ପରିବାରର ଭରଣପୋଷଣ ଦାୟିତ୍ୱ ମଧ୍ୟ ତୁଲାଇ ପାରିବେ । ଏହି ଯୋଜନା ମାଧ୍ୟମରେ ପଛୁଆବର୍ଗର ଲୋକମାନଙ୍କ ସାଇକେଲ ଓ ଘଣ୍ଟା ମରାମତି ଦୋକାନ, ଦରଜୀ ଦୋକାନ, ପାନ ଓ ଚା ଦୋକାନ ଅନ୍ତର୍ଭୁକ୍ତ ଅଟେ ।

ବର୍ତ୍ତମାନ ସୁଦ୍ଧା ଏହି ନିଗମ ପଛୁଆବର୍ଗର ହିତାଧିକାରୀମାନଙ୍କୁ ୧୦ କୋଟି ୪୦ ଲକ୍ଷ ୮୧ ହଜାର ଟଙ୍କା ଋଣ ଯୋଗାଇ ଦେଇସାରିଛି । ୨୦୦୪-୦୫ ଆର୍ଥିକ ବର୍ଷର ଜାନୁଆରୀ ୨୦ ତାରିଖ ସୁଦ୍ଧା ଏହି ଯୋଜନାରେ ନୂଆପଡ଼ା ଜିଲ୍ଲାକୁ ସର୍ବାଧିକ ୧୦ ଲକ୍ଷ ୪୭ ହଜାର ଟଙ୍କା ଋଣ ନିଗମ ତରଫରୁ ଯୋଗାଇ ଦିଆଯାଇଛି ବୋଲି ଓଡ଼ିଶା ଅନୁସୂଚିତ ଜାତି / ଜନଜାତି ଉନ୍ନୟନ ଅର୍ଥ ସମବାୟ ନିଗମ ସୂତ୍ରରୁ ପ୍ରକାଶ ।

# ବିଭିନ୍ନ କ୍ଷେତ୍ରରେ ନାରୀର ଅବଦାନ ଅବିସ୍ମରଣୀୟ

ଧରିତ୍ରୀ ବିଶ୍ୱାଳ

ଭଗବାନଙ୍କ ଏହି ସୁନ୍ଦର ସଂସାରରେ ମନୁଷ୍ୟ, ଜୀବଜନ୍ତୁ, ବୃକ୍ଷଲତା ଫଳ ଓ ଫୁଲ ଆଦି ତାଙ୍କରି ସୃଷ୍ଟି । ଏହି ସମସ୍ତଙ୍କ ମଧ୍ୟରୁ ମନୁଷ୍ୟ ଶ୍ରେଷ୍ଠ, କାରଣ ତା'ପାଖରେ ଧୈର୍ଯ୍ୟ, ସାହସ, ଭଲ ପାଇବା ସହନଶୀଳତା, ବିଚାରଶକ୍ତି ଆଦିଗୁଣ ପରିପୂର୍ଣ୍ଣ ହୋଇରହିଛି ।

କିନ୍ତୁ ଆଜିର ଯୁଗରେ ପୁରୁଷ ଅପେକ୍ଷା ନାରୀକୁ ଅଧିକ ଗୁରୁତ୍ୱ ଦେବା ଆବଶ୍ୟକ, କାରଣ ନାରୀଠାରୁ ଏ ପୁରୁଷର ସୃଷ୍ଟି ବା ଏ ସଂସାରର ସୃଷ୍ଟି । ନାରୀ ବିନା ସୃଷ୍ଟି ଅସମ୍ଭବ ।

ନାରୀ, ଏହି ଶବ୍ଦ ଶୁଣି ସମସ୍ତଙ୍କ ମୁଣ୍ଡ ନତମସ୍ତକ ହୋଇଯାଏ । ଏପରିକି ନାରୀର କେତେ ରୂପ ଅଛି ଯାହାକି କେବେ ଝିଅ, କେବେ ଜାୟା, କେବେ ଜନନୀ ଆଉ କେବେ ଭଗିନୀ ଭାବରେ । ଆମ ଦେଶରେ ବି ଆମେ ତାକୁ ମା'ର ସମ୍ମାନ ଦେଉଛୁ, ଯାହାକି ଭାରତ ମାତା ଭାବରେ ପ୍ରଚଳିତ ।

ଆଜି ଆମେ ନୂଆ ଶତାବ୍ଦୀରେ ପଦାର୍ପଣ କରିଛୁ । ଏହି ନୂଆ ଶତାବ୍ଦୀରେ ଆଜି ଆମେ ସବୁ ତାକୁ ନୂଆ ରୂପରେ ସ୍ୱାଗତ କରିବା ପାଇଁ ବସି ରହିଛୁ । ଏହି ଶତାବ୍ଦୀ ହେଉଛି ନାରୀ ପାଇଁ ନୂଆ ସମ୍ଭାବନାର ଯୁଗ । ଆଜିର ଶତାବ୍ଦୀରେ ପିଲା, ଯୁବପିଢ଼ି ଏବଂ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ନିଜକୁ ନୂଆ ରୂପରେ ସଜାଇବା ପାଇଁ ପ୍ରସ୍ତୁତ । ପୁଣି ନାରୀ ଏହି ଦୌଡ଼ରେ ପଛରେ ରହିବ କାହିଁକି ?

ଆଜିର ଏହି ଶତାବ୍ଦୀରେ ୨୦୦୧ ବର୍ଷରେ ଆମର ସାରା ବିଶ୍ୱ ଏବଂ ଦେଶରେ ମହିଳା ସଶକ୍ତିକରଣର ବର୍ଷରେ ଆମେ ନାରୀର ଉନ୍ନତି, ବିକାଶ ଓ ସେମାନଙ୍କର ଜାଗରଣ ଓ ଆତ୍ମ ନିର୍ଭରଶୀଳ ହେବାର ବିଷୟ ପରିଲକ୍ଷିତ ହୁଏ ।

ଈଶ୍ୱରଙ୍କର ଅନୁପମ ସୃଷ୍ଟିରେ ନାରୀ ହେଉଛି ଅଦ୍ଭୁତ ଶକ୍ତି ସମ୍ପନ୍ନ । ତା'ର ଅପାର ଶକ୍ତି ଅଛି । ସେ ଶକ୍ତିର ଆଧାର । ଏହି ନାରୀ ହେଉଛି ହିମାଳୟର ଆକାର ସ୍ୱରୂପ । ସର୍ବଂସହା ଧରିତ୍ରୀର ଏକ ବିଚିତ୍ର ପ୍ରତିରୂପ ହେଉଛି ଏହି ନାରୀ, ପୁଣି ମିଶରର ପିରାମିଡ ପରି ସୁପ୍ତ ଓ ଶାନ୍ତ ଏବଂ ପ୍ରେମ ବିରହର ଏକ ଶୂନ୍ୟ ଦିଗନ୍ତ ଓ ଆଗ୍ନେୟ ଗିରିର ଲାଭା ଭଳି ଉଜ୍ଜ୍ୱଳ ଓ ଉତ୍ତପ୍ତ ସୃଷ୍ଟି ଏବଂ ବିନାଶର ମୂଳ କାରଣ । ପୁଣି ସେ ଦୟା, କ୍ଷମା, ସ୍ନେହ ଓ ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ, ତା'ର ଏହି ଗୁଣରେ ବିଦ୍ୟମାନ ଅଛି । ତେଣୁ ନାରୀକୁ ପୁରାଣରେ ଶକ୍ତି ରୂପିଣୀ ଭାବରେ ଗାରିମା ଓ ମହିମାରେ ମଣ୍ଡିତ କରାଯାଇଛି ।

ଗୋଟିଏ ସମାଜ ଥିଲା ଯେତେବେଳେ ନାରୀକୁ ଅବଳା କହୁଥିଲା, ତଥା ଘରର କୌଣସି କୋଣରେ ସେ ପଡ଼ି ରହୁଥିଲା ତଥା ପିଲା ଜନ୍ମ କଲାବାଲା ତଥା ପୁରୁଷର ଦାସୀ ହୋଇ ରହୁଥିଲା । ଆଜି କିନ୍ତୁ ସବୁ ବଦଳିଯାଇଛି । ସେ ଏବେ ନିଜର କର୍ତ୍ତବ୍ୟ ଓ ଅଧିକାର ପ୍ରତି ଜାଗ୍ରତ ଅଛି । ନାରୀ ଆଗେ ସାମନ୍ତବାଦର ଶୋଷଣରେ ପୀଡ଼ିତ ଥିଲା ତଥା ତାକୁ ସମାଜରେ ଦେବୀର ଆସ୍ଥା ଦେଇଥିଲା କିନ୍ତୁ ସେ ଏ ସବୁଥିରୁ ଅଜଣା ତଥା ନିଜର ଅଧିକାରରୁ ବଞ୍ଚିତ ଥିଲା ଓ ନିଜ ଉପରେ ହେଉଥିବା ସବୁ ଅତ୍ୟାଚାର ସହି ଆସୁଥିଲା । ସେ ପାଟିରୁ କଥା ବାହାର ନକରି ପଥର ଭଳି ସବୁ ସହି ଆସୁଥିଲା । ହେଲେ ସମାଜରେ କଠିନରୁ କଠିନ ପରୀକ୍ଷା ଦେବା ପାଇଁ ସକ୍ଷମ ଥିଲା ।

କିନ୍ତୁ ବିଂଶ ଶତାବ୍ଦୀରେ ଶିକ୍ଷାର ଅଭୁତପୂର୍ବ ବିକାଶ ହେବା ସଙ୍ଗେ ସଙ୍ଗେ ସେ ଅଜ୍ଞାନର ଅନ୍ଧକାରରୁ ବାହାର ହୋଇ ଜ୍ଞାନର ପ୍ରକାଶରେ ଆସିବାକୁ ଲାଗିଲା । ନାରୀ ତା'ର କର୍ତ୍ତବ୍ୟ, ଅଧିକାର ଓ ମାନବ ମୂଲ୍ୟ ପ୍ରତି ସଜାଗ ହେଲା । ତା'ର ଜୀବନରେ ନୂଆ ସୂର୍ଯ୍ୟୋଦୟ ହେଲା । ସେ ନିଜକୁ ପ୍ରଥମ ଥର ନୂଆ କିରଣରେ ଦେଖିଲା ।

ସେ ଆଜି ସମାଜରେ ପ୍ରତ୍ୟେକ କ୍ଷେତ୍ରରେ ଅଗ୍ରଣୀ ତଥା ପୁରୁଷ ସମାଜରେ ପୁରୁଷ ସାଙ୍ଗରେ କାନ୍ଧକୁ କାନ୍ଧ ମିଶାଇ ଚାଲିବାକୁ ଲାଗିଲା । ସେ ଆଜି ସାମାଜିକ, ରାଜନୈତିକ, ସାଂସ୍କୃତିକ, ବିଜ୍ଞାନ, ବୈଷୟିକ ଓ ଖେଳ ଜଗତ ତଥା ପାରିବାରିକ ଓ ଯୁଦ୍ଧକ୍ଷେତ୍ରରେ ମହତ୍ୱପୂର୍ଣ୍ଣ ଭୂମିକା କରିଆସୁଛି ।

ଶିଶୁଟି ଜନ୍ମ ହେଲେ ସେ ହଠାତ୍ ବଡ଼ ହୋଇଯାଏ ନାହିଁ । ତା'ର ଉପଯୁକ୍ତ ଲାଳନ ପାଳନ ସେବା ଯତ୍ନ ଏସବୁ ମାତୃ ରୂପିଣୀ ନାରୀ ହିଁ କରିଥାଏ । ଶିଶୁଟିର ପ୍ରଥମଗୁରୁ ମା' । ସେଥିପାଇଁ

କୁହାଯାଇଛି, The mother's face is the first lesson book of a child, କାରଣ ସେ ପ୍ରଥମେ ମା'ଠାରୁ ହିଁ ତାର ସମସ୍ତ ଶିକ୍ଷା ଆରମ୍ଭ କରିଥାଏ । ଭଲ ମଣିଷ ହେବା ପାଇଁ ଧୈର୍ଯ୍ୟ, ସାହସ, ସହନଶୀଳତା ଆଦି ଭଲ ଗୁଣ ଶିଖାଇଥାଏ । ମା' ବିନା ବା ନାରୀ ବିନା ଶିଶୁ ଅସହାୟ ହୋଇପଡ଼େ । ଏଣୁ ଗୃହରେ ବି ତା'ର କେତେ ଆବଶ୍ୟକତା ରହିଛି । ଗୃହରେ ଯଦି ଶିଶୁଟିକୁ ସେ ମଣିଷ ନ କରେ, ତେବେ ସେ ଶିଶୁଟିର ଜୀବନ ସମାଜରେ ଦୁର୍ବିସହ ହୋଇପଡ଼ିବ । କାରଣ ଏ ଶିଶୁ ଦିନେ ସମାଜର ଭବିଷ୍ୟତ ନାଗରିକ ହେବ । ଦେଶର ବିକାଶରେ ପ୍ରମୁଖ ଭୂମିକା ଗ୍ରହଣ କରିବ । ଆଉ ମଧ କୁହାଯାଏ ଯେ ଯଦି ଗୋଟିଏ ପରିବାରର ଜଣେ ପୁରୁଷ ସୁଶିକ୍ଷିତ ତେବେ ଉକ୍ତ ପରିବାରରେ ଜଣେ ସୁଶିକ୍ଷିତା ନାରୀ ଶିକ୍ଷିତା ହେଲେ ସଂପୂର୍ଣ୍ଣ ପରିବାର ଶିକ୍ଷିତ ହୁଏ । ନାରୀର ସର୍ବଂସହା ମାତାର ସ୍ୱରୂପ ମଧ ସାମାଜିକ ସଂସ୍କାର ଆଣିବାରେ ସହାୟକ ହୁଏ ।

ସେହିପରି ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ପ୍ରିୟଦର୍ଶିନୀ ଇନ୍ଦିରା ଗାନ୍ଧୀ, ଉତ୍କଳର ମୁଖ୍ୟମନ୍ତ୍ରୀ ପଦ ଅଳଙ୍କୃତ କରିଥିବା ନନ୍ଦିନୀ ଶତପଥୀ ମହୋଦୟାଙ୍କ ଭଳି ଆହୁରି ଅନେକ ନାରୀମାନଙ୍କର କାର୍ଯ୍ୟ କେବଳ ରାଜନୈତିକ ରଣଭୂମି ମଧରେ ସୀମାବଦ୍ଧ ନଥିଲା, ସାମାଜିକ ସଂସ୍କାରରେ ସ୍ତ୍ରୀ ଶିକ୍ଷା ଆଦି ବିଭିନ୍ନ ଦେଶାତ୍ମବୋଧକ କାର୍ଯ୍ୟରେ ସେମାନେ ପରିତୃପ୍ତି ଲାଭ କରିଥିଲେ ।

କେବଳ ଭାରତରେ ନୁହେଁ, ସମଗ୍ର ବିଶ୍ୱରେ ସମାଜ ଓ ସଂସ୍କୃତିର ସମୃଦ୍ଧ ପରମ୍ପରା ରହିଛି । ଏହି ସମାଜ ଓ ସଂସ୍କୃତିର ଗଠନ ଦିଗରେ ନାରୀ ଓ ପୁରୁଷର ଅବଦାନ ଅବିସ୍ମରଣୀୟ । ନାରୀ ଏବଂ ପୁରୁଷ ସମାଜରୂପକ ମୁଦ୍ରାର ଦୁଇଟି ଅବିଚ୍ଛେଦ୍ୟ ପାର୍ଶ୍ୱ, ସମାଜର ଅଗ୍ରଗତିରେ ପ୍ରତ୍ୟେକ ମାନବର ଦାୟିତ୍ୱ ତଥା କର୍ତ୍ତବ୍ୟ ରହିଛି । ତନ୍ମଧ୍ୟରୁ ନାରୀର ଭୂମିକା ଅନସ୍ୱୀକାର୍ଯ୍ୟ ।

ବହୁ ବିଦୁଷୀ ନାରୀ ସ୍ୱପ୍ରତିଭା ବଳରେ ସମାଜରେ ପ୍ରତିଷ୍ଠିତ । ସେମାନଙ୍କ ମଧ୍ୟରୁ ଗାର୍ଗୀ, ଲୋପାମୁଦ୍ରା, ମୈତ୍ରେୟୀ, ଘୋଷା ଆଦି ବିଦୁଷୀଙ୍କର କାର୍ଯ୍ୟାବଳୀ ବାସ୍ତବିକ ପ୍ରଣିଧାନଯୋଗ୍ୟ ।

ରାଜାରାଜୁଡ଼ା ଶାସନ କାଳରେ ସମାଜ ମଧ ବହୁ କୁ-ସଂସ୍କାର ଦ୍ୱାରା କଳୁଷିତ ହୋଇଥିଲା । ସେ ସମୟରେ ପର୍ଦ୍ଦାପ୍ରଥା, ସତୀଦାହ ପ୍ରଥା ଯୋଗୁଁ ନାରୀ ଜୀବନ ଦୁର୍ବିସହ ହୋଇ ପଡୁଥିଲା । କିନ୍ତୁ ବହୁନାରୀଙ୍କର ମହାନ୍ ପଦକ୍ଷେପ ଯୋଗୁଁ ତାହାର ଦୂରୀକରଣ ସମ୍ଭବ ହୋଇପାରିଥିଲା । ସେଥିମଧ୍ୟରୁ ମା' ରମାଦେବୀ ତଥା ଅନ୍ୟ ନାରୀମାନଙ୍କର ଭୂମିକା ବନ୍ଦନୀୟ ଏବଂ ଚିର ସ୍ମରଣୀୟ ।

ସ୍ୱାଧୀନତା ସଂଗ୍ରାମ ବେଳେ ଇଂରେଜ କବଳରେ ଯେତେବେଳେ ଦେଶର ସ୍ୱାଧୀନତା ଶିକୁଳିବଦ୍ଧ ଥିଲା, ସେତେବେଳେ ରାଣୀ ଲକ୍ଷ୍ମୀବାଈ, ମା' ରମାଦେବୀଙ୍କ ଉଦ୍‌ବୁଦ୍ଧ ଭାଷଣର ପ୍ରରୋଚନାରେ ନାରୀମାନଙ୍କ ମଧ୍ୟରେ ଏକ ଜାଗରଣ ସୃଷ୍ଟି ହୋଇଥିଲା ଏବଂ ନାରୀମାନେ ହିଁ ଦେଶ ସ୍ୱାଧୀନତାରେ ଅଂଶ ଗ୍ରହଣ କରିଥିଲେ ।

ଆଉ ଜଣେ ନୋବେଲ ପୁରସ୍କାର ବିଜେତା ବିଶ୍ୱମାତା ରୂପେ ପରିଗଣିତ । ଜଣେ ବିଦେଶିନୀ ସମଗ୍ର ବିଶ୍ୱରେ 'ମଦର ଟେରେସା' ଭାବେ ଆଜି ମଧ ବିଶ୍ୱବାସୀଙ୍କ ହୃଦ କନ୍ଦରରେ ବିରାଜିତ । ନିଜର ଜୀବନକୁ ଉତ୍ସର୍ଗ କରି ଦୁଃଖୀ, ଦରିଦ୍ର ରୋଗୀମାନଙ୍କର ସେବାରେ ସେ ନିଜକୁ ନିୟୋଜିତ କରିଥିଲେ । ସେ ସାମାଜିକ ସଂସ୍କାର ଆଣିବା ପାଇଁ ସେବା ସଦନ ପ୍ରତିଷ୍ଠା କରିଥିଲେ । ଯାହା ଆଜି ବିଶ୍ୱ ଦରବାରରେ ସୁପ୍ରତିଷ୍ଠିତ ।

ହେଲେନ କେଲରଙ୍କ ପରି ମହୀୟସୀ ମହିଳା ସମଗ୍ର ମହିଳାମାନଙ୍କର ଆଦର୍ଶରୂପେ ପରିଗଣିତ ହୁଅନ୍ତି ଯେ କି ନିଜର ଆଜୀବନ ଅନ୍ଧତ୍ୱକୁ ସ୍ୱୀକାର କରି ସମାଜ ସେବା ଦିଗରେ ମନୋନିବେଶ କରିଥିଲେ ।

ଏହିପରି ଭାରତରେ ପ୍ରଥମ ମହିଳା ଏଭରେଷ୍ଟ ଆରୋହଣକାରୀ ବଚ୍ଛେନ୍ଦ୍ରୀ ପାଲ, ପ୍ରଥମ ମହିଳା ଆଇ.ପି.ଏସ୍. ଡଃ କିରଣ ବେଦୀ, ମାଡାମ୍‌କ୍ୟୁରୀ, ଭାଲେଣ୍ଟିନା ତେରୋସ୍କୋଭା ଏମାନେ ହେଉଛନ୍ତି ନାରୀ ପାଇଁ ଏକ ଆଦର୍ଶର ପନ୍ଥା ।

ଆଧୁନିକ ଯୁଗରେ ସମାଜ କିଛିଟା କଳୁଷପୂର୍ଣ୍ଣ । ଯୌତୁକ ପ୍ରଥାର ଦୁରାରୋଗ୍ୟ ବ୍ୟାଧି ଆଜି ମଧ ସମାଜରେ ଏକ ପିଶାଚ ପରି ସଂଲଗ୍ନ । ନାରୀ କେବଳ ନିଜକୁ ଦୃଢ଼ୀଭୂତ କଲେ ହିଁ ତାହାର ଦୂରୀକରଣ ସମ୍ଭବ । କେତେକ ନାରୀ ବି ନିଜର ଲେଖନୀ ଚାଳନା କରି ସମାଜର ଅଭୂତପୂର୍ବ ପ୍ରଗତି କରିପାରିଛନ୍ତି ।

ନାରୀ ପୁରୁଷର ମିଳନରେ ସମାଜର ସୃଷ୍ଟି । ଆଜି ମଧ ବହୁନାରୀ ସାମାଜିକ କୁ-ସଂସ୍କାରକୁ ଛିନ୍ନ କରି ସମସ୍ତ ନାରୀଙ୍କ ଆଦର୍ଶ ରୂପେ ପରିଗଣିତ । କେତେକ ମଧ ଅସାଧ ସାଧନାରେ ବ୍ରତୀ । ସେଥିମଧ୍ୟରୁ କଳ୍ପନା ଚାଓଲାଙ୍କ ଅନ୍ତରୀକ୍ଷ ଅଭିଯାନ ଅବିସ୍ମରଣୀୟ ।

ନାରୀ ଆଜି ଭାଗ୍ୟବାଦିନୀ ନରହି କର୍ମବାଦିନୀ ହୋଇଯାଇଛି । ବର୍ତ୍ତମାନ ଯୁଗରେ ନାରୀ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇପଡ଼ିଛି । ସେ ସାମାଜିକ କ୍ଷେତ୍ର ହେଉ ଅବା ପାରିବାରିକ କ୍ଷେତ୍ର କିମ୍ବା ରାଜନୈତିକ ରଣଭୂମି ହେଉ, ସର୍ବତ୍ର ନାରୀର ଉପଯୋଗିତା ଲକ୍ଷ୍ୟ କରାଯାଉଛି ।

ଗୃହଠାରୁ ଆରମ୍ଭ କରି ଯୁଦ୍ଧକ୍ଷେତ୍ର ପର୍ଯ୍ୟନ୍ତ ନାରୀର ଭୂମିକା ରହିଥିଲା, ରହିଛି ଓ ରହିବ ମଧ । କାରଣ ନାରୀ ହିଁ ସୃଷ୍ଟି, ନାରୀ ହିଁ ସ୍ଥିତି ଏବଂ ନାରୀ ହିଁ ବିନାଶର ଅବତାର । ସେଥିପାଇଁ କୁହାଯାଏ, 'ତୁମେ ପଇସାର ଯତ୍ନ ନିଅ, ଟଙ୍କା ତା'ର ଯତ୍ନ ନିଜେ କରିପାରିବ ।

ଏହି ଉକ୍ତି କେବଳ ନାରୀର କାର୍ଯ୍ୟକଳାପ ଦ୍ୱାରା ସୁସମାହିତ ହୋଇପାରିବ । ନାରୀ ଆଜି 'ଅସ୍ୱର୍ଯ୍ୟଂପଶ୍ୟା' ନୁହେଁ କି ଅବଳା ବା ଦୁର୍ବଳା ନୁହେଁ । ସମାଜର ସବୁକ୍ଷେତ୍ରରେ ନାରୀର ଅବଦାନ ଅବିସ୍ମରଣୀୟ ।

ରମ୍ଭା, ଗଞ୍ଜାମ

# ପ୍ରତ୍ନତତ୍ତ୍ୱବିତ୍ ମନମୋହନ ଚକ୍ରବର୍ତ୍ତୀ ଏକ ଅବିସ୍ମରଣୀୟ ପ୍ରତିଭା

ଗୋବର୍ଦ୍ଧନ ଦୋରା

ମନମୋହନ ଚକ୍ରବର୍ତ୍ତୀ ଶିକ୍ଷାବିତ୍ ଦ୍ୱାରିକାନାଥ ଚକ୍ରବର୍ତ୍ତୀଙ୍କ ପୁତ୍ର । ଦ୍ୱାରିକାନାଥଙ୍କ ଜନ୍ମ ଅବିଭକ୍ତ ବଙ୍ଗଳାର ୨୪ ପ୍ରଗଣା ଜିଲ୍ଲାର କାଠୋର ଗ୍ରାମରେ । ସେ ୧୮୬୧ ମସିହାରେ ପୁରୀ ଜିଲ୍ଲା ସ୍କୁଲରେ ଆସିଷ୍ଟାଣ୍ଡ ହେଡମାଷ୍ଟର ହିସାବରେ ଯୋଗଦାନ କରିଥିଲେ । ୧୮୬୯ରେ ସେ କଟକ ଟ୍ରେନିଂ ସ୍କୁଲରେ ଯୋଗ ଦେଇ ଚାକିରି ଶେଷ ପର୍ଯ୍ୟନ୍ତ (୧୮୯୩) ସେଠାରେ ହେଡ଼ମାଷ୍ଟର ହିସାବରେ ଥିଲେ । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ ବେଳେ ଯେତେବେଳେ ସ୍କୁଲମାନଙ୍କରେ ପିଲାଙ୍କ ପଢ଼ିବା ନିମିତ୍ତ ବହୁତ ଓଡ଼ିଆ ପାଠ୍ୟପୁସ୍ତକର ଘୋର ଅଭାବ ଥିଲା, ସେତେବେଳେ ଦ୍ୱାରିକାନାଥ ଅନେକଗୁଡ଼ିଏ ବହି ଲେଖିଥିଲେ ଏବଂ ସେଗୁଡ଼ିକ ହେଲା - ସରଳ ଭୂଗୋଳ, ଓଡ଼ିଶାର ଭୂଗୋଳ ବିବରଣୀ, ଶିକ୍ଷା ବିଧାନ, ଜଡ଼ ବିଜ୍ଞାନ ଓ କ୍ଷେତ୍ର ପରିମାଣ ।

ମନମୋହନଙ୍କ ଜନ୍ମ ୧୮୬୩ ମସିହା ଅକ୍ଟୋବର ମାସରେ । ସେ ୧୮୭୮ରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରୁ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାସ ପାଶ୍ କରି ବିମସ ମେଡାଲ ପାଇଥିଲେ । ୧୮୮୨ ମସିହାରେ ରେଭେନ୍‌ସା କଲେଜରୁ ବି.ଏ. ପରୀକ୍ଷାରେ ୭ ଜଣ ଛାତ୍ରଙ୍କ ମଧ୍ୟରୁ ୫ ଜଣ ବି.ଏ. ପାଶ୍ କରିଥିଲେ, ସେଥିରେ ମନମୋହନ ଥିଲେ ଅନ୍ୟତମ । ସେ ଏକା ହିଁ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ ଏବଂ ୧୮୮୬ରେ ବି.ଏଲ୍. ପାଶ୍ କରି ଡେପୁଟି ମାଜିଷ୍ଟ୍ରେଟ୍ ହୋଇଥିଲେ । ପରେ ବିଜ୍ଞାନରେ ସେ ଏମ୍.ଏ. ଡିଗ୍ରୀ ଲାଭ କରିଥିଲେ ।

ତାଙ୍କର କର୍ମମୟ ଜୀବନ ଭିତରେ ମାର୍ଚ୍ଚ ୧୮୮୬ରୁ ୧୮୮୭ ମାର୍ଚ୍ଚ ପର୍ଯ୍ୟନ୍ତ କଟକରେ ଏବଂ ତା'ପରେ ଏହି ସମୟଠାରୁ ୧୮୯୧ ଡିସେମ୍ବର ଯାଏଁ ପୁରୀରେ ଏବଂ ଏହିଠାରୁ ୧୮୯୭ ଜୁନ୍ ପର୍ଯ୍ୟନ୍ତ ଯାଜପୁରରେ କାର୍ଯ୍ୟ କରିଥିଲେ । ଓଡ଼ିଶାରେ ରହି ଏହି ୧୧ ବର୍ଷ କାର୍ଯ୍ୟକାଳ ଭିତରେ ସରକାରୀ କାମ ନିଷ୍ଠାର ସହ ତୁଲାଇବା ସଂଗେ ସଂଗେ ଓଡ଼ିଶାର ଐତିହାସିକ, ପ୍ରତ୍ନତତ୍ତ୍ୱ ଓ ସାହିତ୍ୟିକ ପ୍ରବନ୍ଧମାନ ଲେଖିଥିଲେ । ସେ ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀଧାରୀ ପାଇ ମଧ୍ୟ ଇତିହାସରେ ତାଙ୍କର ଝୁଙ୍କ ଥିଲା । ଏହି ଐତିହାସିକ କାର୍ଯ୍ୟ ପାଇଁ ସେ ଚିରସ୍ମରଣୀୟ ହୋଇ ରହିଛନ୍ତି ଏବଂ ରହିବେ ମଧ୍ୟ ।

ପୁରୀରେ ଡେପୁଟି ମାଜିଷ୍ଟ୍ରେଟ୍ ଥାଇ ପୁରୀ ଜଗନ୍ନାଥ ମନ୍ଦିରରେ ବ୍ୟବହୃତ ହେଉଥିବା ଅଳଙ୍କାରଗୁଡ଼ିକ ତନଖି କରି ସେ ପ୍ରଥମେ ୧୪୬୬ ମସିହାରେ ପ୍ରକାଶ କରିଥିଲେ, ବ୍ୟବହୃତ ହେଉଥିବା କିଛି ଅଳଙ୍କାର ବିଷୟରେ । ୧୮୯୮ରେ Asiatic Society of Bengalରେ ତାଙ୍କର ନିବନ୍ଧ 'A Systematic History of Oriya Language and Literature' (pp.332-386) ପ୍ରକାଶ ପାଇଲା । ୧୯୦୩ରେ 'Chronology of Estern Ganga Kings of Orissa.' ପ୍ରକାଶ ପାଇଥିଲା । ଉକ୍ତ ୫୦ ପୃଷ୍ଠା ବ୍ୟାପୀ ପ୍ରବନ୍ଧ ଲେଖିବା ପାଇଁ ତାଙ୍କୁ ଦୀର୍ଘ ୧୦ ବର୍ଷ କାଳ ପରିଶ୍ରମ କରିବାକୁ ପଡ଼ିଥିଲା । ତାଙ୍କର ୨୭ଟି ନିବନ୍ଧ Asiatic Society Journalରେ ଏବଂ ଦୁଇଟି ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତି ପତ୍ରିକାରେ ଏବଂ ଦୁଇଟି Royal Asiatic Society, Londonରେ ପ୍ରକାଶ ପାଇଛି ।

ସେ ମନ୍ଦିରମାନଙ୍କର ଶିଳାଲିପି ଏବଂ ତାମ୍ର ଫଳକ ପାଠ କରି ଓଡ଼ିଶାର ଇତିହାସକୁ ବିଜ୍ଞାନାନୁମୋଦିତ କରାଇ ଉପସ୍ଥାପିତ କରିଛନ୍ତି ।

ଭୁବନେଶ୍ୱର ଶିଳାଲିପି ଉପରେ ୧୮୯୨ରେ ପଠିତ ପ୍ରବନ୍ଧଟି ୧୮୯୩ Asiatic ପତ୍ରିକାରେ ଏବଂ ୧୮୯୧ରେ ପଠିତ ପ୍ରବନ୍ଧ 'ନରସିଂହ ଦେବ ଚତୁର୍ଥ ଏବଂ ଶୁଲ୍‌କୀ ବଂଶୀୟ ତମ୍ବାପଟା' ଉପରେ ଲିଖିତ ପ୍ରବନ୍ଧ ୧୮୯୫ରେ Asiatic Society ପତ୍ରିକାରେ ପ୍ରକାଶ ପାଇଥିଲା । ମନମୋହନ ଚକ୍ରବର୍ତ୍ତୀ ନରସିଂହ ଦେବ ଚତୁର୍ଥଙ୍କର ପୁରୀର ଗୋଟିଏ ମଠରୁ ଦୁଇଟି ତମ୍ବାପଟା ପାଇ ସେଗୁଡ଼ିକର ପାଠୋଦ୍ଧାର କରିଥିଲେ । ତମ୍ବାପଟାଗୁଡ଼ିକରୁ ମିଳୁଥିବା ଚୋଡ଼ଗଙ୍ଗ ଦେବଙ୍କଠାରୁ ଆରମ୍ଭ କରି ଗଙ୍ଗବଂଶୀୟ ରାଜାମାନଙ୍କର ପୁରୁଷାନୁକ୍ରମିକ ନାମ ସହିତ ମାଦଳାପାଞ୍ଜିରୁ ମିଳୁଥିବା ଗଙ୍ଗବଂଶୀୟ ରାଜାମାନଙ୍କର ନାମରେ ସାମ୍ୟ ନଥିବାରୁ ମାଦଳାପାଞ୍ଜିର ଐତିହାସିକତା ପ୍ରତି ତାଙ୍କର ସନ୍ଦେହ ପୂର୍ଣ୍ଣମାତ୍ରାରେ ହୋଇଥିଲା । ତେଣୁ ସେ ତାଙ୍କର ନିଜର ମତ ନିମ୍ନୋକ୍ତ ଭାବରେ Asiatic Society ପତ୍ରିକାରେ ପ୍ରକାଶ କରିଥିଲେ ।

'ଷ୍ଟାର୍ଲିଂ ପ୍ରିନ୍‌ସେପ, ହଣ୍ଟର ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗବେଷଣା ସତ୍ତ୍ୱେ ଓଡ଼ିଶାର ଇତିହାସ ଅଦ୍ୟାପି ତମସାଚ୍ଛନ୍ନ ରହିଅଛି । ଏସବୁ ଲେଖାର ମାଦଳାପାଞ୍ଜି ଏକମାତ୍ର ଉପକରଣ । ମାଦଳାପାଞ୍ଜି ଅତ୍ୟନ୍ତ ଆପଦପୂର୍ଣ୍ଣ ଓ ଭ୍ରାନ୍ତିମୂଳକ ଲେଖା । କାରଣ ଏହା ଅସନ୍ତୋଷ ଜନକ, ଅସଂଗତ ଭାବରେ ବିସ୍ତୃତ ଓ ସ୍ଥଳ ବିଶେଷରେ ପରସ୍ପର ବିରୋଧୀ କିମ୍ବଦନ୍ତୀ ଉପରେ ଲିଖିତ ହୋଇଅଛି । (ଏ.ସୋ. ୧୮୯୨, ପୃ.୧୪୦-୧୪୧)

୧୮୯୪ରେ Annual Report of the 'South Indian Inscription' ପ୍ରକାଶ ପାଇଲା । ଏଥିରେ ଓଡ଼ିଶାର ଗଙ୍ଗରାଜାମାନଙ୍କର ସମୟରେ ଲିଖିତ ମୁଖଲିଙ୍ଗମ୍, ଶ୍ରୀକୂର୍ମ ଓ ସିଂହାଚଳମ୍ ମନ୍ଦିରଗୁଡ଼ିକରେ ଥିବା ଲିପି ସମୂହ ମୁଦ୍ରିତ ହୋଇଥିଲା । ଏହି ଲିପିଗୁଡ଼ିକର ସାହାଯ୍ୟରେ ଗଙ୍ଗବଂଶୀୟ ତମ୍ବାପଟାଗୁଡ଼ିକରୁ ମିଳୁଥିବା ରାଜାମାନଙ୍କର ନିର୍ଣ୍ଣିତ ରାଜତ୍ୱକାଳ ଓ ନାମ ଦ୍ୱାରା ମାଦଳାପାଞ୍ଜିରେ ମିଳୁଥିବା ଗଙ୍ଗରାଜାମାନଙ୍କ ରାଜତ୍ୱକାଳ କୃତ୍ରିମ ବୋଲି ପ୍ରମାଣିତ ହେଲା । ସେ ୧୯୦୩ରେ ପ୍ରକାଶ ପାଇଥିବା ନିବନ୍ଧରେ ପ୍ରମାଣ କରି ଦେଲେ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱକାଳ ୧୦୭୬ରୁ ୧୧୪୭ A.D. । ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ ତାଙ୍କର ଦାନ କିଛି କମ୍ ନୁହେଁ । ତାଳପତ୍ର ପୋଥି ପାଠ କରି ବିଭିନ୍ନ ପ୍ରାଚୀନ ସାହିତ୍ୟିକଙ୍କ ସମୟ ଏବଂ ତାଙ୍କ ରଚନା କାଳ ନିର୍ଣ୍ଣୟ କରିଅଛନ୍ତି । କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମାଙ୍କ ପ୍ରଥମ ଆବିଷ୍କାରକ ହେଲେ ମନମୋହନ ଚକ୍ରବର୍ତ୍ତୀ । ସେ ଦୀକ୍ଷିତପଡ଼ା ଯାଇ କବିଙ୍କର କିଛି ତାଳପତ୍ର ଲେଖା ରଚନା ହସ୍ତଗତ କରିଥିଲେ । ଗ୍ରନ୍ଥ ରଚନାର ସଂଖ୍ୟା ଦୃଷ୍ଟିରୁ ସଦାନନ୍ଦ ଉପେନ୍ଦ୍ର ଭଞ୍ଜଙ୍କ ତଳେ । ପଣ୍ଡିତ ବିନାୟକ ମିଶ୍ରଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' (ପ୍ରଥମ ମୁଦ୍ରଣ ୧୯୬୨) ୧୧୪ ପୃଷ୍ଠାରେ ଲେଖାଅଛି 'ସ୍ୱର୍ଗୀୟ ମନମୋହନ ଚକ୍ରବର୍ତ୍ତୀ ସାଧୁକବି ସଦାନନ୍ଦଙ୍କ ପରିଚୟ ପ୍ରଥମେ ସଂଗ୍ରହ କରିଥିଲେ । ଓଡ଼ିଶାର ଇତିହାସ ଗବେଷଣାରେ ଚକ୍ରବର୍ତ୍ତୀ ମହାଶୟ ପଥପ୍ରଦର୍ଶକ ଅଟନ୍ତି ।'

ମନମୋହନ ଚକ୍ରବର୍ତ୍ତୀ ମାତ୍ର ୫ ବର୍ଷର ଚାକିରି ପରେ ଏହି ଗବେଷଣା ଯୋଗୁଁ ୧୮୯୦ ମସିହାରେ Asiatic Society of Bengalର ସଭ୍ୟ ହୋଇପାରିଥିଲେ ଏବଂ ୧୯୧୨ ମସିହାରେ ସୋସାଇଟିର ଫେଲୋ ରୂପେ ନିର୍ବାଚିତ ହୋଇଥିଲେ । ଦୀର୍ଘ ୨୦ ବର୍ଷ କାଳ ଏହି ଅନୁଷ୍ଠାନର ପତ୍ରିକାରେ ତାଙ୍କର ବହୁ ଗବେଷଣାପୂର୍ଣ୍ଣ ପ୍ରବନ୍ଧ ମୁଦ୍ରିତ ହୋଇଥିଲା ।

ସେ ୧୯୧୪ରେ ରାୟବାହାଦୂର ଉପାଧି ପାଇଥିଲେ । ମାତ୍ର ୫୬ ବର୍ଷ ବୟସରେ ୧୯୧୯ ସେପ୍ଟେମ୍ବର ୧୫ ତାରିଖରେ ଏହି ବିଖ୍ୟାତ ଶାସକ, ଗବେଷକ ତଥା ପଣ୍ଡିତଙ୍କ ଜୀବନ ଦୀପ ଲିଭିଗଲା । ଓଡ଼ିଶାର ବୁଦ୍ଧିଜୀବୀ, ସାହିତ୍ୟିକ ତଥା ଐତିହାସିକ ମହଲରେ ତାଙ୍କର ସ୍ମୃତି ଚିର ଭାସ୍ୱର ହୋଇ ରହିବ ।

**ସହାୟକ ଗ୍ରନ୍ଥ**

୧. ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ଲେଖକ- ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ପ୍ରକାଶ- ୧୯୬୯ ।

୨. ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଏକ ଅଧ୍ୟୟନ, ଲେଖିକା- ଡଃ ଶାରଦା କୁମାରୀ ମହାନ୍ତି, ପ୍ରକାଶ-୧୯୯୭ ।

୩. Thesaurus of Events & Dates of Orissa, Author- Gobardhan Dora, Published-2003.

ଏଲ୍.-୧୮୪, ଫକୀରମୋହନ ନଗର
ବରମୁଣ୍ଡା, ଭୁବନେଶ୍ୱର-୩

---

## ଜନଶ୍ରୀ ବୀମା ଯୋଜନା

କେନ୍ଦ୍ରୀୟ ସହାୟତା ଯୋଜନା ଅନ୍ତର୍ଗତ ବୀମା ଯୋଜନା କାର୍ଯ୍ୟକ୍ରମରେ ଆଦିମ ଆଦିବାସୀମାନଙ୍କ ଉନ୍ନତି ନିମନ୍ତେ ୨୦୦୪-୦୫ ଆର୍ଥିକ ବର୍ଷରେ ୧୨.୫୦ ଲକ୍ଷ ଟଙ୍କାର ବ୍ୟୟବରାଦ କରାଯାଇଛି । ଏହି ଟଙ୍କା ଦ୍ୱାରା କାର୍ଯ୍ୟକ୍ଷମ ତିନିଗୋଟି 'ମାଇକ୍ରୋ ପ୍ରୋଜେକ୍ଟ' ଅଂଚଳରେ ବସବାସ କରୁଥିବା ୨୫୦୦ ଗୋଟି ଆଦିମ ଆଦିବାସୀ ପରିବାରକୁ ଜୀବନବୀମା ନିଗମ ମାଧମରେ ବୀମା ସୁବିଧା ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି ।

ଏହି ବୀମା ଯୋଜନା ପ୍ରତି କୋରାପୁଟ ଅଂଚଳ ଆଦିମ ଆଦିବାସୀମାନେ ଅଧିକ ଉତ୍ସାହିତ ବୋଲି ଅନୁସୂଚିତ ଜାତି ଓ ଜନଜାତି ଉନ୍ନୟନ ଅର୍ଥ ସମବାୟ ନିଗମ ସୂତ୍ରରୁ ପ୍ରକାଶ ।




# ପରମ୍ପରାର ପୁନରାବୃତ୍ତି




**ଓ**ଡ଼ିଶା ଆଜି କ୍ଷୁଦ୍ର ସ୍ଥାନଟିଏ । ଦିନେ ଏହା ଥିଲା ଭାରତର ମହାନ୍‌ତମ ସାମ୍ରାଜ୍ୟ । କଳିଙ୍ଗ ଏକଦା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ଭୂଖଣ୍ଡ ଥିଲା । ଏକ ଦୁଃସାହସୀ ଜାତି ରୂପେ କଳିଙ୍ଗବାସୀଙ୍କ ଶକ୍ତି ଓ ଖ୍ୟାତି ଥିଲା ଅପ୍ରମିତ । ସବୁକଳା ଓ କୃତୀରେ ସେ ଥିଲା କୀର୍ତ୍ତିମାନ, ସୌର୍ଯ୍ୟ ବୀର୍ଯ୍ୟ ଐଶ୍ୱର୍ଯ୍ୟରେ ମହୀୟାନ୍ । ଏହାର ସୈନ୍ୟ ଆଲେକ୍‌ଜାଣ୍ଡାରଙ୍କ ସୈନ୍ୟବାହିନୀକୁ ପରାସ୍ତ କରିଥିଲେ ଏବଂ ସେମାନଙ୍କୁ ଭାରତର ସୀମା ବାହାରକୁ ତଡ଼ି ଦେଇଥିଲେ । ପୃଥିବୀରେ ଆଗରୁ ଯେତେ ନୌଶକ୍ତି ଥିଲା କଳିଙ୍ଗର ନୌଶକ୍ତି ତନ୍ମଧ୍ୟରୁ ଥିଲା ବୃହତ୍ତମ ।

ସେହି କଳିଙ୍ଗ ସମଗ୍ର ଦକ୍ଷିଣ-ପୂର୍ବ ଏସିଆରେ ତା'ର ସଭ୍ୟତା ବିସ୍ତାର କରିଥିଲା, ଏପରିକି ଆଜି ସେହି ଦେଶଗୁଡ଼ିକରେ କଳିଙ୍ଗ ଗୌରବର ମୂକସାକ୍ଷୀ ରୂପେ ଧ୍ୱଂସାବଶେଷମାନ ଦେଖିବାକୁ ମିଳେ । ଓଡ଼ିଶା ବା କଳିଙ୍ଗ ସେତେବେଳେ ଥିଲା ସାହିତ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ପ୍ରାଣ କେନ୍ଦ୍ର । ଭାରତର ମହାନ୍‌ତମ ସାମ୍ରାଜ୍ୟ । କଳିଙ୍ଗର ନାବିକମାନେ ଭୟ କ'ଣ ଜାଣି ନଥିଲେ । ସେସବୁ ଆଜି ଆମ ନିକଟରେ ସ୍ମୃତି ହୋଇ ରହିଛି । ଅତୀତକୁ ପୁନଃ ଅବଲୋକନ କରି ବର୍ତ୍ତମାନ ଭବିଷ୍ୟତ ପଥରେ ଆମକୁ ଅଗ୍ରସର ହେବାକୁ ପଡ଼ିବ । ଦୀର୍ଘକାଳ ଧରି ଶୋଇ ଯାଇଥିବା ଗୋଟିଏ ଜାତିର ହୃଦୟରେ ଉନ୍ମାଦନା ସୃଷ୍ଟି କରିବାକୁ ପଡ଼ିବ ।

କିନ୍ତୁ ଅସ୍ତମିତ ଅତୀତର ସେହି ସମୁଜ୍ଜ୍ୱଳ ସ୍ମୃତି ଏବେବି ଓଡ଼ିଆ ହୃଦୟରେ ଉଜ୍ଜୀବିତ ହୋଇ ରହିଛି । ଆଜି ସେସବୁ ଆମକୁ ସେହି ଗୌରବମୟ ପରମ୍ପରାର ପୁନରୁଦ୍ଧାର କରିବା ପାଇଁ ପ୍ରେରଣା ଦେଇ ଆସୁଛି ।

ପ୍ରକୃତି ଯେଉଁ ଖଣିଜ ସମ୍ପଦରେ ଆମକୁ ସମୃଦ୍ଧ କରିଛି ବହୁ ବର୍ଷ ପର୍ଯ୍ୟନ୍ତ ଅନେକ ବଡ଼ବଡ଼ ଶିଳ୍ପକୁ ତାହା ପୁଷ୍ଟ କରିପାରିବ । ତାହା ଇସ୍ପାତ୍ ହେଉ କି, କୋଇଲାରୁ ବିଦ୍ୟୁତ୍ ଶକ୍ତି ହେଉ, ଆଲୁମିନିୟମ୍ ହେଉ ବା ତୈଳ ବିଶୋଧନାଗାର ହେଉ କିମ୍ବା ପେଟ୍ରୋକେମିକାଲ୍‌ସ ହେଉ - ଏସବୁ ଉତ୍ପାଦନର ଧାରା ପ୍ରବର୍ତ୍ତିତ କରିବ ।

ଆଜି ଓଡ଼ିଶାର ବରେଣ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ପ୍ରାଚୀନ କଳିଙ୍ଗର ଏହି ଐତିହ୍ୟ ଓ ଆଭିଜାତ୍ୟକୁ ପୁନରାବୃତ୍ତି କରିବାକୁ ଯାଉଛନ୍ତି । ରାଜ୍ୟରେ ଭରି ରହିଥିବା ବିପୁଳ ଖଣିଜ ସଂପଦ, ସୁଦୀର୍ଘ ସମୁଦ୍ର ଉପକୂଳ, ବିସ୍ତୀର୍ଣ୍ଣ ଅରଣ୍ୟ ଓ ଐତିହାସିକ ବିଭବର ଉପଯୋଗ କରି ଆଗାମୀ ଦିନରେ ଓଡ଼ିଶାକୁ ଭାରତର ଶିଳ୍ପ ମାନଚିତ୍ରରେ ସୁପ୍ରତିଷ୍ଠିତ କରିବା ପାଇଁ ସଙ୍କଳ୍ପବଦ୍ଧ ।

ଓଡ଼ିଶା ଆଜି ଶିଳ୍ପ ବିପ୍ଳବର ଅଭିନବ ଦ୍ୱାରଦେଶରେ । ମାଟି ତଳେ ବିପୁଳ ସମ୍ପତ୍ତିର ଐଶ୍ୱର୍ଯ୍ୟକୁ ମାଟିର ମଣିଷର ହିତରେ ବିନିଯୋଗ କରି ରାଜ୍ୟରୁ ବେକାରୀ, ଦାରିଦ୍ର୍ୟ ଓ କ୍ଷୁଧା ଦୂର କରିବା ପାଇଁ ସରକାର ବଦ୍ଧପରିକର । ବିଶ୍ୱର ବୃହତ୍ ଇସ୍ପାତ୍ କମ୍ପାନୀ

ପୋସ୍କୋର ୫୧ ହଜାର କୋଟି ଟଙ୍କାର ପୁଞ୍ଜିଲଗାଣ ଓଡ଼ିଶାର ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବ । ପୋସ୍କୋକୁ ଛାଡ଼ି ସରକାର ଆଉ ୪୩ଟି କମ୍ପାନୀମାନଙ୍କ ସହ ବୁଝାମଣାପତ୍ର ସ୍ୱାକ୍ଷରକରି ଓଡ଼ିଶାର ଶିଳ୍ପ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବାକୁ ଯାଉଛନ୍ତି ।

ଏତଦ୍‌ବ୍ୟତୀତ ଗୋପାଳପୁର ବନ୍ଦର ହେବ ଏସିଆର ବୃହତ୍ତମ ବନ୍ଦର । ପାରାଦ୍ୱୀପ ବନ୍ଦରର ସମ୍ପ୍ରସାରଣ ଓ ଧାମରାରେ ବୃହତ୍ତମ ବନ୍ଦର ପ୍ରତିଷ୍ଠା କରିବା ସଂଗେସଂଗେ ବିଲୁପ୍ତ ହୋଇଯାଇଥିବା ଅନ୍ୟାନ୍ୟ ବନ୍ଦରଗୁଡ଼ିକର ପୁନରୁଦ୍ଧାର ପାଇଁ କାର୍ଯ୍ୟକ୍ରମ ଚାଲୁ ରହିଛି । ଏଗୁଡ଼ିକ ସଂପୂର୍ଣ୍ଣ ହେଲେ, ଶିଳ୍ପ ଇତିହାସରେ ଆଗାମୀ ଶତାବ୍ଦୀ ସମୃଦ୍ଧିର ସ୍ୱର୍ଣ୍ଣଯୁଗ ରୂପେ ଲିପିବଦ୍ଧ ହୋଇ ରହିବ । ଓଡ଼ିଆ ଜାତିର ଗତଗୌରବ ହୃତ୍‌ଗୌରବ ଫେରି ଆସିବ ।

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୨ ଭାଗ | ୪ର୍ଥ ସଂଖ୍ୟା | କାର୍ତ୍ତିକ-ମାର୍ଗଶିର | ନଭେମ୍ବର - ୨୦୦୫

ଦିଗମ୍ବର ମହାନ୍ତି
କମିଶନର ତଥା ଶାସନ ସଚିବ

ବୈଷ୍ଣବ ପ୍ରସାଦ ମହାନ୍ତି
ନିର୍ଦ୍ଦେଶକ

ଶରତଚନ୍ଦ୍ର ସାମନ୍ତରାୟ
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
ଗୋବିନ୍ଦଚନ୍ଦ୍ର ମଲ୍ଲିକ
ସଚ୍ଚିଦାନନ୍ଦ ବାରିକ

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
ମାନସ ନାୟକ
ଫଟୋ :
ରାଜୁ ସିଂ
ମାନସ ରଂଜନ ମହାନ୍ତି

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
ମନୋଜ କୁମାର ପାତ୍ର
ହେମନ୍ତ କୁମାର ସାହୁ

**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୪୦୪୫୧୩, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ